

# ଶିଶିର ସ୍ମରଣୀ



ସମ୍ପାଦନା : ପ୍ରାଧାପକ ସୁଶାନ୍ତ କୁମାର ପଣ୍ଡା

*Digitized by PPRACHIN, SOA*

ଓଁ

# ଶିଶିର ସ୍ମାରକୀ



ଆବିର୍ଭାବ ତା. ୧୦/୦୪/୧୯୫୨

ତିରୋଧାନ ତା. ୧୨/୦୮/୨୦୨୨

ସଂପାଦନା- ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା

Digitized by PPRACHIN, SOA



# ଶିଶିର ସ୍ମୃତି

ସଂପାଦକ- ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା
ବାରବାଟୀ, ଧର୍ମଶାଳା, ଯାଜପୁର, ଫୋନ୍: ୯୮୬୧୭୨୨୨୫୮

ପ୍ରକାଶକାଳ- ୩୦/୦୮/ ୨୦୨୩- ରାକ୍ଷୀପୂର୍ଣ୍ଣିମା

ପ୍ରକାଶକ- ମଦନ ମୋହନଜୀଉ ମଠ, ଖଣ୍ଡିତର
କେଉଟଲଗୁଆଁ, ଖଣ୍ଡିତର, ରସୁଲପୁର, ଯାଜପୁର

ଅଲଙ୍କରଣ- ଇଜ୍ଞୁ
କାରକା, ଧର୍ମଶାଳା, ଯାଜପୁର
ଫୋନ୍: ୯୨୩୮୫୧୯୮୧୫

Digitized by PPRACHIN, SOA



## ସଂପାଦକୀୟ :

'ଜନ୍ତୁନାଂ ନରଜନ୍ମ ଦୁର୍ଲଭ ମତଃ' (ବିବେକ ଚୂଡ଼ାମଣି, ଆଦିଶଙ୍କର) ଦୃଶ୍ୟ ଅଦୃଶ୍ୟ ଜଗତରେ ଅଶେଷ ପ୍ରକାର ପ୍ରାଣୀଙ୍କ ମଧ୍ୟରେ ମନୁଷ୍ୟ ଜନ୍ମ ଦୁର୍ଲଭ । ଦେବ ଦୁର୍ଲଭ ମନୁଷ୍ୟ ଜନ୍ମ ଲାଭ କରି କରୁଛି କ'ଣ ? କେବଳ ଭୋଗ । ଭୋଗର ଶେଷ କାହିଁ ? 'ଭୋଗେ ରୋଗଭୟଂ' ଭୋଗରୁ ରୋଗ । ବ୍ୟାଧିଗ୍ରସ୍ତ ମନୁଷ୍ୟ ନିକଟରେ ଯେତେ ପାରେ ଭୋଗ୍ୟ ସାମଗ୍ରୀ ଥିଲେ ହେଁ ତାହାକୁ ଭୋଗ କରିନପାରେ । ରସଗୋଲା ଦୋକାନୀ ଯଦି ଡାଇବେଟିକ୍ ରୋଗୀ ସେ ତହିଁରୁ କି ଭୋଗ କରିବ ?

ଦୃଶ୍ୟମାନ ଜଗତକୁ ଭଗବାନ୍ ଶଙ୍କର ଅଳୀକ, ମାୟା, ମିଥ୍ୟା ପ୍ରଭୃତି ଶବ୍ଦ ଦ୍ୱାରା ପ୍ରକଟ କରିଛନ୍ତି ଏବଂ ତାହାକୁ ମରୁ ମରୀଚିକା, ଆକାଶ- କୁସୁମ ପ୍ରଭୃତି ସହ ତୁଳନା କରି ଭ୍ରମ ଦୂର କରିବାର ମହାଶିକ୍ଷା ଦେଇଛନ୍ତି । ସୁଖ ସଂଧାନୀ ମନୁଷ୍ୟ ସଂସାରର ବ୍ୟକ୍ତି, ବସ୍ତୁ, ଦ୍ରବ୍ୟଠାରେ ସୁଖ ଖୋଜୁଛି । ଯାହା ପାଇଲା ପରକ୍ଷଣରେ ତାହା ଦୁଃଖ- ବିଷାଦ, ଅବସାଦରେ ପରିଣତ ହୋଇଯାଉଛି । ଅନୁଭବରୁ ମଧ୍ୟ ଶିକ୍ଷା ଲାଭ କରିପାରୁ ନାହିଁ । ପୁନଃ ପୁନଃ ସେହି କାର୍ଯ୍ୟ ଅବ୍ୟାହତ ରଖିବାରୁ ଦୁଃଖର ପସରା ମୁଣ୍ଡରେ ମୁଣ୍ଡାଇ ଭାରାକ୍ରାନ୍ତ ମନରେ ଜୀବନ ବ୍ୟତୀତ କରିବାକୁ ବାଧ୍ୟ ହେଉଛି ।

Digitized by PPRACHIN, SOA

ଦୁଃଖର ଅନ୍ୟ କାରଣ 'ଅହଂତ୍ୱ- ମମତ୍ୱ', ମୁଁ- ମୋର ଭାବନା। ମୁଁ ଏହା କରିଦେଲି, ମୁଁ ବଡ଼, ମୁଁ ବୁଦ୍ଧିଆ, ମୁଁ ଧନୀ ଇତ୍ୟାଦି। ମୋର ଏହା (ବ୍ୟକ୍ତି) ପୁତ୍ର, କନ୍ୟା, ଘର- ବାଡ଼ି- ଗାଡ଼ି ଆଦି(ଦ୍ରବ୍ୟ)କୁ ନେଇ ଯେଉଁ ଅହଂକାର କରିବସେ ଏବଂ ବ୍ୟକ୍ତି ମନରେ କର୍ତ୍ତୃତ୍ୱ- ଭୋକ୍ତୃତ୍ୱ ଭାବନାରେ ବୁଡ଼ିରହେ ତାହା ହିଁ ଦୁଃଖର କାରଣ। ଭ୍ରମବଶତଃ, ଅଜ୍ଞାନ ବଶତଃ ଜାଣି ନପାରି ଅଜ୍ଞାନ ଅନ୍ଧକାରରେ ସମଗ୍ର ଜୀବନ ଅତିବାହିତ କରି କର୍ମଫଳ ଭୋଗ ନିମନ୍ତେ ପୁନଃ ଜନ୍ମ ମରଣ ଚକ୍ରରେ ଘୂରିବୁଲିବାକୁ ଅଗ୍ରସର ହୋଇଥାଏ।

ଆବାଗମ ଚକ୍ରରୁ ମୁକ୍ତ ହେବାପାଇଁ ଜଗତ୍‌ଗୁରୁ ଶଙ୍କର, ବେଦାନ୍ତ ଦର୍ଶନ, ମାଧ୍ୟମରେ, ଜ୍ଞାନାଲୋକ ଦ୍ୱାରା ସମଗ୍ର ମାନବ ସମାଜର କଲ୍ୟାଣ ଉଦ୍ଦେଶ୍ୟରେ ମହାନ୍ ବାଣୀ ଶୁଣାଇ ଜୀବକୁ ଅଭୟ ଦେଇଛନ୍ତି। ପ୍ରଥମ ସୋପାନ ହେଉଛି କର୍ତ୍ତୃତ୍ୱ- ଭୋକ୍ତୃତ୍ୱ ଭାବରୁ ନିସ୍ତାର ପାଇଁ 'ନାହଂକର୍ତ୍ତା- ହରିକର୍ତ୍ତା, ଏହି ବିଚାର ମନରେ ଧାରଣ କଲେ ଏବଂ ତଦନୁସାରେ ସାଂସାରିକ କର୍ମ କରି ଚାଲିଲେ କର୍ମ-ଫଳ ବନ୍ଧନର କାରକ ହେବ ନାହିଁ। ଫଳତଃ କର୍ମ ସକଳ ନିର୍ବିଜ୍ୟ ହୋଇ ଫଳ ଉତ୍ପାଦକ ହେବ ନାହିଁ ଏବଂ ଜୀବ ମୁକ୍ତିର ଦ୍ୱାର ଉଦ୍‌ଘାଟିତ ହୋଇଯିବ। ସହଜ ମୁକ୍ତି- ମାର୍ଗ ସାଧନ ପ୍ରକ୍ରିୟାର ପ୍ରଚାର ପ୍ରସାର ନିମନ୍ତେ ଦଶନାମୀ ସାଧୁ ସଂପ୍ରଦାୟର ସୃଷ୍ଟି। ଖଣ୍ଡିତର ମଦନମୋହନ ମଠ ଭାରତୀ ସଂପ୍ରଦାୟ ଅନ୍ତର୍ଗତ ପ୍ରାଚୀନ ମଠ। ଜ୍ଞାନ, ଭକ୍ତି, କର୍ମ ମାଧ୍ୟମରେ ଜୀବ ମୁକ୍ତିର ସୁଗମ, ପବିତ୍ର ପୀଠ, ମଠ।

ମଠାଧୀଶ ଶିଶିର କୁମାରୀ ଭାରତୀ ଅନ୍ତିମ (ଦଶମ) ମହନ୍ତ ଗଲା ବର୍ଷ (୨୦୨୨) ଅକସ୍ମାତ୍ ଦେହତ୍ୟାଗ କରିଛନ୍ତି। ସେ ଜଣେ ଉଦ୍ୟମୀ, ସମର୍ପିତ ବ୍ୟକ୍ତି। ନିଜକୁ 'ନିମିତ୍ତ' ବିଚାରରେ ଭଗବତ୍ ସେବାରେ ନିୟୋଜିତ କରିଥିଲେ। ସେହି ମହାନ୍ ଈଶ୍ୱରାର୍ପିତଙ୍କ ଉଦ୍ଦେଶ୍ୟରେ ସ୍ମରଣିକା ପ୍ରକାଶନ ଆଗାମୀ ଦିନ ପାଇଁ ଏକ ପ୍ରାମାଣିକ ସିଦ୍ଧ ହେବାର ସଂଭାବନାକୁ ଏଡ଼ାଇ ଦିଆଯାଇନପାରେ।

ବାଲ୍ୟକାଳରୁ ମଦନ ମୋହନଙ୍କ ସେବା ତତ୍‌ପରତା ତାଙ୍କୁ ଆଧ୍ୟାତ୍ମବାଦୀ ନିର୍ମାଣର ମୂଳଭିତ୍ତି କୁହାଯାଇପାରେ। ଯୌବନରେ ଗୃହ ତଥା ଗ୍ରାମ ନିକଟବର୍ତ୍ତୀ ସ୍ଥାନରେ ନିଯୁକ୍ତି ଦ୍ୱାରା ପୂର୍ବବତ୍ ସେବା- ପୂଜା ପ୍ରତି ନିଷ୍ଠା ବୃଦ୍ଧି ପ୍ରାପ୍ତ ହୋଇ,

Digitized by PPRACHIN, SOA

ମଠାଧୀଶ ଭାବେ ଅଭିଷିକ୍ତ ହେବାପରେ ମଠ ପରିଚାଳନା ଦାୟିତ୍ୱ ସହ ଭଗବତ୍ ଗୀତା ପାଠ, ବିଷ୍ଣୁ- ସହସ୍ରନାମ ପାଠ ଇତ୍ୟାଦି କାର୍ଯ୍ୟକ୍ରମ ଦ୍ୱାରା ସମର୍ପିତ ମନୋଭାବର ବିକାଶ ଏବଂ ଅବସର ଗ୍ରହଣ ପରଠାରୁ ସେବାରେ ନିରନ୍ତର ନିଷ୍ଠା ଏ ଦିଗରେ ଫଳସ୍ୱରୂପ ତାଙ୍କ ଜୀବନଚର୍ଯ୍ୟାର ପରିଲକ୍ଷିତ।

ସତ୍ୟସାଇ ସେବାନୁଷ୍ଠାନ ସହ ସଂପୃକ୍ତି ତାଙ୍କୁ ଏକ ବ୍ୟାପକ କ୍ଷେତ୍ରର ପରିପ୍ରକାଶ ନିମିତ୍ତ ସୁଯୋଗ ସୃଷ୍ଟି କରିଛି। ପୁନଃ ଗ୍ରାମର ଦେବାନୁଷ୍ଠାନଗୁଡ଼ିକର ପୁନର୍ବିନ୍ୟାସ, ନବୀକରଣ ଆଦି ତାଙ୍କ ବହୁମୁଖୀ ସେବା ତଥା ଧର୍ମୀୟ ଚିନ୍ତନର ପ୍ରକଟିତ ରୂପ।

ଉଦାର ମାନବିକ ବିଚାରବୋଧ ତାଙ୍କୁ ବହୁ ଜନପ୍ରିୟ କରିଥିଲା, ନିକଟ ତଥା ଦୂରବର୍ତ୍ତୀ ସ୍ଥାନମାନଙ୍କରେ ଦଶନାମୀ ସଂପ୍ରଦାୟ ବ୍ରତୋପନୟନ ଆଦି ସଂସ୍କାର କାର୍ଯ୍ୟକ୍ରମରେ 'ଗୁରୁ' ଦାୟିତ୍ୱ ସମାହିତ କରି ପୂର୍ବସୂରୀମାନଙ୍କ ଧାରାକୁ ଅତୁଟ ରଖିବାରେ ଆପ୍ରାଣ ପ୍ରୟାସୀ ହୋଇଛନ୍ତି।

ସର୍ବୋପରି ସେ ଜଣେ ଜନସାଧାରଣଙ୍କ କଲ୍ୟାଣରେ ସମର୍ପିତ ବ୍ୟକ୍ତି କହିବାରେ ଅତି ରଂଜନ କାହିଁ? ବିବିଧ ବର୍ଗର ସୁଧୀ, ଅନୁଭବୀ, ବେରେଣ୍ୟ ବୃନ୍ଦ ସେମାନଙ୍କ ଲେଖାଟିମାନ ଦେଇ ପତ୍ରିକାକୁ ପୁଷ୍ଟ କରିଥିବାରୁ ଏ ଅବସରରେ ସମସ୍ତଙ୍କୁ ସାଧୁବାଦ। ସକଳ ଅପୂର୍ଣ୍ଣତାରେ ପୂର୍ଣ୍ଣତାର ଉପଲବ୍‌ଧି ହିଁ ଈଶ୍ୱରାଭିମୁଖୀନତାର ଏକ ବିଶିଷ୍ଟ ଦିଗନ୍ତ। ସେହି ମହତ୍ ଦୃଷ୍ଟିର ଅଧିକାରୀ ଆପଣ ହୁଅନ୍ତୁ। ହେବାପାଇଁ ପ୍ରଭୁ ମଦନମୋହନ ଆପଣଙ୍କୁ ଆଶୀର୍ବାଦ କରୁଥାନ୍ତୁ। 'ପୂର୍ଣ୍ଣସ୍ୟ ପୂର୍ଣ୍ଣଂମାଦାୟ ପୂର୍ଣ୍ଣ ମେବା ବଶିଷ୍ୟତେ' ଦୃଷ୍ଟିରେ ଆମର ଏ ଉଦ୍ୟମ ପୂର୍ଣ୍ଣର ସଂକେତ ପ୍ରଦାନ କରୁ। ମଦନମୋହନ କୃପା ହିଁ କେବଳମ୍।

ଇତି

**ବିନୀତ ସଂପାଦକ**



Digitized by PPRACHIN, SOA



# ପ୍ରାତଃ ସ୍ମରଣମ୍

ପ୍ରାତଃ ସ୍ମରାମି ହୃଦି ସଂସ୍ଫୁରଦାତ୍ମତତ୍ତ୍ୱଂ
ସଚ୍ଚିତ୍ ସୁଖଂ ପରମହଂସ-ଗତିଂ ତୁରୀୟମ୍ ।
ଯତ୍ ସ୍ୱପ୍ନ-ଜାଗର-ସୁଷୁପ୍ତିମବୈତି ନିତ୍ୟଂ
ତଦ୍‌ବ୍ରହ୍ମ ନିଷ୍କଳମହଂ ନ ଚ ଭୂତସଂଘଃ ।।୧।।

ପ୍ରାତର୍ଭଜାମି ମନସା ବଚସାମଗମ୍ୟଂ
ବାଚୋ ବିଭାନ୍ତି ନିଖିଳା ଯଦନୁଗ୍ରହେଣ ।
ଯଂ ନେତି ନେତି ବଚନୈର୍ନିଗମା ଅବୋଚୁ-
ସ୍ତଂ ଦେବଦେବମଜମଚ୍ୟୁତମାହୁରଗ୍ର୍ୟମ୍ ।।୨।।

ପ୍ରାତର୍ନମାମି ତମସଃ ପରମର୍କବର୍ଣ୍ଣଂ
ପୂର୍ଣ୍ଣଂ ସନାତନପଦଂ ପୁରୁଷୋତ୍ତମାଖ୍ୟମ୍ ।
ଯସ୍ମିନ୍ନିଦଂ ଜଗଦଶେଷମଶେଷ ମୂର୍ତ୍ତୌ
ରଜ୍ଜ୍ୱାଂ ଭୁଜଙ୍ଗମ ଇବ ପ୍ରତିଭାସିତଂ ବୈ ।।୩।।

ଶ୍ଳୋକତ୍ରୟମିଦଂ ପୁଣ୍ୟଂ ଲୋକତ୍ରୟବିଭୂଷଣମ୍
ପ୍ରାତଃ କାଳେ ପଠେଦ୍ ଯସ୍ତୁ ସ ଗଚ୍ଛେତ୍ ପରମଂ ପଦମ୍ ।।୪।।

Digitized by PPRACHIN, SOA

# ❖ ସୂଚୀପତ୍ର ❖

ଗଦ୍ୟ:


| | |
|---|---|
| ମହନ୍ତ ଶ୍ରୀ ଶ୍ରୀ ଶିଶିର କୁମାର ଭାରତୀ | ହାଡ଼ିବନ୍ଧୁ ରଣା -୧୧ |
| ଶିଶିରବାବୁଙ୍କ ସଂସାର | ଡକ୍ଟର ରାଜକିଶୋର ପାଢ଼ୀ-୧୫ |
| ଭାରତର ଗୁରୁ ପରଂପରା ଓ ଭାରତୀ ମଠ | ଶ୍ରୀ ସୁବାସ ଚନ୍ଦ୍ର ପଟ୍ଟନାୟକ-୧୭ |
| ଶିଶିର କୁମାର ଭାରତୀଙ୍କ ସ୍ମରଣାର୍ଥେ | ଶ୍ରୀ ଗଜେନ୍ଦ୍ର ବିହାରୀ ଦାଶ-୨୨ |
| ମଦନମୋହନ ମଠ | ଅକ୍ଷୟ କୁମାର ଜେନା-୨୫ |
| ଅନୁଜ ପ୍ରତିମ ଶିଶିର ବାବୁଙ୍କ ସ୍ମରଣେ | କୈଳାସ ଚନ୍ଦ୍ର ନାୟକ-୨୮ |
| ଖଣ୍ଡିତର ମଠ ଓ ମହନ୍ତ ଶିଶିର କୁମାର | ବାମଦେବ ପାଢ଼ୀ-୩୧ |
| ମହନ୍ତ ଶିଶିରସାର୍ ଥିଲେ ଅନୁଷ୍ଠାନ ପ୍ରେମୀ | ସୁରେନ୍ଦ୍ର କୁମାର ତିଆଡ଼ି-୩୬ |
| ମଳିନତ୍ୱ ବିହୀନ ଦର୍ପଣ | କଳ୍ପତରୁ ପଣ୍ଡା-୩୯ |
| ଆମ ସଂସ୍କୃତିରେ ମଠ- ମନ୍ଦିର | ଅଭୟ କୁମାର ତ୍ରିପାଠୀଶର୍ମା-୪୩ |
| ସ୍ମୃତି ଅର୍ଘ୍ୟ | ଶ୍ରୀ ବିଚିତ୍ରାନନ୍ଦ ଆରଣ -୪୮ |
| ଶିଶିର ଭାରତୀ ଗୋସ୍ୱାମୀ ଏକ ବିରଳ ବ୍ୟକ୍ତିତ୍ୱ | ଅରବିନ୍ଦ ଦାଶ-୫୪ |
| ସଫଳ ସଂଗ୍ରାମୀ | ସୁନନ୍ଦ କୁମାର ରାଉତ-୫୭ |
| ଶିଶିର କୁମାର ଭାରତୀ ଗୋସ୍ୱାମୀଙ୍କ ସଂପର୍କରେ | ବୃନ୍ଦାବନ ପାଣି-୫୯ |
| ଭାରତୀ ପାଇଁ ଭାରତୀ | ମନମୋହନ ମଲ୍ଲିକ-୬୪ |
| ଅନେକ ମୁହୂର୍ତ୍ତର ସ୍ୱାକ୍ଷର- ଶିଶିର | ବିଜୟ କୁମାର ନାୟକ-୬୯ |
| ମଦନ ମୋହନ ମଠରେ ଗୀତା ପାରାୟଣ | ଶ୍ରୀଯୁକ୍ତ ସମରଜିତ୍ ପ୍ରଧାନ-୭୧ |
| ପ୍ରିୟବନ୍ଧୁଙ୍କ ସ୍ମୃତି ଉଦ୍ଦେଶ୍ୟରେ | ଶ୍ରୀ ପ୍ରମୋଦ କୁମାର ଦାଶ-୭୩ |
| ମହନ୍ତ ମହାରାଜ | ସିଦ୍ଧାର୍ଥ କୁମାର କର=୭୫ |
| ଶିଶିର ଭାରତୀ ଗୋସ୍ୱାମୀଙ୍କ ସ୍ମୃତିରେ | ଶ୍ରୀ ଶଙ୍କର୍ଷଣ ତିଆଡ଼ି -୭୭ |
| ଜାଜ୍ୱଲ୍ୟମାନ ସ୍ମୃତି ଦୀପାଳିରେ ମହନ୍ତ ମହାରାଜ ଶିଶିର ଭାରତୀ | ପ୍ରଫୁଲ୍ଲ କୁମାର ସାହୁ-୭୯ |
| ମନେପଡ଼େ ତୁମ ସ୍ମୃତି | ନରୋତ୍ତମ ସାହୁ-୮୪ |
| ଶ୍ରଦ୍ଧାର ସ୍ୱରୂପ | ହିମାଂଶୁ ଶେଖର ରାୟ-୮୬ |
| ବ୍ରହ୍ମ ଲୋକକୁ ଯାତ୍ରା | ରଶ୍ମିକାନ୍ତ ସାହୁ-୮୮ |
| ଗୀତା ସତ୍‌ସଂଗରେ ଯୋଗଦାନ | ଅଶୋକ କୁମାର ସାହୁ-୯୨ |
| ମୋ' ସ୍ମୃତିରେ | ଅନିରୁଦ୍ଧ ଗିରି -୯୩ |
| ଶ୍ରଦ୍ଧାଞ୍ଜଳି | ପ୍ରମୋଦ ପଣ୍ଡା-୯୫ |
| ମଦନ ମୋହନ ମଠରେ ଭଗବତ୍‌ଗୀତା ପାରାୟଣ ଓ ତହିଁରେ ମୋର ସଂପୃକ୍ତି | ବିଚିତ୍ରା ନନ୍ଦ ରାଉତ-୯୬ |


Digitized by PPRACHIN, SOA

| | |
|---|---|
| ଅଭୁଲା ସ୍ମୃତି | ଭଗିରଥ ପାଣି -୯୭ |
| ପରଂପରା ଓ ପୁରୋଦୃଷ୍ଟିରେ ମଦନମୋହନ ମଠ | ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା-୯୯ |
| ଶ୍ରୀ ଶ୍ରୀ ମଦନମୋହନଙ୍କ ଚରଣାଶ୍ରିତ | ବସନ୍ତ କୁମାର ଭାରତୀ-୧୦୬ |
| ସ୍ନେହୀ ମଣିଷଙ୍କ ଶ୍ରଦ୍ଧାର ଡାକ | ବିଜୟାନନ୍ଦ କର-୧୦୯ |
| ଏକ ବିରଳ ବ୍ୟକ୍ତିତ୍ୱ ଭାରତୀ ସାର୍ | ସରୋଜିନୀ ପଣ୍ଡା-୧୧୦ |
| କିଛି ଅକୁହା କଥା | ପ୍ରତିଭା ସାହୁ -୧୧୧ |
| ମହନ୍ତବାବା | ପ୍ରେମଲତା ମହାରଣା-୧୧୩ |
| ଦେବ ସ୍ୱରୂପ 'ବାବା' | ଶୁଭମୟ ପଣ୍ଡା-୧୧୬ |
| ମୋ' ମାନସପଟ୍ଟରେ ବାବା | ରାଜଶ୍ରୀ ଭାରତୀ-୧୨୨ |
| ବାବା ତୁମେ କେତେ ମହାନ | ରୁବି-୧୨୬ |
| ସେହି ସ୍ମୃତିରୁ ପଦେ | ଜୟନ୍ତୀ ଆରଣ-୧୨୭ |
| କିଛି ସ୍ମୃତି କିଛି ଅନୁଭୂତି | ଆରତୀ ପ୍ରଭା ଭାରତୀ-୧୨୯ |
| ବଡ଼ ବାପାଙ୍କ ସ୍ମୃତିରେ | ମଧୁସ୍ମିତା ଭାରତୀ-୧୩୨ |
| ମୋ' ଜୀବନରେ 'ବାବା' | ଶ୍ରୀମତୀ ଜୟଶ୍ରୀ ଭାରତୀ-୧୩୪ |
| ମୋ' ଅନ୍ତରର କଥା | ଶ୍ରୀତମ୍ ପଣ୍ଡା (ମିତନ)-୧୪୧ |
| **The great teacher in my life** | **Pragyan Goswami-143** |


## ପଦ୍ୟ:


| | |
|---|---|
| ମରିବି ତୁମେ ଅମର | ଶ୍ରୀ ବୈରାଗୀ ଚରଣ ଘଡ଼େଇ-୧୪୫ |
| ଅଭୁଲା ମଣିଷ | ବୀରେନ ଆରଣ-୧୪୭ |
| ଅଭୁଲା ଅତୀତ | ଅନାଦି ଚରଣ ସାହୁ-୧୪୯ |
| ଖରସ୍ରୋତା ତୀରେ ମଦନମୋହନ ମଠ | ପଣ୍ଡିତ ବିଭୂତି ଭୂଷଣ ପଣ୍ଡା-୧୫୧ |
| ପିତା | ଜ୍ଞାନରଂଜନ ଭାରତୀ-୧୫୨ |
| ଲୋତକାଞ୍ଜଳି | ଆନନ୍ଦ ଚନ୍ଦ୍ର ନାୟକ -୧୫୩ |
| ମାମୁ | ସଂଗୀତା ଗିରି-୧୫୫ |
| ବାବାଙ୍କ ସ୍ମୃତିରେ | ରଶ୍ମିରଂଜନ ଭାରତୀ-୧୫୬ |
| ଆଜି କାହିଁ ମନେପଡ଼େ ତୁମ କଥା | ସୁଶିଲ କୁମାର ଗିରି -୧୫୮ |
| ଘେନ ମୋର ଶ୍ରଦ୍ଧାଞ୍ଜଳି | ପ୍ରଦୀପ କୁମାର ସାମଲ-୧୫୯ |
| ବାବାଙ୍କ ସ୍ମୃତିରେ | ଦେବାଶିଷ ଭାରତୀ (ପପୁ)-୧୬୧ |
| ଗୁରୁ | ଶ୍ରୀମତୀ ସୌଦାମିନୀ ପଣ୍ଡା-୧୬୩ |
| ବଡ଼ ଭାଇଙ୍କ ସ୍ମରଣେ | ଶ୍ରୀମତୀ ଆରତୀପ୍ରଭା ଭାରତୀ-୧୬୪ |
| ସ୍ମୃତି | ଶ୍ରୀମତୀ ମଂଜୁଲତା ଦାଶ -୧୬୬ |
| ସ୍ମୃତି ଏକ ବୈରାଗୀ ମନର | ବାସନ୍ତୀ ଦେବୀ-୧୬୭ |


*Digitized by PPRACHIN, SOA*



# ଜୀବ ଅଷ୍ଟକମ୍

ଅହମ୍ ଅଚିନ୍ତ୍ୟଃ ଅମରଃ ନିତ୍ୟୋରୂପଃ
ଅହଂ ସତ୍ୟୋ ସତ୍ୟାଂଶଃ ସତ୍ୟସ୍ୱରୂପଃ
ଅହଂ ଅକ୍ଲେଦ୍ୟଶ୍ଚ ଅଦାହ୍ୟଃ ଅଶୋଷ୍ୟଃ
ଅହଂ କୃଷ୍ଣଦାସଃ ଅହଂ କୃଷ୍ଣଦାସଃ ॥୧॥

ନାହଂ ବ୍ରହ୍ମା ବିଷ୍ଣୁ ଚ୍ ରୁଦ୍ରଃ ବସୋବଃ
ନାହମ୍ ଆଦିତ୍ୟୋ ମରୁତଃ ଯକ୍ଷଃ ଦେବଃ
ନାହଂ ବାଳଃ ବୃଦ୍ଧଶ୍ଚ ନାରୀ ପୁରୁଷଃ
ଅହଂ କୃଷ୍ଣଦାସଃ ଅହଂ କୃଷ୍ଣଦାସଃ ॥୨॥

ଅହଂ ଅଜନ୍ମା ଅବ୍ୟୟୋ ମୁକ୍ତ ସତ୍ୟଃ
ଅହମ୍ କୂଟସ୍ଥାଚଳ ପୁରୁଷୋ ନିତ୍ୟଃ
ଅହମ୍ କୃଷ୍ଣାଂଶଃ କୃଷ୍ଣ ଦେବସ୍ୟ ଅଂଶଃ
ଅହଂ କୃଷ୍ଣଦାସଃ ଅହଂ କୃଷ୍ଣଦାସଃ ॥୩॥

Digitized by PPRACHIN, SOA

ନାହମ୍ ଏତତ୍‌ଦେହଶ୍ଚ ନା ତସ୍ୟ ଅଂଗଃ
ନାହଂ କସ୍ୟ ସଂଗଶ୍ଚ ନାହମ୍ ଅସଂଗଃ
ନାହଂ ପଞ୍ଚପ୍ରାଣଃ ନା ହଂ ପଞ୍ଚକୋଷଃ
ଅହଂ କୃଷ୍ଣଦାସଃ ଅହଂ କୃଷ୍ଣଦାସଃ ।।୪।।

ଅହଂ ଗୁଣାତୀତଃ ଅହଂ କାଳାତୀତଃ
ଅହଂ ଆନନ୍ଦୋ ଶିବ ସ୍ୱରୂପୋ ସତ୍ୟଃ
ଅହଂ ଚିଦାନନ୍ଦୋହଂ କୃଷ୍ଣସ୍ୟ ଦାସଃ
ଅହଂ କୃଷ୍ଣଦାସଃ ଅହଂ କୃଷ୍ଣଦାସଃ ।।୫।।

ଅହଂ ତେନ ସହ ଏକତ୍ୱଂ ସମ୍ବନ୍ଧମ୍
ଅହମ୍ ତେନ ସହ ସମ୍ବନ୍ଧମ୍ ପୃଥକମ୍
ଅହମ୍ ତଦଭେଦାଭେଦଶ୍ଚ ଅଚିନ୍ତ୍ୟମ୍
ଅହଂ କୃଷ୍ଣଦାସଃ ଅହଂ କୃଷ୍ଣଦାସଃ ।।୬।।

ଅହଂ ବିସ୍ମୃତବାନ୍ ମମ ରୂପୋଶୁଦ୍ଧଃ
ଅହଂ ମାୟା ଅନଳୋ ଦେହେ ଆବଦ୍ଧଃ
ଅହଂ ଶତୋଶତଃ ଆଶୟା ନିବଦ୍ଧଃ
ଅହଂ କୃଷ୍ଣଦାସଃ ଅହଂ କୃଷ୍ଣଦାସଃ ।।୭।।

ଅହଂ କୃଷ୍ଣଦାସଃ ଅହଂ କୃଷ୍ଣଦାସଃ
ଅହଂ କୃଷ୍ଣଦାସଃ ଅହଂ କୃଷ୍ଣଦାସଃ
ଅହଂ କୃଷ୍ଣଦାସଃ ଅହଂ କୃଷ୍ଣଦାସଃ
ଅହଂ କୃଷ୍ଣଦାସଃ ଅହଂ କୃଷ୍ଣଦାସଃ ।।୮।।

ଇତି ଜୀବ ଅଷ୍ଟକମ୍ ସଂପୂର୍ଣ୍ଣମ୍ ।।

Digitized by PPRACHIN, SOA

# ମହନ୍ତ ଶ୍ରୀ ଶ୍ରୀ ଶିଶିର କୁମାର ଭାରତୀ

ଶ୍ରୀ ହାଡ଼ିବନ୍ଧୁ ରଣା



ଶ୍ରୀଶ୍ରୀ ମଦନମୋହନ ଜୀଉ ମଠ, ଖଣ୍ଡିତର ଆମ ଅଂଚଳରେ ଗୋଟିଏ ପବିତ୍ର ନାମ। କାହିଁ କେତେ କାଳରୁ ଏଠାରେ ଏ ମଠ ସ୍ଥାପିତ ହୋଇ ଏ ଅଂଚଳରେ ଆଲୋକବର୍ତ୍ତିକା ସଦୃଶ ଦଣ୍ଡାୟମାନ ହୋଇ ସ୍ଥାନୀୟ ଜନସାଧାରଣଙ୍କୁ ମୁକ୍ତିର ମାର୍ଗ ପ୍ରଦର୍ଶନ କରିଚାଲିଛି।

ଶିଶିର ଭାରତୀଙ୍କ ବଡ଼ବାପା ନବକିଶୋର ଭାରତୀ ଏ ମଠର ମହନ୍ତ ଥିଲେ। ସେ ତାଙ୍କ ସାନଭାଇର ପୁଅ ଶିଶିର ଭାରତୀଙ୍କୁ ମୃତ୍ୟୁ ପୂର୍ବରୁ ଚେଲା ରୂପେ ସ୍ୱୀକାର କରି ତାଙ୍କ ପରେ ଗାଦିସୀନ ହୋଇ, ତାଙ୍କର ତିଳତର୍ପଣ, ସୁଧିକ୍ରିୟା ସାଧୁଭୋଜନ, ଗ୍ରାମବାସୀ ପ୍ରଜାପାଟକ ଓ ସେବାୟତମାନଙ୍କୁ ପ୍ରସାଦ ସେବା କରାଇବା ଇତ୍ୟାଦି କାର୍ଯ୍ୟ ସଂପାଦନ କରିବାପାଇଁ ଦାୟିତ୍ୱ ଦେଇଥିଲେ। ମଠର ସୁରକ୍ଷା ଓ ଶ୍ରୀଜୀଉଙ୍କର ସେବାପୂଜା ଇତ୍ୟାଦି ସମସ୍ତ ଦାୟିତ୍ୱ ନିର୍ବାହ



Digitized by PPRACHIN, SOA

କରିବାର କ୍ଷମତା ରେଜେଷ୍ଟ୍ରି ଉଇଲ ମାଧ୍ୟମରେ ଦେଇଗଲେ ଏବଂ ଦେବୋତ୍ତର ବିଭାଗ ଦ୍ୱାରା ମଧ୍ୟ ପ୍ରଚଳିତ ଆଇନ ଅନୁସାରେ ଅନୁମୋଦିତ କରାଇଥିଲେ। ୧୯୯୧ ମସିହାରେ ମହନ୍ତ ନବକିଶୋର ଭାରତୀ ଦେହରକ୍ଷା କଲେ। ମହନ୍ତଙ୍କ ଇଚ୍ଛାପତ୍ର ଅନୁସାରେ ମହନ୍ତ ଗାଦିରେ ବସିଲେ ଶିଶିର କୁମାର ଭାରତୀ।

ସେତେବେଳେ ଶିଶିର ଭାରତୀ ଉଚ୍ଚ ଶିକ୍ଷିତ। ବି.ଏ. ବି.ଇଡ଼ି. ପାଶ୍ କରିଥିବା ବ୍ୟକ୍ତି। ଚିନ୍ତାପଲ୍ଲୀ ବାହାଦଲାପୁରର ସଂଗ୍ରାମୀ ପରମାନନ୍ଦ ମହାନ୍ତି, ବାଞ୍ଛାନିଧି ପଣ୍ଡା ଓ ନବକିଶୋର ଭାରତୀ ଖଣ୍ଡିତର ଉ.ପ୍ରା ବିଦ୍ୟାଳୟରେ ସହପାଠୀ ଥିଲେ। ପରମାନନ୍ଦ ମହାନ୍ତି ମଧୁବନ ହାଇସ୍କୁଲର ପ୍ରତିଷ୍ଠାତା। ମଧୁବନ ହାଇସ୍କୁଲ ପ୍ରତିଷ୍ଠା ହେବା ପରେ ଶିଶିର ଭାରତୀ ସେଠାରେ ସହକାରୀ ଶିକ୍ଷକ ଭାବେ ନିଯୁକ୍ତି ପାଇଲେ। ଶିଶିର ଭାରତୀ ଉଚ୍ଚ ଶିକ୍ଷିତ ହୋଇଥିବା ହେତୁ ଏ ଅଂଚଳରେ ବହୁତ ନାମ କମାଇ ଥିଲେ।

୧୯୬୭ ମସିହାରେ କୋଳଥଳ ଗ୍ରାମର ବଦାନ୍ୟ ବ୍ୟକ୍ତି ସ୍ୱର୍ଗତଃ ବ୍ରଜକିଶୋର ମହାନ୍ତି କୋଳଥଳରେ ଏକ ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ସଂଲଗ୍ନ ପ୍ରାୟ ଦଶଖଣ୍ଡ ଗ୍ରାମର ମୁଖ୍ୟ ବ୍ୟକ୍ତିମାନଙ୍କୁ ନେଇ ଏକ ସଭା କରିଥିଲେ। ବ୍ରଜକିଶୋର ମହାନ୍ତି, ଜ୍ୟେଷ୍ଠଭ୍ରାତା କାହ୍ନୁଚରଣ ମହାନ୍ତି ଧର୍ମଶାଳା ରେଜେଷ୍ଟ୍ରିଖାନାର ମୋହରୀର କାର୍ଯ୍ୟ କରୁଥିଲେ ମଧ୍ୟ ସମାଜସେବା ପ୍ରତି ସେମାନଙ୍କର ବିଶେଷ ମନ ଥିଲା। ସେଇ ସତ୍ ପ୍ରେରଣାକୁ ନେଇ ଅଂଚଳର ବିଶିଷ୍ଟ ବ୍ୟକ୍ତିଙ୍କ ପୂର୍ଣ୍ଣ ସାହାଯ୍ୟ ଓ ସହଯୋଗରେ ଏହି ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରିପାରିଥିଲେ। ଏହି ଅନୁଷ୍ଠାନକୁ ଯେଉଁମାନେ ପୂର୍ଣ୍ଣପ୍ରାଣରେ ସହଯୋଗ କରିଥିଲେ ସେମାନଙ୍କ ମଧ୍ୟରେ ମୁଖ୍ୟ ବ୍ୟକ୍ତି ଗଣ ହେଲେ ବୈରାଗୀ ଚରଣ ଘଡ଼େଇ, ପ୍ରଧାନ ଶିକ୍ଷକ ମଧ୍ୟ ଇଂରାଜୀ ବିଦ୍ୟାଳୟ ଓ ଶିକ୍ଷକ ତଥା ଶିକ୍ଷାପ୍ରେମୀ ହାଡ଼ିବନ୍ଧୁ ରଣା। ଅନୁଷ୍ଠାନ ପାଇଁ ଯେଉଁମାନେ ଜମି ଦାନ କରିଥିଲେ ସେମାନଙ୍କ ମଧ୍ୟରେ ମୁଖ୍ୟ ହେଉଛନ୍ତି କୋଳଥଳର ହରେକୃଷ୍ଣ ଦାସ ମହୋଦୟ। ଏ ସମସ୍ତଙ୍କୁ ନେଇ ଯେତେବେଳେ ଅନୁଷ୍ଠାନ ସୃଷ୍ଟି ହେବାକୁ ବସିଲା, ସେତେବେଳେ ଶିଶିର ଭାରତୀଙ୍କ କଥା କେତେକ ବ୍ୟକ୍ତି ଆଲୋଚନାକୁ ଆଣିଲେ। ଅରଡ଼ାର ଅଖିଳ ମୋହନ ମହାନ୍ତି (ଉରି ଅପାଙ୍କ ପୁଅ), ଶିଶିର ଭାରତୀଙ୍କୁ ପ୍ରଧାନ ଶିକ୍ଷକ ଭାବେ ସ୍କୁଲରେ ଯୋଗଦେବା ନିମନ୍ତେ ଅନୁରୋଧ ଜଣାଇ ସେ ସଭାକୁ ଡାକି ନେଇଥିଲେ। ସଭାରେ ସ୍ଥିର ହେଲା ଯେ,



Digitized by PPRACHIN, SOA

ଶିଶିର ଭାରତୀ ସ୍କୁଲର ପ୍ରଧାନ ଶିକ୍ଷକ ଦାୟିତ୍ୱ ତୁଲାଇବେ। ଗ୍ରାମର ଅଧିଷ୍ଠାତ୍ରୀ ଦେବୀ କ୍ଷେତ୍ରପାଳଙ୍କ ନାମରେ ଏହି ଉଚ୍ଚବିଦ୍ୟାଳୟ ନାମିତ ହେଲା ଓ ସେଠାରେ ମହନ୍ତ ଶିଶିର ଭାରତୀ ପ୍ରଧାନ ଶିକ୍ଷକ ହେଲେ। ସେହି ଦିନଠାରୁ ଶିଶିର ଭାରତୀ କ୍ଷେତ୍ରପାଳ ଉଚ୍ଚବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥାଇ ମଠର ମହନ୍ତ ରୂପେ ୧୯୯୧ ମସିହାରୁ କାର୍ଯ୍ୟ କଲେ।

ମୁଁ ଜଣେ କଳାକାର ପରିବାରର ପୁଅ। ମୋ' ବାପା ଜଣେ କଳାକାର। ତେଣୁ ଯେଉଁ ଗ୍ରାମରେ ବା ସ୍କୁଲରେ, ସେତେବେଳେ ନାଟକ ମଞ୍ଚସ୍ଥ ହେଉଥିଲା ସେଠାରେ ମୁଁ ନାଟ୍ୟ ନିର୍ଦ୍ଦେଶକ ଭାବେ ପହଞ୍ଚୁଥିଲି। ୧୯୮୧ ମସିହାରେ କ୍ଷେତ୍ରପାଳ ହାଇସ୍କୁଲରେ ଯଦୁନାଥ ଦାସ ମହାପାତ୍ରଙ୍କ ଲିଖିତ ନାଟକ 'ଭୁଲି ହୁଏନା' ମଞ୍ଚସ୍ଥ ହେବାର ସ୍ଥିର ହେଲା। ନୃତ୍ୟ ନାଟିକା ଭାବରେ ଫକୀରମୋହନ ସେନାପତିଙ୍କ ପେଟେଣ୍ଟ୍ ମେଡ଼ିସିନ ତା' ସହିତ ମଧ୍ୟ ଅଭିନୀତ ହେବାର ସ୍ଥିର ହେଲା। ନାଟ୍ୟ ନିର୍ଦ୍ଦେଶକ ହେଲି ମୁଁ। ଶିଶିର ଭାରତୀ ପ୍ରଧାନ ଶିକ୍ଷକ ଥାଇ ମଧ୍ୟ ଏ ଦୁଇ ନାଟକରେ ମୁଖ୍ୟ ଭୂମିକାରେ ଅବତୀର୍ଣ୍ଣ ହେଲେ। ସୁନ୍ଦର ଚେହେରା ସାଂଗକୁ ଉନ୍ନତମାନର ଡାଇଲଗ୍ ଉଚ୍ଚାରଣ ତାଂକୁ ପ୍ରସିଦ୍ଧ ଦେଇଥିଲା।

କ୍ଷେତ୍ରପାଳ ହାଇସ୍କୁଲର ପ୍ରଧାନ ଶିକ୍ଷକତା ପରେ ସେ ଖଣ୍ଡିତର ହାଇସ୍କୁଲକୁ ପ୍ରଧାନ ଶିକ୍ଷକ ହୋଇ ବଦଳି ଯାଇଥିଲେ। ସେହି ସ୍କୁଲରୁ ସେ ଅବସର ନେଇଥିଲେ। ଆମ ଅଂଚଳଟି ବନ୍ୟା ଅଂଚଳ। ପ୍ରତିବର୍ଷ ଖରସ୍ରୋତାର ବନ୍ୟାଜଳ ଓ ଅଂଚଳରେ ପ୍ରଭୂତ କ୍ଷତି କରେ। କେଉଁ ଆବହମାନ କାଳରୁ ଶ୍ରୀ ମଦନ ମୋହନ ଚାଳଘରେ ରହି ପୂଜା ପାଉଥିଲେ। ଏଠାରେ ଥିବା ସିଂହାସନ ଉପରେ ଶାଳଗ୍ରାମ ପୂଜା ପାଉଥିଲେ। କାଳକ୍ରମେ ଚାଳଛପର ଓ ସିଂହସନ ଭାଂଗି ପଡ଼ିଲା। ତେଣୁ ମହନ୍ତ ଶିଶିର ଭାରତୀ ନୂଆ କରି ପକ୍କା ଘର ନିର୍ମାଣ କରାଇଲେ। ଏତଦ୍‌ବ୍ୟତୀତ ମଠର ଶାଳଗ୍ରାମ ଗାଦି, ଅଭିଷେକ ଗୃହ, ମଠ ମହାରାଜମାନଙ୍କ ସମାଧି ଗୃହ, ରନ୍ଧନଶାଳା, ଝୁଲଣ ମଣ୍ଡପ, ଅତିଥିଗୃହ ସଂପୂର୍ଣ୍ଣ ରୂପେ ପୁନର୍ନିର୍ମାଣ କରିଛନ୍ତି। ମଦନ ମୋହନଙ୍କ ସେବାପୂଜା ନିୟମିତ କରିଛନ୍ତି, ଅବହେଳା କରିନାହାଁନ୍ତି।

୨୦୧୦ ମସିହାରେ ମହନ୍ତ ପ୍ରଧାନ ଶିକ୍ଷକ ପଦରୁ ଅବସର ନେଇ ମଠ ପରିଚାଳନାରେ ଅଧିକ ସକ୍ରିୟ ଭାବରେ କାର୍ଯ୍ୟ କଲେ। ପ୍ରତିବର୍ଷ ଗୀତା ଯଜ୍ଞର ଆୟୋଜନ କରିଥିଲେ। ତତ୍‌ପରବର୍ତ୍ତୀ ସମୟରେ ପ୍ରତି ପୂର୍ଣ୍ଣିମାରେ ଅଷ୍ଟାଦଶ



Digitized by PPRACHIN, SOA

ଅଧ୍ୟାୟ ଗୀତା ପାରାୟଣ, ତୁଳସୀ ସମର୍ପଣ, ଘୃତାହୁତି, ପ୍ରସାଦସେବା ଆଦି କାର୍ଯ୍ୟ କରୁଥିଲେ। ଏ ଅଂଚଳ ଏକ ସାଂସ୍କୃତିକ କାର୍ଯ୍ୟକ୍ରମ ଭରା ଅଂଚଳ। ମହନ୍ତ ଅନେକ ଆଧ୍ୟାତ୍ମିକ ତଥା ସାଂସ୍କୃତିକ କର୍ମରେ ନିଜକୁ ନିୟୋଜିତ କରିଥିବାରୁ ବହୁ ପ୍ରଶଂସାର ପାତ୍ର ହୋଇଥିଲେ। ଜନସାଧାରଣ ତାଙ୍କୁ ଦେବତାଜ୍ଞାନ କରନ୍ତି। ଦୀର୍ଘକାଳ ଶିକ୍ଷକତା କରି ଅନେକ ଖ୍ୟାତି ଲାଭ କରିବା ସହିତ ହଜାର ସଂଖ୍ୟାର ଛାତ୍ରଛାତ୍ରୀ ସେ ସୃଷ୍ଟି କରିଥିଲେ। ଜୀବନକାଳରେ ବହୁ ଯଶ କମାଇ ଥିଲେ।

ଶାସ୍ତ୍ରରେ କୁହାଯାଏ, ଯେଉଁମାନେ ସତ୍‌ପୁରୁଷ, ସ୍ଥିତପ୍ରଜ୍ଞ ପୁରୁଷ ଓ ଧୀର ପୁରୁଷ ସେମାନଙ୍କର ଯଶଗାନ କଲେ ତାଙ୍କର ପୁଣ୍ୟ ନିଜ ଆଡ଼କୁ ଚାଲିଆସେ। ନିନ୍ଦୁକ କେବଳ ପାପଭାର ବହନ କରେ। ଆମ ଅଂଚଳର ସମସ୍ତ ଜନସାଧାରଣଙ୍କୁ ମୋର ନିବେଦନ ସେମାନେ ସୁଯୋଗ ପାଇଲେ ମଦନମୋହନ ମଠକୁ ଯାଆନ୍ତୁ ଓ ଏହି ମହନ୍ତଙ୍କ ସମାଧିରେ ପ୍ରଣାମ କରି ପୁଣ୍ୟ ଲାଭ କରନ୍ତୁ।

ମୋର ପରିଣତ ବୟସରେ, ମୁଁ ବାରବାର ମହନ୍ତ ଶିଶିର ଭାରତୀ ତଥା ନବକିଶୋର ଭାରତୀଙ୍କୁ ପ୍ରଣାମ କରୁଛି, ଶତବାର ପ୍ରଣାମ ଜଣାଉଛି।

*ସଦାନନ୍ଦପୁର, କୁଆଖିଆ*








Digitized by PPRACHIN, SOA

# ଶିଶିରବାବୁଙ୍କ ସଂସାର

ଡକ୍ଟର ରାଜକିଶୋର ପାଢ଼ୀ



ଶିଶିରବାବୁ, ମାନେ ମହନ୍ତ ଶିଶିର ଭାରତୀ, ସଂସାରରୁ ବିଦାୟ ନେଇ ଗଲେଣି । କିନ୍ତୁ ଯେଉଁ ତ୍ରିମୁଖୀ ସଂସାର ସହିତ ସେ ଜଡ଼ିତ ଥିଲେ ସେଇ ସଂସାର ତାକୁ ଭୁଲି ନାହିଁ, ଏକ ପ୍ରକାର ଛାଡ଼ି ନାହିଁ ବୋଲି ବି କୁହାଯାଇପାରିବ । ପାଠଶାଠ ପଢ଼ି ସେ ଜଣେ ପ୍ରଧାନଶିକ୍ଷକ ହେଲେ ହାଇସ୍କୁଲରେ । ଏଇ ବୃତ୍ତିଟି ଥିଲା ଗୋଟିଏ ମହତ୍ୱପୂର୍ଣ୍ଣ ଜୀବିକା । ଜଣେ ଚାଲିଯିବାପରେ ବି ସେଇ ବୃତ୍ତିରେ ଥିବା ମଣିଷର ସଦ୍‌ଗୁଣର ସୁଗନ୍ଧ ତାଙ୍କ ପାଖରେ ପଢ଼ିଥିବା ପିଲାମାନଙ୍କ ଭିତରେ ପ୍ରସାରିତ ହେଇ ରହିଯାଏ, ସେ ଗୋଟିଏ ଦୃଷ୍ଟିରୁ ଅମର ହେଇ ରହିଯାଆନ୍ତି ସ୍ମୃତିରେ । ଶିକ୍ଷାଲୋକର ଦୀପାଲୋକରେ ଦୀପ୍ତ ହେଇଥାଆନ୍ତି ଶିଷ୍ୟ ପ୍ରଶିଷ୍ୟମାନେ । ଆଲୁଅ କେବେ ସଂପୂର୍ଣ୍ଣ ନିଭେନା କି ଦୀପ ହେଇପାରେନା ନିର୍ବାପିତ ।

ଆଉ କଥାଟି ହେଲା ଯେଉଁ ସଂସାରକୁ, ଘରକୁ, ଗାଆଁକୁ ସେ ନବଜାତ ଶିଶୁଟିଏ ହେଇ ଆସିଥିଲେ ଓ ସେଇଠି ଶୈଶବ, ଯୌବନ ଓ ପ୍ରୌଢ଼କାଳରୁ କିଛି ବିତେଇ ବିଦାୟ ନେଲେ ସେ ଘର, ଗାଆଁ, ସେ ପରିବେଶ, ସେ ଭୂମି ତାଙ୍କୁ ପାସୋରିଦବା ଏତେ ସହଜ ନୁହେଁ । ଯେଉଁ ପାଣି, ପବନ ଓ ପରିଚୟର ପରିସରରେ ସେ ତାଙ୍କ ଜୀବନର ଅବଧିଟି ବିତେଇଥିଲେ ସେ ପରିମଣ୍ଡଳ ପୂର୍ବପରି ଜୀବନ୍ତ, ଚଂଚଳ ଓ ସକ୍ରିୟ ଅଛି ଏବଂ ତାଙ୍କ ନଥିବାଟି ଗୋଟିଏ ଅପୂର୍ଣ୍ଣତା, ଅଭାବ ବୋଲି ଅନୁଭବ କରାଯାଉଛି । ସେ ଅଭାବବୋଧ ଆହୁରି ଦୀର୍ଘକାଳ ରହିବ ଏହା ନିଶ୍ଚିତ । ମଣିଷର ସ୍ମୃତିଶକ୍ତି ଯଦିଓ ଦୁର୍ବଳ, ତଥାପି ସେ ତା' ଅତୀତ ପ୍ରତି ଅକୃତଜ୍ଞ ନୁହେଁ, ସେ ତାକୁ ମନେପକାଏ, ଶ୍ରଦ୍ଧାରେ ଶ୍ରାଦ୍ଧକରେ । ତା' କଥା ଗପ ହେଇ ଖେଳିବୁଲେ ତୁଣ୍ଡରୁ ତୁଣ୍ଡ । ସେ ନଥାଉ ତା' କଥା, ତା' ଜୀବନ ଲୀଳାର କଥା ବଂଚି ରହେ ଆହୁରି କିଛିକାଳ । ଆମେ ତ ଆମ ପିତା ପ୍ରପିତାଙ୍କ ସଂପର୍କରେ ଏବେ ବି କହୁ ଓ ପୁରୁଣା ଲୋକଙ୍କଠାରୁ ସେପରି କାହାଣୀ ଶୁଣୁ । ତେଣୁ ଜଣେ ଲୋକ ମୃତ୍ୟୁପରେ ବି ଗୋଟିଏ ପ୍ରଲମ୍ବିତ କାଳଖଣ୍ଡରେ ସୂକ୍ଷ୍ମ ଶରୀରରେ ବଂଚି ରହେ ଓ ତାକୁ ଅନୁଭବ କରାଯାଏ । ତାଙ୍କ ଅସଜଡ଼ା ଘରଟି



Digitized by PPRACHIN, SOA

ଏବେ ବି ତାଙ୍କୁ ଝୁରୁଥିବ। ଏବେ ବି ସେ ଦିଶୁଥିବେ ଛାଇଟିଏ ପରି କେଉଁଠି ବସିଥିଲା ପରି କି ପଶି ଆସିଲା ପରି। ଅପୂରଣୀୟ ରହିଯାଇଥିବ କେତେ କାମ। ସାକାର ହେଇ ନଥିବ ସ୍ୱପ୍ନ। କେତେ କ'ଣ ରହିଥିବ ଅଧାଗଢ଼ା। ନିଷ୍ପତ୍ତି ସବୁ ନିଆଯାଇପାରି ନଥିବ ଆଗୁଆ। ଅତିର୍କିତ ଭାବରେ ସେ ବିଦା ହେଇଯିବାବେଳେ କେତେ କ'ଣ ଦିଶିଥିବ ଅପୂରଣୀୟ ଓ ସେଇ ଅପୂର୍ଣ୍ଣତା ଭିତରେ ଠିଆ ହେଇଥିବେ ସେ ସ୍ମୃତିରେ ପୂର୍ଣ୍ଣ ହେଇ।

ତୃତୀୟ ଓ ଅନ୍ୟ ଭାବରେ କହିଲେ ଜୀବନର ଲକ୍ଷ୍ୟ ଦୃଷ୍ଟିରୁ ପ୍ରଥମ ଭୂମିଟି ହେଲା ମୋକ୍ଷର ପଥ। ଶିଶିର ବାବୁଙ୍କ ଜୀବନର ତ୍ରିପାଦ ଭୂମିରୁ ଏଇଟି ଥିଲା ସେଇ ତୃତୀୟ ପାଦ, ଯାହାର ପ୍ରସାରର ସୀମା ନାହିଁ। ଖରସୁଆଁ ନଈକୂଳର ଶାନ୍ତଶୀତଳ ଛାୟାତଳର ସେ ମଠ ଓ ତା'ର ମହନ୍ତ ମହରାଜ, ପାଖରେ ବିସ୍ତୀର୍ଣ୍ଣ ଉର୍ବର ଶସ୍ୟ ସମ୍ଭାରରେ ପ୍ରାୟ ପରିପୂର୍ଣ୍ଣ କ୍ଷେତବାଡ଼ି। ସେଇଠି ଭଜନ କୀର୍ତ୍ତନ, ପୂଜା, ଆରାଧନା, ପ୍ରାର୍ଥନା, ଉତ୍ସବ, ପର୍ବପର୍ବାଣି, ଅତିଥି ଚର୍ଚ୍ଚା, ଆଧ୍ୟାତ୍ମିକ ଆଲୋଚନା, ସଦ୍‌ଗ୍ରନ୍ଥ ପାଠ, ସତ୍‌ସଂଗ, ଭୋଜିଭାତ, ପ୍ରସାଦ ସେବା ଓ ରାତିର ବିଳମ୍ବିତ ପ୍ରହର ଯାଏ ସଂଗୀତ ଆଳାପ, ଲେଖାଲେଖି ସହିତ ପିଲାଦିନରୁ ଶେଷଦିନ ଯାଏ ଜଡ଼ିତ ସେଇ ଶିଶିରବାବୁ ହେଇପାରେ ଅଶରୀରୀ ଭାବରେ ଉପସ୍ଥିତ ଥିବେ ଏଯାଏ, କେତେ ଋତୁ, କେତେ ସଂଜ ସକାଳ, କେତେ ନିଃଶବ୍ଦ ରାତି କେତେ ରୌଦ୍ରତାପଦଗ୍ଧ ବୈଶାଖ, କେତେ ଜହ୍ନରାତି କେତେ ଅମାବାସ୍ୟାର ନିବିଡ଼ ଅନ୍ଧାର ଭିତରେ ସେ ଏଠି ଏତେ ବର୍ଷ ଥିଲେ। ଜୀବନ ଭୋଗିଥିଲେ। ଏସବୁ ସହିତ ସମପ୍ରାଣ ହେଇଥିଲେ। ଏକାକାର ହୋଇଥିଲେ। ସେ ଗଲାପରେ ସେଇ ପ୍ରକୃତି  ତାଂକୁ ବି ଭୁଲିପାରିବ ନାହିଁ। ମଠର ଠାକୁର, ଗଛଲତା, ମାଟି, ଫୁଲଗଛ, ତୁଳସୀ ଚଉଁରା, ମଣ୍ଡପ ସବୁଠି ତାଙ୍କର ସ୍ପର୍ଶ ଅଛି, ସାନିଧ୍ୟର ଗଂଧ ଅଛି। ସାକ୍ଷୀ ଅଛି ବି ତା'ର ଖରସୁଆଁ ନଈ, ଦେବଦାରୁ ବଣ ଓ ସେଠି ବହୁଥିବା ପବନ। ସିଏ ନାହାଁନ୍ତି। କିନ୍ତୁ ଥିଲା ପରି ଲାଗୁଚି ସେଇ ଶିଶିରବାବୁଙ୍କ କ୍ଷଣସ୍ଥାୟୀ ଶିଶିରାଦ୍ର ଭୂମି ଓ ଭୂମିକା। ପବନରେ, ଟିକିଏ ଧ୍ୟାନସ୍ଥ ହେଇ ଶୁଣିଲେ, ଶୁଭିଯାଉଛି ମହନ୍ତ ମହାରାଜ ଶିଶିର ଭାରତୀଙ୍କ କଣ୍ଠ ନିଃସୃତ ଗୀତି ଭାରତୀ ଯା' ଆମପାଇଁ ପ୍ରେରଣାପୂର୍ଣ୍ଣ ଓ ଆସୁଥିବା ଆହ୍ୱାନକୁ ସାମ୍ନା କରିବାକୁ ଗୋଟିଏ କୋମଳ ଉଦବୋଧକ।

*କୋଟପୁର*





Digitized by PPRACHIN, SOA

# ଭାରତର ଗୁରୁ ପରଂପରା ଓ

# ଭାରତୀ ମଠ



ଶ୍ରୀ ସୁବାସ ଚନ୍ଦ୍ର ପଟ୍ଟନାୟକ

ଗୁରୁ ପରଂପରା ନିର୍ଦ୍ଦିଷ୍ଟ ଭାବରେ କେଉଁ ସମୟରୁ ଆରମ୍ଭ ହୋଇଛି ତାହା କହି ନହେଲେ ମଧ୍ୟ ବୈଦିକ ଯୁଗରୁ ଏହାର ଆରମ୍ଭ ବୋଲି କୁହାଯାଇପାରେ। କାରଣ ବେଦକୁ ଶୁଣି ଶୁଣି ମନେ ରଖାଯାଉଥିଲା। ପ୍ରାଚୀନ ବୈଦିକ ଋଷିଙ୍କ ନିକଟରୁ ଯେଉଁ କେତେ ଜଣ ପ୍ରଥମେ ଶୁଣି ଶୁଣି ମନେରଖିଥିବେ ସେମାନେ ପ୍ରଥମ ଶିଷ୍ୟ ବୋଲି ଗଣାହେବେ। ପ୍ରାଚୀନ ଋଷିଗଣ ଧୂନୀ ମନ୍ଦିରରେ ନିଆଁକୁ ଜଳାଇ ରଖିବା ଭଳି ଏହି ଗୁରୁମାନେ ସେମାନଙ୍କ ଅନ୍ତରରେ ଧରିରଖି ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିଲେ। ବେଦବ୍ୟାସଙ୍କ ପାଖରୁ ଗୁରୁ ପରଂପରା ଆରମ୍ଭ ହେଲା ବୋଲି କହିହେବ। ଋଷି ପରାଶର ତାଙ୍କ ଦିବ୍ୟନେତ୍ରରେ ଦେଖିପାରିଲେ ଯେ, ଜଣେ ମହାନ୍ ଆତ୍ମା ପୃଥିବୀକୁ ଅବତରି ଆସିବା ନିମନ୍ତେ ପ୍ରୟାସ କରୁଛି। ସେ ଅଧିଷ୍ଠାନ ଖୋଜୁଛି। ତେଣୁ ଋଷି ପରାଶର ମାତା ସତ୍ୟବତୀଙ୍କ ଗର୍ଭରେ ବୀର୍ଯ୍ୟସ୍ଥାପନ କରନ୍ତେ ଏହି ଦେବଶିଶୁ ବେଦବ୍ୟାସ ଭୂମିଷ୍ଠ ହେଲେ। ତାହାଙ୍କୁ ମଧ୍ୟ କୃଷ୍ଣ ଦ୍ୱୈପାୟନ କୁହାଯାଏ। ଏହି ବ୍ୟାସଦେବ ଜଗତର ପ୍ରଥମ ଗୁରୁ। ଏହାଙ୍କ ବାଣୀ ସମଗ୍ର ଜଗତକୁ ଏଯାଏ ଆଲୋକ ବିତରଣ କରିଚାଲିଛି।

ବେଦ ଏକ ବିପୁଳ ଆକାର ବିଶିଷ୍ଟ ରଚନା। ଏହା ମାନବଜୀବନର ସର୍ବବିଦ୍ୟାର ସମାହାର। ଉଭୟ ବିଦ୍ୟା ଓ ଅବିଦ୍ୟାରେ ଏହା ପୂର୍ଣ୍ଣ। ବିଦ୍ୟା ହେଉଛି ଆତ୍ମବିଦ୍ୟା, ଅବିଦ୍ୟା ଏଠାରେ ଅଜ୍ଞାନତା ନୁହେଁ ଅବିଦ୍ୟା ହେଉଛି



Digitized by PPRACHIN, SOA

ପାର୍ଥିବ ଜ୍ଞାନ, ସାଂସାରିକ ଜ୍ଞାନ, ସଂସାରରେ ଚଳିବା ପାଇଁ ନିତିଦିନିଆ ଜ୍ଞାନ। ବେଦରେ ଏ ସମସ୍ତ ବିଦ୍ୟା ମଧ୍ୟ ରହିଛି। ତେଣୁ ପୁରବ ବେଦବ୍ୟାସ ଏହାକୁ ବ୍ୟବସ୍ଥିତ କରିବା ପାଇଁ ଯୋଜନା କଲେ। ବିଭିନ୍ନ ଭାବରେ ଏ ସବୁକୁ ବିଭାଗୀକରଣ କଲେ। ଏହାକୁ ଚାରିଭାଗରେ ବିଭକ୍ତ କରିବା ନିମନ୍ତେ ଆବଶ୍ୟକୀୟ ନୀତି ନିର୍ଦ୍ଧାରଣ କଲେ। ଏ ଚାରି ବେଦକୁ ସେ ତାଙ୍କର ଚାରିଜଣ ସୁଯୋଗ୍ୟ ଶିଷ୍ୟକୁ ପ୍ରଦାନ କରି ତାହାର ସଂପାଦନା କରିବା ନିମନ୍ତେ ଆଦେଶ ଦେଲେ। ସେଇ ଚାରି ସୁଯୋଗ୍ୟମାନେ ହେଲେ ପୈଲ- ଋଗବେଦ ପାଇଁ, ବୈଶ୍ୟଂପାୟନ ଯଜୁଃର୍ବେଦ ପାଇଁ, ଜୈମିନୀ- ସାମବେଦ ପାଇଁ ଓ ଅଥର୍ବବେଦ ପାଇଁ ସୁମନ୍ତୁ। ଏ ଚାରି ଶିଷ୍ୟ ପୁଣି ସେମାନଙ୍କ ଶିଷ୍ୟମାନଙ୍କୁ ଏ କାର୍ଯ୍ୟରେ ସହାୟତା ପାଇଁ ନିଯୁକ୍ତ କଲେ। ଏହିଭଳି ଭାବେ ଗୁରୁ ପରଂପରା ପୃଥିବୀରେ ଗତିଶୀଳ ହେଲା। ବ୍ୟାସଦେବଙ୍କ ପୁତ୍ର ଶୁକଦେବ ତତ୍ ପରବର୍ତ୍ତୀ ଗୁରୁ। ଶୁକଦେବଙ୍କ ଶିଷ୍ୟ ଗୌଡ଼ ପାଦ ଯେ କି ମାଣ୍ଡୁକ୍ୟ ଉପନିଷଦର କାରିକା ଲେଖିଛନ୍ତି। ସେ ଅନ୍ୟାନ୍ୟ ବହୁ ଉପନିଷଦର କାରିକା ଲେଖିଥିବେ, ମାତ୍ର ତାହା ଏ ଯାବତ ମିଳି ନାହିଁ। ମାଣ୍ଡୁକ୍ୟ କାରିକାରେ ଗୁରୁ ଗୌଡ଼ପାଦଙ୍କ ବିଦ୍‌ବତ୍ତା ଦେଖିବାକୁ ମିଳେ। ଗୌଡ଼ ପାଦଙ୍କ ଶିଷ୍ୟ ହେଲେ ଗୋବିନ୍ଦ ପାଦ ଯେ କି ଆଦି ଶଙ୍କରଙ୍କ ଗୁରୁ। ବିଧି ନିର୍ଦ୍ଦିଷ୍ଟ ଭାବେ ଶଂକର ଦକ୍ଷିଣ ଭାରତର କେରଳରେ କାଙ୍ଗାଡ଼ି ଠାରେ ଜନ୍ମଗ୍ରହଣ କରି ଅଳ୍ପ ବୟସରେ ନର୍ମଦା ତୀରକୁ ଆସି ଗୁରୁ ଗୋବିନ୍ଦ ପାଦଙ୍କୁ ସାକ୍ଷାତ୍ କରି ତାଙ୍କଠାରୁ ବେଦାନ୍ତ ଶ୍ରବଣ କରିଥିଲେ।

ଏହି ଶଂକରଙ୍କଠାରୁ ବିଧିବଦ୍ଧ ଗୁରୁ ପରଂପରା ଏ ଯାବତ୍ ଚାଲି ଆସିଛି। ଶଂକରଙ୍କର ଗୁରୁଦତ୍ତ ନାମ ଶଂକର ଭଗବତ ପାଦ। ଭଗବତ ପାଦ ଶଂକରଙ୍କର ଚାରି ପ୍ରଧାନ ଶିଷ୍ୟ ଥିଲେ। ସେମାନେ ହେଲେ ଶ୍ରୀହସ୍ତା ମଳକାଚାର୍ଯ୍ୟ, ଶ୍ରୀ ପଦ୍ମପାଦାଚାର୍ଯ୍ୟ, ଶ୍ରୀ ତ୍ରୋଟକାଚାର୍ଯ୍ୟ ଓ ସୁରେଶ୍ୱରାଚାର୍ଯ୍ୟ। ଶଙ୍କର ଚାରି ଦିଗରେ ଚାରି ମୂଳପୀଠ ସ୍ଥାପନ କରି ଏହି ଚାରି ଶିଷ୍ୟଙ୍କୁ ଗୁରୁ ଭାର ଦେଇ ଅବସ୍ଥାପିତ କଲେ। ଭାରତର ପୂର୍ବ ସ୍ଥାନରେ ଉତ୍କଳ କ୍ଷେତ୍ରରେ ଯେଉଁ ମଠ ବା ପୀଠ ସ୍ଥାପିତ ହେଲା ତାହା ଗୋବର୍ଦ୍ଧନ ମଠ ନାମରେ ଖ୍ୟାତ । ଏ ସ୍ଥାନର ଦେବତା ହେଲେ ଶ୍ରୀଜଗନ୍ନାଥ ସ୍ୱାମୀ, ଶକ୍ତି ହେଲେ ବିଶାଳଦେବୀ ବା ବିମଳାଦେବୀ। ଏଠାରେ ତୀର୍ଥ ହେଉଛନ୍ତି ମହୋଦଧି, ବେଦ ହେଉଛି ଋଗ୍‌ବେଦ, ସଂପ୍ରଦାୟ ହେଉଛନ୍ତି



Digitized by PPRACHIN, SOA

ଭାଗବଳଃ ଓ ମହାବାକ୍ୟ ହେଉଛି ପ୍ରଜ୍ଞାନଂବ୍ରହ୍ମ । ଏଠାରେ ଆଚାର୍ଯ୍ୟ ରୂପେ ଶ୍ରୀହସ୍ତା ମଳକା ଚାର୍ଯ୍ୟ ପ୍ରତିଷ୍ଠିତ ହେଲେ । ଏହାଙ୍କ ସହିତ ଦଶନାମୀ ସନ୍ନ୍ୟାସୀ ଅରଣ୍ୟ ଓ ବନ ଅବସ୍ଥାପିତ ହେଲେ । ସେହିଭଳି ଭାରତ ଭୂଖଣ୍ଡର ପଶ୍ଚିମ ଦିଗରେ ଦ୍ୱାରକାଠାରେ ଯେଉଁ ପୀଠ ସ୍ଥାପିତ ହେଲେ ସେ ପୀଠର ନାମ କଳିକାପୀଠ । ଏ ପୀଠର ଆରାଧ୍ୟ ଦେବତା ହେଲେ ସିଦ୍ଧେଶ୍ୱର, ଶକ୍ତି ହେଲେ ଭଦ୍ରକାଳୀ, ତୀର୍ଥ ଗୋମତୀ, ବେଦ ହେଉଛି ସାମବେଦ, ସଂପ୍ରଦାୟ କିତବେଳଃ । ଏହି ମଠର ମହାବାକ୍ୟ ହେଲା ତତ୍ତ୍ୱମସି ଓ ଏଠାରେ ଶ୍ରୀ ପଦ୍ମପାଦାଚାର୍ଯ୍ୟ ପୀଠାଧୀଶ ହେଲେ । ଏହାଙ୍କ ସହିତ ଦଶନାମୀ ସନ୍ନ୍ୟାସୀ ତୀର୍ଥ- ଆଶ୍ରମ ଅବସ୍ଥାପିତ ହେଲେ ।

ଉତ୍ତର ଦିଗରେ ବଦ୍ରିକାଶ୍ରମଠାରେ ଯେଉଁ ମଠ ସ୍ଥାପିତ ହେଲା ତାହାର ନାମ ହେଲା ଜ୍ୟୋତିର୍ମଠ । ଏଠାରେ ଆରାଧ୍ୟ ଦେବତା ହେଲେ ଶ୍ରୀ ନାରାୟଣ, ଶକ୍ତି ପୂର୍ଣ୍ଣାଗିରି, ଏହାର ତୀର୍ଥ ଅଳକାନନ୍ଦା, ବେଦ ହେଉଛି ଅଥର୍ବ ବେଦ, ସଂପ୍ରଦାୟ ନନ୍ଦବଳଃ ଓ ମହାବାକ୍ୟ ହେଲା ସ୍ୱୟଂ ଆତ୍ମା ବ୍ରହ୍ମ । ସେ କ୍ଷେତ୍ରରେ ତ୍ରୋଟକାଚାର୍ଯ୍ୟ ଗୁରୁ ରୂପେ ଅଧିଷ୍ଠିତ ହେଲେ ଓ ଦଶନାମୀ ସନ୍ନ୍ୟାସୀ ଗିରି ପର୍ବତ ସାଗର ମଧ୍ୟ ଅବସ୍ଥାପିତ ହେଲେ । ଦକ୍ଷିଣରେ ଶୃଙ୍ଗେରୀଠାରେ ଯେଉଁ ମଠ ସ୍ଥାପିତ ହେଲା ତାହା ଶାରଦା ପୀଠ ନାମରେ ଖ୍ୟାତ ଓ ଏ ସ୍ଥାନର ଦେବତା ହେଲେ ବିଭାଣ୍ଡକ ମୁନୀ ସେବିତ ଲିଂଗ ବରାହ । ଏ କ୍ଷେତ୍ରର ଶକ୍ତି ହେଲେ ଶାରଦାଦେବୀ, ତୀର୍ଥ ହେଲେ ତୁଙ୍ଗଭଦ୍ରା, ବେଦ ହେଉଛି ଯଜୁଃର୍ବେଦ, ସଂପ୍ରଦାୟ ଭୂରିବଳ ଓ ମହାବାକ୍ୟ ହେଉଛି ଅହଂବ୍ରହ୍ମାସ୍ମି । ଏ ପୀଠରେ ଶ୍ରୀ ସୁରେଶ୍ୱରାଚାର୍ଯ୍ୟ ଗୁରୁ ରୂପରେ ଅବସ୍ଥାପିତ ହେଲେ ଓ ଦଶନାମୀ ସନ୍ନ୍ୟାସୀ ସରସ୍ୱତୀ, ଗିରି, ପୁରୀ, ଭାରତୀ, ଅରଣ୍ୟ, ତୀର୍ଥ, ଆଶ୍ରମ ମଧ୍ୟ ଅବସ୍ଥାପିତ ହେଲେ । ଏହା ହେଲା ମୋଟାମୋଟି ଭାରତରେ ଚଳି ଆସିଥିବା ଗୁରୁ ପରଂପରା ।

ଆମେ ଇତିହାସରୁ ଜାଣୁ ଯାଜପୁରର ବିରଜା କ୍ଷେତ୍ର ଦଶାଶ୍ୱମେଧ ଘାଟରେ ଉତ୍କଳ ନରପତି ଯଯାତିକେଶରୀ ଯେଉଁ ବିଶାଳ ଅଶ୍ୱମେଧ ଯଜ୍ଞର ଆୟୋଜନ କରିଥିଲେ ସେଥିରେ ପୁରୋହିତ କରିଥିଲେ ଉତ୍ତରର କନ୍ୟକୁବ୍ଜରୁ ଆସିଥିବା ବ୍ରାହ୍ମଣମାନେ ଓ ଦକ୍ଷିଣରୁ ଆସିଥିବା ବ୍ରାହ୍ମଣମାନେ । ଯେଉଁ ବ୍ରାହ୍ମଣମାନେ ଏଠାକୁ ଆସିଥିଲେ ପରବର୍ତ୍ତୀ କାଳରେ ଓଡ଼ିଶାର ଉର୍ବର ମାଟି ଦେଖି ନଦୀ ଅବବାହିକ ମାନ ଦେଖି ଉତ୍ତମ ଚାଷ ଜମି ପାଇ" ଏ ଭୂଖଣ୍ଡକୁ ଛାଡ଼ିଗଲେ ନାହିଁ ।



Digitized by PPRACHIN, SOA

ତେଣୁ ଓଡ଼ିଶାର ସମାଜ ଉଭୟ ଉତ୍ତର ଓ ଦକ୍ଷିଣର ବହୁ ପାଟକମାନଙ୍କ ଦ୍ୱାରା ପରିପୁଷ୍ଟ ହେଲା। ସେହିପରି ଉତ୍କଳ କ୍ଷେତ୍ରେ ଅବସ୍ଥାପିତ ଜଗନ୍ନାଥଙ୍କ ଯୋଗୁ ବହୁ ସାଧୁ ସନ୍ନ୍ୟାସୀ ଏଠାକୁ ଆସିଥିବାର ନଜର ରହିଛି। ଭଗବତ୍ ପାଦ ଶଂକର ଏଠାକୁ ଆସି ପାତାଳୀ ହୋଇ ରହିଥିବା ଜଗନ୍ନାଥଙ୍କୁ ଉଦ୍ଧାର କରି ପ୍ରତିଷ୍ଠା କରିଥିଲେ ଓ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଗାଉଥିଲେ କଦାଚିତ୍ କାଳିନ୍ଦୀ ତଟ ବିପୀନ ସଂଗୀତକରବୋ....... ଭଳି ଶ୍ରୀଜଗନ୍ନାଥାଷ୍ଟକମ୍। ଏସବୁ ସତ୍ତ୍ୱେ ଗବେଷକ ସୁଶାନ୍ତ କୁମାର ପଣ୍ଡା ପ୍ରଧାପକ ମହୋଦୟଙ୍କଠାରୁ ଶୁଣିଛି ଯେ ଏ ଭୂମିକୁ ଶଙ୍କର ଆସିବା ସଂବଂଧରେ ସୂଚନା ଗ୍ରନ୍ଥରେ ନାହିଁ। ସେ ବିଷୟ ପରେ କେବେ ଆଲୋଚନା କରିବା।

ବର୍ତ୍ତମାନ ଆସିବା ଆମ ଅଂଚଳର ଖଣ୍ଡିତରର ଭାରତୀ ମଠ ନିକଟକୁ। ଶଙ୍କରଙ୍କ ପ୍ରତିଷ୍ଠିତ ମଠ ଓ ସଂରକ୍ଷଣ ପାଇଁ ଏମାନେ ବିଭିନ୍ନ ପାର୍ଶ୍ୱକୁ ପାଦରେ ଚାଲି ଚାଲି ଆସୁଥିଲେ। ଏହି ଦଶନାମୀ ସନ୍ନ୍ୟାସୀମାନେ ବେଦରେ ନିର୍ଦ୍ଦେଶିତ ଦଶ କର୍ମରେ ଉପନୟନ ହୋଇ ମଠ ବିଧି ଅନୁସାରେ ଏକାଦଶ କର୍ମରେ ଯଜ୍ଞ ଉପବୀତକୁ ଭସ୍ମ କରିଦେଇ ସନ୍ନ୍ୟାସୀ ହୁଅନ୍ତି। ଦଣ୍ଡ ଓ କମଣ୍ଡଳୁ ଧାରଣ, ଏହାଙ୍କ ବିଶେଷତ୍ୱ ହୋଇଉଠେ।

ଅନୁମାନ କରାଯାଏ ଏହି 'ଭାରତୀ' ବିରୁଦାବଳୀ ଧାରଣ କରିଥିବା ସନ୍ନ୍ୟାସୀ ଦକ୍ଷିଣ ପଥରୁ ଆସି ଜଗନ୍ନାଥ ଦର୍ଶନ ପରେ ଏ ନଦୀ ଅବବାହିକାରେ ଅବସ୍ଥାପିତ ହୋଇଥିବେ। ଆମେ ଏଠାରେ ସର୍ବପ୍ରଥମ ମହନ୍ତ ସଦାଶିବ ଭାରତୀ ଗୋସ୍ୱାମୀଙ୍କୁ ଇତିହାସରୁ ଜାଣୁ। ଏ ମହୋଦୟ ପ୍ରାୟ ଷୋଡ଼ଶ ଶତାବ୍ଦୀରେ ଏଠାରେ ପଦାର୍ପଣ କରିଥିବାର ଅନୁମାନ କରାଯାଏ। ଶଂକର ଦଶନାମୀ ସନ୍ନ୍ୟାସୀଙ୍କୁ ଦଶଗୋଟି ଗୋଷ୍ଠୀରେ ବିଭକ୍ତ କରି ସମାଜରେ ଧର୍ମୀୟ ବାତାବରଣ ସୃଷ୍ଟି କରିବା ପାଇଁ ପ୍ରୟାସୀ ହୋଇଥିଲେ। ଆମ ଖଣ୍ଡିତରର ମଦନ ମୋହନ ମଠ ଦଶନାମୀ ସଂପ୍ରଦାୟର 'ଭାରତୀ' ସଂପ୍ରଦାୟର ଅନ୍ତର୍ଭୁକ୍ତ।

ଏ ମଠ କାହିଁ କେତେ କାଳର। ଜଗନ୍ନାଥ ସଡ଼କ କଡ଼ରେ ଥିବାରୁ ଉତ୍ତରରୁ ପାଦରେ ଚାଲି ଚାଲି ଆସୁଥିବା ତୀର୍ଥ ଯାତ୍ରୀ ତଥା ପରିବ୍ରାଜକମାନଙ୍କ ପାଇଁ ଏହା ଥିଲା ଏକ ବିଶ୍ରାମ କ୍ଷେତ୍ର। ଭାରତରେ ଶଙ୍କରଙ୍କ ପରବର୍ତ୍ତୀ ସମୟ



Digitized by PPRACHIN, SOA

ଥିଲା ବୌଦ୍ଧଧର୍ମ ପ୍ରାବଲ୍ୟର ସମୟ । ପରେ ବୌଦ୍ଧଧର୍ମ ବହୁ ଶାଖାରେ ବିଭକ୍ତ ହୋଇ ହିନ୍ଦୁ ଧର୍ମର ମୂର୍ତ୍ତିପୂଜାକୁ ଦୃଢ଼ ବିରୋଧ କଲା ସତ ମାତ୍ର ତନ୍ତ୍ର ମନ୍ତ୍ର ଇତ୍ୟାଦି ପ୍ରବେଶ କରାଇ ନାନା ବିରୋଧାଭାଷ ସୃଷ୍ଟି କରିଥିଲା । ମଠଗୁଡ଼ିକ ହିନ୍ଦୁ ଧର୍ମର ସଂସ୍କୃତିକୁ ରକ୍ଷା କରିବା ଦିଗରେ ବିଶେଷ କାର୍ଯ୍ୟ କଲେ । ଏତଦ୍ ବ୍ୟତୀତ ଶଂକର ମଧ୍ୟ କେତେକ ଆଖଡ଼ା ସୃଷ୍ଟି କରିଥିଲେ । ସେଠାରେ ରହୁଥିବା ସନ୍ନ୍ୟାସୀମାନେ ହିନ୍ଦୁଧର୍ମର ସନ୍ନ୍ୟାସୀମାନଙ୍କ ଉପରେ ହେଉଥିବା ବିଭିନ୍ନ ବୌଦ୍ଧ ସନ୍ନ୍ୟାସୀମାନଙ୍କର ଆକ୍ରମଣକୁ ପ୍ରତିହିତ କଲେ । ଆଖଡ଼ା ସଂଖ୍ୟା ସମୁଦାୟ ୧୩ । ସେଥିରୁ ଶୈବ ହେଉଛି ସାତୋଟି ଓ ବୈଷ୍ଣବ ଆଖଡ଼ା ହେଉଛି ଛଅଗୋଟି । ଏମାନଙ୍କ ମଧ୍ୟରେ ନିରଞ୍ଜନୀ ଆଖଡ଼ା ମୁଖ୍ୟ ଓ ସର୍ବପୁରାତନ । ଏମାନେ ଶଂକର ପନ୍ଥୀ ।

ଭାରତୀ ମଠ ଆମ ଅଂଚଳର ବହୁ ପୁରାତନ ମଠ ଓ ଏ ମଠ ହିନ୍ଦୁଧର୍ମର ରକ୍ଷା କବଚ ରୂପେ କାର୍ଯ୍ୟ କରି ଆସୁଛି । ଦିବଂଗତ ମହନ୍ତ ଶିଶିର ଭାରତୀ ଉଚ୍ଚଶିକ୍ଷିତ, ନମ୍ର ଓ ମହାପଣ୍ଡିତ ଥିଲେ । ମଠର ପୁନରୁଦ୍ଧାର କାର୍ଯ୍ୟ ସେ କରିଥିଲେ । ଏଇ ମହାପୁରୁଷଙ୍କ ଅବର୍ତ୍ତମାନରେ ଏ ଅଂଚଳ ବହୁ କିଛି ହରାଇଛି । ତାଙ୍କ ଆତ୍ମାର ସଦ୍‌ଗତି କାମନା ସହିତ ତାଂକୁ ବାରଂବାର ପ୍ରଣାମ କରୁଛି ।

*ବଳରାମପୁର, ତଳଗଡ଼, ଜେନାପୁର, ଯାଜପୁର*
*ମୋ.- ୯୯୩୭୩୪୯୧୦୫*

●●●





Digitized by PPRACHIN, SOA

# ଶିଶିର କୁମାର ଭାରତୀଙ୍କ ସ୍ମରଣାର୍ଥେ

ଶ୍ରୀ ଗଜେନ୍ଦ୍ର ବିହାରୀ ଦାଶ



ଶିଶିରବାବୁଙ୍କ ଜନ୍ମ ମଠ ମହନ୍ତ ପରିବାରରେ ମାର୍ଚ୍ଚ ୧୯୫୨ ମସିହା ଖଣ୍ଡିତର ଗ୍ରାମରେ ହୋଇଥିଲା । ସେ ସମୟରେ ମଠର ମହନ୍ତ ସ୍ୱର୍ଗତ ନବ କିଶୋର ଭାରତୀ ଥିଲେ । ତେଣୁ ସେ ସବୁଠାରୁ ପ୍ରିୟ ପାତ୍ର ଥିଲେ । ତାଙ୍କର ଶିକ୍ଷା ଦାୟିତ୍ୱ ସହିତ ଲାଳନ ପାଳନ ସବୁ ମହନ୍ତ ନେଇଥିଲେ । ସେ ଖଣ୍ଡିତରରୁ ମାଟ୍ରିକ ପାଶ କରିବା ପରେ ଉଚ୍ଚଶିକ୍ଷା ଯାଜପୁର ନୃସିଂହ ଚୌଧୁରୀ କଲେଜରେ ଅଧ୍ୟୟନ ସହିତ ଗ୍ରାଜୁଏସନ ପାଶ୍ କରିବା ପରେ ଶିକ୍ଷକତା କରିଥିଲେ । ସେ ଓ ମୁଁ ଏକ ଗ୍ରାମର ହୋଇଥିବାରୁ ଏବଂ ସମବୟସ୍କ ଯୋଗୁ ସମାନତା ଥିଲା । ପିଲାଦିନେ ମୋର ପିତୃ ବିୟୋଗ ଯୋଗୁ ହାଇସ୍କୁଲ ସ୍ତରରେ ଯାଜପୁର ଜିଲ୍ଲା ସ୍କୁଲ ପରେ (N.C. Collaege) ଯାଜପୁରରୁ ପାଶ୍ କଲାପରେ କିରାଣୀ ଚାକିରି କରି ବିଭିନ୍ନ ଆଡ଼େ ଯିବା ଯୋଗୁ ସଂପର୍କ ଟିକିଏ କମି ଯାଇଥିଲା । ମଠ ଆମ ବ୍ରାହ୍ମଣ ଶାସନ ୩୦୦ ବର୍ଷ ତଳେ ବସାଇଥିଲେ ଏବଂ ସମସ୍ତ କାର୍ଯ୍ୟରେ ମଠର ନିମନ୍ତ୍ରଣ କ୍ରମେ ଆମ୍ଭେମାନେ ସହଯୋଗ କରି ମଦନମୋହନଙ୍କ ସେବା କରିଥାଉ । ମଦନମୋହନଙ୍କ ଇଚ୍ଛାରେ ସେ ଗ୍ରାମ ପାଖ କୋଳଥଳ ହାଇସ୍କୁଲରୁ ପ୍ରଧାନ ଶିକ୍ଷକ ଦାୟିତ୍ୱ ତୁଲାଉଥିଲେ ।

୧୯୯୧ ମସିହାରେ ପୂର୍ବ ମହନ୍ତଙ୍କ ଦେହାନ୍ତ ପରେ ତାଙ୍କର ଲିଖିତ କାଗଜାତ ଯୋଗେ ଶିଶିର ବାବୁ ମହନ୍ତ ଦାୟିତ୍ୱ ଗ୍ରହଣ କଲେ । ମା' ଘାଟ ମଂଗଳା ମନ୍ଦିର, ଯଜ୍ଞେଶ୍ୱର, ବ୍ରହ୍ମେଶ୍ୱର ମହାଦେବ ଆଦି ଠାକୁରଙ୍କ ମାଫତଦାର



Digitized by PPRACHIN, SOA

ମହନ୍ତ ଅଟନ୍ତି। ଆମ ବ୍ରାହ୍ମଣ ଶାସନର ଶ୍ରୀ ରାଧାକୃଷ୍ଣ ଜୀଉ ହେଉଛନ୍ତି ମୂଳ ଠାକୁର, ତେଣୁ ମଠ ୧୯୫୨ ମସିହାରୁ ଜମିଦାରି ଉଚ୍ଛେଦ ପରେ ମଧ୍ୟ ଶାସନର ଠାକୁରଘର ସହିତ ବ୍ରାହ୍ମଣମାନଙ୍କ ବାସସ୍ଥାନର ଖଜଣା ମଠ ୧୯୯୫ ମସିହା ବନ୍ଦୋବସ୍ତ ପର୍ଯ୍ୟନ୍ତ ଦେବୋତ୍ତର ସଂସ୍ଥା ମାଧ୍ୟମରେ ଦେଉଥିଲେ। ଏଣୁ ରାଧାକୃଷ୍ଣ ଏବଂ ମଦନମୋହନ ମେଲଣର ସ୍ଥାନପତି ଅଟନ୍ତି ଏବଂ ମୋର ବଦଳି ଠାକୁରଙ୍କ ଦୟାରୁ ଜାରକା ଜଳସେଚନ ଅଫିସକୁ ୧୯୯୨ ମସିହାରେ ହୋଇଗଲା। ମୁଁ ପରିବାର ସହିତ ଗାଁ'ରେ ରହିବା ସହିତ ଗ୍ରାମବାସୀ ରାଧାକୃଷ୍ଣଙ୍କ ଦାୟିତ୍ୱ ବୁଝିବାକୁ ମୋତେ ଦେଲେ। ଏଣୁ ମେଲଣରେ ଶିଶିର ବାବୁଙ୍କ ସହିତ ମୁଁ ଅତି ଘନିଷ୍ଠ ହେଲି। ସେହିଦିନ ଠାରୁ ସେ ସବୁ ସମୟରେ ମୋର ପରାମର୍ଶ ନେଇ କାର୍ଯ୍ୟ କରୁଥିଲେ।

ମଠରେ ଦାୟିତ୍ୱ ସହିତ ଚାକିରିର କର୍ମ ଠିକ୍ ଭାବେ ସଂପାଦନ କରନ୍ତି। ମଂଗଳା ମନ୍ଦିର ୬୦୦ ବର୍ଷର ପୁରୁଣା ହୋଇଥିବାରୁ ତାହା ମଧ୍ୟରେ ବର୍ଷାଦିନେ ପାଣି ଜମି ରହୁଥିଲା। ଏଣୁ ତାହାକୁ ମୋର ପରାମର୍ଶ ପରେ ପୁରୁଣା ମନ୍ଦିର ଚାରିପାଖରେ ନୂଆ ମନ୍ଦିର କାର୍ଯ୍ୟ ଆରମ୍ଭ ହେଲା। ତାହା ସଂପୂର୍ଣ୍ଣ ହେବା ବେଳକୁ ୨୦୦୦ ମସିହା ହେଲା। କିନ୍ତୁ ମନ୍ଦିରର ମୁଖଶାଳା ହୋଇପାରିଲା ନାହିଁ; ଅର୍ଥର ଅଭାବ ମୁଖ୍ୟ କାରଣ। ଏଣୁ ମୁଁ ନିଜେ ଠାକୁରାଣୀଙ୍କ ନିକଟରେ ଚଣ୍ଡୀପାଠ କରିବା ସହିତ ପ୍ରାର୍ଥନା କଲି ତାହା କେମିତି ସଂପୂର୍ଣ୍ଣ ହେବ। ଆଗରୁ ଜଗନ୍ନାଥ ସଡ଼କ ଖଣ୍ଡିତର ଘାଟ ଦେଇ ଯାଉଥିବାରୁ ଠାକୁରାଣୀ ପ୍ରସିଦ୍ଧ ଅଟନ୍ତି। ଦୂରଦୂରାନ୍ତରୁ ଲୋକମାନେ ଆସୁଥିଲେ। ମଂଗଳା ଓଷା, ମେଲଣ ଏଠାରେ ହୁଏ। ୧୯୯୬ ମସିହା ବନ୍ଦୋବସ୍ତ ପରେ ମଠ ସଂପତ୍ତି ଖାଉଥିବା ଲୋକମାନେ ନିଜ ନାମରେ ପଟା ନେବାପରେ ଠାକୁର କାମ କରିବାକୁ ଆସିଲେ ନାହିଁ, ମଠ ଘୋର ସଂକଟରେ ପଡ଼ିଲା। ମୁଁ ସବୁବେଳେ ଠାକୁରାଣୀଙ୍କୁ ଡାକୁଥାଏ। ଠିକ୍ ୨୦୦୪ ମସିହାରେ ଠାକୁରାଣୀଙ୍କ ବଡ଼ସିଂହାର ବେଶ ପୋଡ଼ିଯିବା ଦ୍ୱାରା ଗ୍ରାମବାସୀ ବସି ବିଚାର କରି ପୁରୀ ମୁକ୍ତିମଣ୍ଡପ ଗଲୁ। ସେମାନେ କହିଲେ ପଥର ମୂର୍ତ୍ତି, ସେ ଆପଣମାନଙ୍କୁ ନିର୍ଦ୍ଦେଶ ଦେଉଛନ୍ତି ଯେ ତୁମେ ତାଙ୍କ ନିକଟରେ ବାର୍ଷିକ ଯଜ୍ଞ କର, ୧୨ ବର୍ଷ ମଧ୍ୟରେ ମନ୍ଦିର କାମ ସଂପୂର୍ଣ୍ଣ ହୋଇଯିବ। ଏଣୁ ସେହି କାମ ହେବା ପରେ ୩ ବର୍ଷ ପରେ ଯଜ୍ଞ ପଇସା ୧୫,୦୦୦ ବଳକା ହେବା ପରେ ଶିଶିରବାବୁ ମୋର



Digitized by PPRACHIN, SOA

ଏବଂ ଅନ୍ୟ ଦାତାମାନଙ୍କ ସହଯୋଗରେ କାମ ଠିକ୍ ଭାବରେ ଚାଲିଲା। ଠାକୁରାଣୀଙ୍କୁ ପଦାକୁ ଆଣି ବଡ଼ ଆକାରର ମନ୍ଦିର ବେଢ଼ା, ମୁଖଶାଳା ତିଆରି ହେଲା ତାହା। ୨୦୧୩ରେ ସଂପୂର୍ଣ୍ଣ ହେବା ପରେ ଠାକୁରାଣୀ ମନ୍ଦିର ଭିତର ସିଂହାସନ ତିଆରି କରିବାପରେ ଠାକୁରାଣୀ ୩୦/୦୫/୨୦୧୩ରେ ନୂତନ ମନ୍ଦିରକୁ ବିଜେ କଲେ। ଯଜ୍ଞମଣ୍ଡପ କାମ ଆରମ୍ଭ ହେଲା। ତାହା ୨୪ ଫୁଟର ୨୪ ଫୁଟ। ମଣ୍ଡପର ପିଣ୍ଡି କରିବା ପରେ ଯଜ୍ଞ ହୋଇ ଆସୁଥିଲା। ଶିଶିର ବାବୁ ମୋତେ ମଂଗଳା ଓଷା, ବାର୍ଷିକ ଯଜ୍ଞ, ହୁଣ୍ଡି ପଇସା ସମସ୍ତ ଦେଉଥିଲେ। ମୁଁ ଅନ୍ୟ ପିଲାମାନଙ୍କ ସାହାଯ୍ୟ ସହଯୋଗରେ ନିର୍ମାଣ କାମ କରି ଚାଲିଲି। ଯେଉଁମାନେ ମଠରୁ ସଂପତ୍ତି ଖାଉଥିଲେ କିଛି ଦେଉନଥିଲେ। ସେମାନଙ୍କଠାରୁ ଆଦାୟ କରିବା ସହିତ ମଠର ବଳକା ଶିଶିର ବାବୁଙ୍କ ଦରମାରୁ ସେ ମଠ କାମ କରି ମଦନମୋହନଙ୍କ ମନ୍ଦିର, ଗାଦୀ ପୀଠ, କଚେରି ଘର ଇତ୍ୟାଦି ପୁନଃନିର୍ମାଣ କାର୍ଯ୍ୟ ମଧ୍ୟ କରି ଚାଲିଲୁ। ଏଥିପାଇଁ ତାଙ୍କ ସହିତ ମୋର ଘନିଷ୍ଠତା ବଢ଼ିବା ଯୋଗୁ ମୁଁ ମଠର ପରାମର୍ଶ ଦାତା ଭାବେ ଗଣା ଗଲି। ଶିଶିର ବାବୁ ମୋତେ କହୁଥିଲେ ଗଜିଆନନା, ଯଜ୍ଞମଣ୍ଡପ କାମ କେମିତି ସଂପୂର୍ଣ୍ଣ ହେବ ତା'ର ଦାୟିତ୍ୱ ତୁମ୍ଭେ ନେବ।

କିନ୍ତୁ ମୁଁ କେବେ ଭାବି ନଥିଲି ସେ ଏପରି ଅବେଳରେ ଚାଲିଯିବେ। ସେ କାହାକୁ ଉତ୍ତରାଧିକାରୀ କରିଯାଇ ନାହାଁନ୍ତି। ସେ ଯେଉଁଳି ଭାବେ ଚାଲିଗଲେ ଯଦିଓ ମୋତେ ଦୁଃଖ ଦେଲା, କିନ୍ତୁ ଅନ୍ୟ ଦୃଷ୍ଟିରେ ସେ ଶୁଭ କର୍ମ କରିଥିବାରୁ ବିନା ସେବାରେ ୩ ଦିନ ମଧ୍ୟରେ ମେଡ଼ିକାଲରେ ଝୁଲଣ ପୂର୍ଣ୍ଣିମା (୨୦୨୨)ରେ ଆରପାରିକୁ ଚାଲିଗଲେ। ଏହା ମଧ୍ୟରେ ୬ ମାସ ମଧ୍ୟରେ ଯାହା ହେଉ ଯଜ୍ଞମଣ୍ଡପ କାମ ସଂପୂର୍ଣ୍ଣ କରିପାରିଛି। ତାହା ହିଁ ମୋ' ସନ୍ତୁଷ୍ଟି। ଶେଷରେ ମୋର ଈଶ୍ୱରଙ୍କ ପାଖରେ ପ୍ରାର୍ଥନା ତାଙ୍କର ପରବର୍ତ୍ତୀ ପଥକୁ ସୁଗମ କରନ୍ତୁ।

*ସାନତ୍ରିଲୋଚନପୁର (ଶାସନ)*
*ଖଣ୍ଡିତର, ତା- ୨୨/୦୫/୨୦୨୩*





Digitized by PPRACHIN, SOA

# ମଦନମୋହନ ମଠ



ଅକ୍ଷୟ କୁମାର ଜେନା

୨୦୧୯ରେ କୋଭିଡ୍ ଭାଇରସ୍ ଚାଇନାରୁ ବାହାରି ଆମେରିକାରେ ନରସଂହାର କରିବା ଖବର ଆମ ଦେଶରେ ମିଳୁଥାଏ। ଓଡ଼ିଶାରେ କଟକଣା ଲାଗିବାକୁ ଡେରି ଥାଏ। ସେତିକିବେଳେ ଧର୍ମଶାଳା ସାଂସ୍କୃତିକ ମଣ୍ଡଳରେ ବିଭିନ୍ନ ସ୍ଥାନ ବୁଲି ମଠ, ମନ୍ଦିର, ମସଜିଦ୍ ଆଦିର ସର୍ବେକ୍ଷଣ କରୁଥିଲୁ ଧର୍ମଶାଳା ସଂସ୍କୃତି ପରିଷଦ ତରଫରୁ। ସଂଗୃହୀତ ତଥ୍ୟ ଆଧାରରେ 'ଧର୍ମଶାଳାର ଐତିହ୍ୟ ଓ ସଂସ୍କୃତି' ନାମରେ ଦୁଇ ଗୋଟିଏ ପୁସ୍ତକ ପ୍ରକାଶ ପାଇଛି। ସେହି ସମୟରେ ମଦନମୋହନ ମଠ, କେଉଟ ଲଗୁଆଁ (ଖଣ୍ଡିତର)କୁ ମୋର ପ୍ରଥମ ଯିବା।

ଏହି ମଠଟି ଖରସ୍ରୋତା ନଦୀକୂଳରେ ଅବସ୍ଥିତ। ପାଖରେ ଅଛି ଘାଟ ଓ ପ୍ରସିଦ୍ଧ ଘାଟମଂଗଳା ପୀଠ। ମଠ ସ୍ଥାପିତ ହେବା ପୂର୍ବରୁ ଏହି ସ୍ଥାନରେ ନଦୀର ବିସ୍ତୀର୍ଣ୍ଣ ବାଲୁକା ଶଯ୍ୟାରେ ଏକ ଶ୍ମଶାନ ଥିଲା। ଗ୍ରାମଠାରୁ କିଂଚିତ୍ ଦୂରରେ ଥିବା ସ୍ଥାନଟି ଥିଲା ଏକାନ୍ତ ନିର୍ଜନ। ପ୍ରାୟ ୩୦୦ ବର୍ଷ ତଳେ ଏଠାକୁ ଆସିଥିଲେ ଶଙ୍କରଙ୍କ ଦଶନାମୀ ପଂଥାର ସନ୍ନ୍ୟାସୀ ସଦାଶିବ ଭାରତୀ ଗୋସ୍ୱାମୀ। ସେ ଥିଲେ ତନ୍ତ୍ର ସାଧକ। ସ୍ଥାନଟି ତାଙ୍କୁ ତନ୍ତ୍ର ସାଧନା ପାଇଁ ଉପଯୁକ୍ତ ହେବ ବୋଲି ଆକୃଷ୍ଟ କଲା। ସେ ଏଇଠି ମଠ ପ୍ରତିଷ୍ଠା କଲେ। ସେ ହିଁ ପ୍ରଥମ ମହନ୍ତ। ଆ' ଭିତରେ ଦଶ ପିଢ଼ି ଗଲେଣି। ଦଶନାମ ଭିତରୁ ଏ ମଠର ମହନ୍ତମାନେ ପୁରୁଷାନୁକ୍ରମେ 'ଭାରତୀ' ନାମ ଗ୍ରହଣ କରିଆନ୍ତି। କ୍ରମେ ମଠର ଖ୍ୟାତି ବଢ଼ିଲା। କେନ୍ଦୁଝର ରାଜା, ଗଡ଼ମଧୁପୁର ରାଜା ଇତ୍ୟାଦି ଏହି ମଠକୁ ଜମିଦାନ କରିଥିଲେ। ଏହା ଏକ ଧନୀ ମଠରେ ପରିଣତ ହୋଇଥିଲା, ଯଦିଓ ବର୍ତ୍ତମାନ ସ୍ଥିତି ବିପରୀତ ଅଟେ।



Digitized by PPRACHIN, SOA

ମଠ ଭିତରକୁ ପ୍ରବେଶ କଲାବେଳେ ମଠର ଆର୍ଥିକ ସ୍ଥିତି ଭଲ ଥିବା ଜଣାଗଲା ନାହିଁ। ଭିତରେ ଅଛି ରହିବା ଘର, ପ୍ରଥମ ମହନ୍ତଙ୍କର ସମାଧି ମନ୍ଦିର, ଅନ୍ୟ ମହନ୍ତମାନଙ୍କର ସମାଧି। ଗୋଟିଏ ପକ୍କାଘରେ ମଦନ ମୋହନ ପୂଜା ପାଉଛନ୍ତି। ମହନ୍ତ ମହାରାଜ ଶିଶିର ଭାରତୀଙ୍କ ସାଥିରେ ଦେଖା ହେଲା। ମୋଟାଳିଆ ମଣିଷ। କ୍ଷେତ୍ରପାଳ ହାଇସ୍କୁଲ ପ୍ରଧାନ ଶିକ୍ଷକ ପଦରୁ ଅବସର ନେଇଥାନ୍ତି। ଆମ ସହିତ ସ୍ୱଚ୍ଛନ୍ଦରେ ଗପିଲେ। ମଠ ସଂବନ୍ଧରେ ଅନେକ କଥା ପ୍ରସଂଗ କ୍ରମେ ଜଣାଇଲେ। ଶିଶିର ଭାରତୀ ଥିଲେ ଗାଦିର ଦଶମ ମହନ୍ତ। ବେଶ୍ ଅମାୟିକ ଲୋକ ବୋଲି ମନେ ହେଲେ। ତାଙ୍କ କହିବା ଅନୁସାରେ ଏଠାକାର ଚତୁର୍ଥ ମହନ୍ତ କଣ୍ଟିଆକୂଳ ଶାସନ ବସାଇଥିଲେ। ୯ମ ମହନ୍ତ ନବକିଶୋର ଭାରତୀ ଜଣେ କଳାକାର ଥିଲେ ଓ ଗ୍ରାମରେ ହାଇସ୍କୁଲ ଗଢ଼ିବାରେ ତାଙ୍କର ବଡ଼ ଭୂମିକା ଥିଲା। ଶିଶିର ଭାରତୀଙ୍କ ସଂବନ୍ଧରେ ଯାହା ଅନ୍ୟମାନଙ୍କଠାରୁ ଜାଣିଲି ସେ ଘାଟମଂଗଳା ପୀଠ ଓ ନଦୀକୂଳରେ ଶିବାଳୟର ଉନ୍ନତି ପାଇଁ ସଚେଷ୍ଟ ଥିଲେ। ମଠର ପୂଜା ପାର୍ବଣ ରୀତି ନୀତି ସମ୍ବନ୍ଧରେ କହିଲେ ପରମ୍ପରା ରକ୍ଷା କରି ଯେମିତି ସେମିତି ଚାଲିଛି। ତାଙ୍କର ଦୁଃଖ, ଯେମିତି ଚାହୁଁଛନ୍ତି ମଠର ସେମିତି ଉନ୍ନତି କରିପାରୁନାହାଁନ୍ତି ଅର୍ଥର ବାଧକତା ଯୋଗୁ।

ଆମେ ଠାକୁରଙ୍କୁ ଦର୍ଶନ କରିବାକୁ ଇଚ୍ଛା କରିବାରୁ ପୂଜାରୀକୁ ଡକାଇ ପଠାଇଲେ। ଠାକୁର ଦର୍ଶନ ହେଲା। ସିଂହାସନ ଉପରେ ମଦନମୋହନ ବିରାଜିତ। ସାଂଗରେ ଆଣ୍ଠୁଆ ଗୋପାଳ ଓ କେଇ ମୂର୍ତ୍ତି ଶାଳଗ୍ରାମ, ରାଧା କୃଷ୍ଣ। ମଦନ ମୋହନ ପଥର ନିର୍ମିତ ବିଷ୍ଣୁ- କୃଷ୍ଣ ମୂର୍ତ୍ତି। ଏ ମୂର୍ତ୍ତି ପୁରାତନ, ଷଡ଼ଭୁଜ ବିଶିଷ୍ଟ। ଦୁଇ ହାତରେ ମୂରଲୀ, ଅନ୍ୟ ହାତଗୁଡ଼ିକରେ ଶଂଖ, ଚକ୍ର, ଗଦା, ପଦ୍ମ। ପୂର୍ବରୁ ଚାରି ହାତିଆ ବିଷ୍ଣୁକୃଷ୍ଣ ମୂର୍ତ୍ତି ମିଳିଥିଲା। ଧର୍ମଶାଳା ଅଂଚଳରୁ ସଂଗୃହୀତ ହୋଇ ଏକ ଚାରିହାତିଆ ବିଷ୍ଣୁକୃଷ୍ଣ ମୂର୍ତ୍ତି ରାଜ୍ୟ ସଂଗ୍ରାହାଳୟ, ଭୁବନେଶ୍ୱରରେ ରଖାଯାଇଛି। ମାତ୍ର ଛ' ହାତିଆ ବିଷ୍ଣୁ କୃଷ୍ଣ ମୂର୍ତ୍ତି ଅନ୍ୟ କେଉଁଠି ଥିବା ଜଣା ନାହିଁ। ସିଂହାସନରେ ବିରାଜିତ ଧାତୁ ନିର୍ମିତ ରାଧା କୃଷ୍ଣ ମୂର୍ତ୍ତି ପ୍ରଥମରୁ ଏଠାରେ ନଥିଲେ। ମେଲଣ, ଝୁଲଣ ପ୍ରଭୃତି ପର୍ବରେ ଭାଗ ନେବା ପାଇଁ ଏ ଭଳି ବ୍ୟବସ୍ଥା କରାଗଲା। ଶିଶିର ଭାରତୀ କହିଲେ, ୧୮୪୦ ମସିହାରେ ଷଷ୍ଠ ମହନ୍ତ ବୃନ୍ଦାବନ ଭାରତୀ ଏ ମୂର୍ତ୍ତି ବୃନ୍ଦାବନରୁ ଆଣି ଏଠାରେ ପ୍ରତିଷ୍ଠା କଲେ। ପ୍ରସିଦ୍ଧ ଖଣ୍ଡିତର



Digitized by PPRACHIN, SOA

ମେଲଣର ଥାନପତି ହେଉଛନ୍ତି ଏହି ରାଧାରାଣୀ ଓ କୃଷ୍ଣଚନ୍ଦ୍ର । ଏଠାରେ ଦେଖିଲୁ ଯେ ଏକ ଶାଳଗ୍ରାମ ମୂର୍ତ୍ତି ସ୍ୱତନ୍ତ୍ର ଭାବରେ ଏକ ଖଟୁଲିରେ ରହି ରଘୁନାଥ ରୂପରେ ପୂଜା ପାଉଛନ୍ତି । ମଠରେ ଝୁଲଣ ଟିକେ ବଡ଼ ଆକାରରେ ପାଳିତ ହୁଏ । ଫେରିବାବେଳେ ମହନ୍ତ କହିଲେ ଯେ ଭାଗଚାଷୀମାନେ ନିୟମିତ ଓ ଠିକ୍ ପରିମାଣରେ ଭାଗ ଦେଉନଥିବାରୁ ମଠର ଉନ୍ନତି ହେଉ ନାହିଁ । ମଠର ଉନ୍ନତି ଯେ ସେ ଆନ୍ତରିକ ଭାବରେ ଚାହୁଁଛନ୍ତି ତାହା ମନେ ହେଲା ।

ମଠର ପ୍ରମୁଖ ପର୍ବ ଝୁଲଣରେ ତାଙ୍କ ଦେହ ଖରାପ ହେଲା, ସମାନ୍ୟ ଟିକିଏ କ'ଣ ହୋଇଛି ଭାବି କଟକର ପ୍ରାଇଭେଟ୍ ହସ୍ପିଟାଲ୍‌ରେ ରହିଲେ ଏବଂ ଦୁଇଦିନପରେ ତାଙ୍କ ମରଶରୀର ଗାଆଁକୁ ଫେରିଲା ।

ଜାରକା





Digitized by PPRACHIN, SOA

# ଅନୁଜ ପ୍ରତିମ ଶିଶିର ବାବୁଙ୍କ ସ୍ମରଣେ

କୈଳାସ ଚନ୍ଦ୍ର ନାୟକ

ଶ୍ରଦ୍ଧାର ନାମ ଶିଶିରବାବୁ। ଶିଶିର କୁମାର ଭାରତୀ, ଖଣ୍ଡିତର, ମୋର ଅନୁଜ ପ୍ରତିମ। ଏକ ମର୍ଯ୍ୟାଦାବନ୍ତ- ଖ୍ୟାତିସଂପନ୍ନ ପରିବାରରେ ତାଙ୍କର ଜନ୍ମ। ଖଣ୍ଡିତର ଗାଁ'ର ଦୁଇଟି ମୁଖ୍ୟ ଆଧ୍ୟାତ୍ମିକ ପୀଠ, ଗୋଟିଏ ଘାଟକୂଳ ମାଆ ମଂଗଳାଙ୍କ ବିଜେସ୍ଥଳୀ। ଅନ୍ୟଟି ମଠ, ମଦନ ମୋହନ ଜୀଉଙ୍କ ଆରାଧନା ପୀଠ। ମଠର ମହନ୍ତ ଶ୍ରୀଯୁକ୍ତ ନବକିଶୋର ଭାରତୀ ଗୋସ୍ୱାମୀ। ଆମ ଅଂଚଳର ଜଣେ ଋଷି ପ୍ରତିମ ଦେବତୁଲ୍ୟ ବ୍ୟକ୍ତିତ୍ୱ। ତାଙ୍କର ଅନୁଜ ସ୍ୱର୍ଗତ ନିତ୍ୟାନନ୍ଦ ଭାରତୀ ଜଣେ ଆଦର୍ଶ, ସଚ୍ଚରିତ୍ର ସମାଜ ସେବୀ। ସେ ସମୟରେ ସେ ଅଖଣ୍ଡ ରସୁଲପୁର ଗ୍ରାମ ପଞ୍ଚାୟତର ସରପଞ୍ଚ ଥାଇ ବହୁ ଜନହିତକର କାର୍ଯ୍ୟ କରି ସୁନାମ ଅର୍ଜନ କରିଥିଲେ। ତାଙ୍କର ଜ୍ୟେଷ୍ଠ ପୁତ୍ର ହେଉଛନ୍ତି ଶିଶିର ବାବୁ।

ଶିଶିର ବାବୁ ଜଣେ ମେଧାବୀ ଛାତ୍ର ଥିଲେ। ରାଜନୀତି ବିଜ୍ଞାନରେ ଅନର୍ସ ଥାଇ ବି.ଏ. ପାଶ୍ କରି ଘରେ ଥାଆନ୍ତି। ମଧୁବନ ହାଇସ୍କୁଲ ଶିକ୍ଷକ ନିଯୁକ୍ତି ସାକ୍ଷାତକାରରେ ଯୋଗ୍ୟ ରୂପେ ସ୍ଥିରୀକୃତ ହୋଇ ଯୋଗଦାନ ଦିନ ମତେ ଆସି ଶ୍ରେଣୀ କକ୍ଷରେ ସାକ୍ଷାତ୍ କରନ୍ତି। ପୂର୍ବରୁ ତାଙ୍କୁ ମୁଁ ଜାଣିଥାଏ ଏବଂ ନିଯୁକ୍ତି ପାଇଥିବା ମଧ୍ୟ ଜଣାଥିଲା। ସାକ୍ଷାତ୍ ସମୟରେ ସେ ପରମାନନ୍ଦବାବୁ ମତେ ପ୍ରଥମେ ଦେଖା କରିବାକୁ କହିଛନ୍ତି ସୂଚନା ଦେଲେ। ପରମାନନ୍ଦ ବାବୁ, ସ୍ୱର୍ଗତ ପରମାନନ୍ଦ ମହାନ୍ତି ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ଧର୍ମଶାଳାର ପୂର୍ବତନ ବିଧାୟକ ଆମ ମଧୁବନ ହାଇସ୍କୁଲ ପରିଚାଳନା କମିଟର ସଭାପତି ଥାଆନ୍ତି। ସ୍ୱର୍ଗତ ମହାନ୍ତିଙ୍କ ଜୀବନାଦର୍ଶରେ ମୋ' ପରି ବହୁ ଯୁବକ ଅନୁପ୍ରାଣିତ କେବଳ ନୁହେଁ



Digitized by PPRACHIN, SOA

ତାଙ୍କ ପରିବାରର ଅନ୍ୟତମ ସଦସ୍ୟ ବୋଲି ମନେ କରିଥିଲୁ। ତାଙ୍କର ମଧ୍ୟ ଆମ ଉପରେ ଅତୁଟ ବିଶ୍ୱାସ, ଭରସା ଥାଏ। ଶିଶିର ବାବୁ ମତେ ତାଙ୍କ ଜଏନିଂ ପତ୍ରଟି ଦେଖାଇଲେ, ସାମାନ୍ୟ ସଂଶୋଧନ ପରେ ଆମ୍ଭେ ଉଭୟ ପ୍ରଧାନ ଶିକ୍ଷକଙ୍କୁ ସାକ୍ଷାତ କଲୁ। ଶିଶିର ବାବୁ ସହକାରୀ ଶିକ୍ଷକ ଭାବରେ ଯୋଗଦେଲେ।

ଶିଶିରବାବୁଙ୍କ ନିଯୁକ୍ତି ପତ୍ରଟି ବର୍ଷକ ପାଇଁ ଥିଲା ତାଙ୍କ ଶିକ୍ଷାଦାନ। କର୍ତ୍ତବ୍ୟ ପରାୟଣତା, ଜଣେ ଆଦର୍ଶ ଛାତ୍ରବତ୍ସଳ ଶିକ୍ଷକ ଭାବେ ସେ ସମସ୍ତଙ୍କ ପ୍ରିୟଭାଜକ ଥିଲେ। ତାଙ୍କ ଚରିତ୍ରର ବିଶେଷତ୍ୱ ଥିଲା, ଯାହା ସେ ଉଚିତ୍, କରଣୀୟ ନ୍ୟାୟ ସଂଗତ ବୋଲି ବିବେଚନା କରୁଥିଲେ ସେଥିରେ ସେ ମେରୁ ପରି ଅଟଳ ରହୁଥିଲେ। ଯିଏ ଯାହା ଭାବନ୍ତୁ ପଛକେ ସେଥିପ୍ରତି ଭ୍ରୂକ୍ଷେପ ନଥିଲା। ମୋର ମନେ ହୁଏ ଏପରି କୌଣସି କଥା ନାହିଁ ଯେଉଁ କଥାଟି ମତେ ନ ପଚାରିଛନ୍ତି। ମୋର ସେ ଜଣେ ଅନୁଗାମୀ କନିଷ୍ଠ ଭାତ୍ରା ଭାବେ ତାଙ୍କୁ ମୁଁ ଗ୍ରହଣ କରିନେଇଥିଲି। ମୋର ମନେପଡ଼େ ତତ୍‌କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ସ୍ୱର୍ଗତା ନନ୍ଦିନୀ ଶତପଥୀ ରସୁଲପୁର ବ୍ଲକ୍ ସମ୍ମୁଖରେ ଏକ ସଭା କରୁଥାନ୍ତି। ମୋ' ସ୍କୁଲର ସମସ୍ତ ଛାତ୍ରଛାତ୍ରୀ- ଶିକ୍ଷକ, ଶିକ୍ଷା କର୍ମଚାରୀ ସେଠାକୁ ଯିବାର କଥା ହେଲା- ସମସ୍ତେ ମଧ୍ୟ ଗଲେ। ଧର୍ମଶାଳାର ପୂର୍ବତନ ବିଧାୟକ, ପରିବେଶବିତ୍ ସ୍ୱର୍ଗତ ବାଙ୍କ ବିହାରୀ ଦାସଙ୍କ ସହିତ ନନ୍ଦିନୀ ଦେବୀଙ୍କର ରାଜନୈତିକ ବୈରଭାବ ଥିଲା। ମୁଁ ଯେହେତୁ ବାଙ୍କ ବାବୁଙ୍କ ଜୀବନାଦର୍ଶରେ ଅନୁପ୍ରାଣିତ ସେ ରାଜନୈତିକ ସଭା ଯିବାକୁ ରୋକଠୋକ୍ ମନା କଲି। ଆଶ୍ଚର୍ଯ୍ୟ ହେଲି ଶିଶିର ବାବୁ ନୂଆ ଜଏନିଂ କରିଥିଲେ ବି ମୋ' ସହିତ ସଭାକୁ ନଯାଇ ରହିଲେ- ଆମ୍ଭେ ଦୁହେଁ କମନ୍ ରୁମ୍‌ରେ ସ୍କୁଲ ସରିବା ପର୍ଯ୍ୟନ୍ତ ବସି ରହିଲୁ। ସେଦିନ ଭାବିଲି ଶିଶିର ବାବୁ ସତରେ କେତେ ଦୃଢ଼!

ବି.ଇଡ଼ି ପରେ ପଡ଼ିଶା କ୍ଷେତ୍ରପାଳ ହାଇସ୍କୁଲ, କୋଳଥଳ ନୂତନ କରି ଗଢ଼ିଉଠୁଥିବା ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଭାବରେ ଯୋଗ ଦେଲେ ସେ। ପରିଚାଳନା ସମିତିର ଭଲ- ମନ୍ଦ ଉଭୟକୁ ଧୈର୍ଯ୍ୟର ସହ ସମ୍ମୁଖୀନ ହୋଇ ବେଶ୍ ତିନି ଦଶନ୍ଧି ଧରି ଜଣେ ଅଭିଜ୍ଞ ପ୍ରଧାନ ଶିକ୍ଷକର ମର୍ଯ୍ୟଦା ଲାଭ କରିଥିଲେ। ମୋ' ପାଖରୁ ଦୂରେଇ ଯାଇଥିଲେ ବି ସଂପର୍କରେ କୌଣସି ଶିଥିଳତା ଆସି ନଥିଲା। ଖଣ୍ଡେ ଦୂରରୁ ହାତ ଯୋଡ଼ି ଦିଅନ୍ତି। ସରଳ, ନିଷ୍କପଟ ହୃଦୟର ସେହି



Digitized by PPRACHIN, SOA

ସ୍ନେହବୋଳା ହସ ଟିକକରେ ମୁଁ ବିମୁଗ୍ଧ ହୁଏ। ମଧୁବନରେ ଥିବା ସମୟରେ ଆମ୍ଭେ ସ୍କୁଲ ପିଲା ଓ ଶିକ୍ଷକମାନେ ମିଶି 'ବେଣୀ ବନ୍ଧନ' ନାଟକ ମଞ୍ଚସ୍ଥ କଲୁ। ଶିଶିର ବାବୁ ଭୀମ ଭୂମିକାରେ ଆଉ ମୁଁ ଶ୍ରୀକୃଷ୍ଣ- କଟକ ରୂପ ମନ୍ଦିର ଚିତ୍ରାଳୟ। ଶିଶିର ବାବୁଙ୍କ ମୁଣ୍ଡରେ ମୁକୁଟ, କାନ୍ଧରେ ଗଦା- ଖୋଲା ଦେହରେ ବିଭିନ୍ନ ରାଜକୀୟ ପୋଷାକ- ସତରେ ଏ କ'ଣ ଦ୍ୱାପର ଯୁଗର ସୂର୍ଯ୍ୟସମ କାନ୍ତିରେ ଝଲସୁ ଥିବା ଦ୍ୱିତୀୟ ପାଣ୍ଡବ ! ସେ ଦୃଶ୍ୟ ଏବେ ବି ଆଖି ଆଗରେ ନାଚି ଯାଏ। ସେତେବେଳେ ମୋବାଇଲ ନଥିଲା- ନ ହେଲେ ସେ ଦୃଶ୍ୟ- କୃଷ୍ଣ ଭୀମଙ୍କ ସିନ୍‌ର ଦୃଶ୍ୟ- ଧରି ରଖାଯାଇ ପାରିଥାନ୍ତା। ଥିଲେ ଅନ୍ୟଙ୍କୁ ତଥା ଆମ୍ଭ ଦୁହିଁଙ୍କ- ପିଲା- ପିଲି- ଆତ୍ମୀୟ ସ୍ୱଜନ ଏ ପରିଣତ ବୟସରେ ଓ ଶିଶିର ବାବୁଙ୍କ ଅବର୍ତ୍ତମାନରେ କେତେ ଆମୋଦିତ ହୋଇନଥାନ୍ତେ ସତେ ? ଶେଷରେ ନିଜର ସ୍କୁଲ ଖଣ୍ଡିତର ହାଇସ୍କୁଲରୁ ପ୍ରଧାନଶିକ୍ଷକ ଭାବେ ଅବସର ଗ୍ରହଣ କରିଥିଲେ।

ଅପରିଣତ ବୟସରେ ହଠାତ୍ ଚାଲିଗଲେ ସେ। ବିନା ମେଘରେ ବଜ୍ରପାତ- ଆବାକ୍ ହେଲି। ଏ ଦୁଃସମ୍ବାଦ ଗଭୀର ଭାବରେ ମତେ ଆଘାତ ଦେଲା। ଶ୍ରଦ୍ଧେୟ ଛାତ୍ର ପ୍ରଦୀପକୁ ଧରି ଧାଇଁଲି ତାଙ୍କର ଶେଷ ଦର୍ଶନ ପାଇଁ। ମଠ ଅଗଣାରେ- ଶୁଆଇ ଦେଇଛନ୍ତି ତାଙ୍କୁ- ପ୍ରଭୁ ମଦନମୋହନ ଜୀଉଙ୍କ ସାମ୍‌ନାରେ। ମନେହେଲା ଐରାବତ ହସ୍ତୀ କ୍ଳାନ୍ତଶ୍ରାନ୍ତ ହୋଇ ଶୋଇ ପଡ଼ିଛି କି ? ୧୯୯୨ ରେ ମଠର ମହନ୍ତ ଭାବେ ଅଭିଷେକ ହୋଇଥିଲେ ସେ। ଯଦିଓ ବିବାହିତ- ମାତ୍ର ନିଃସନ୍ତାନ। ଏ କୁଆଡ଼େ ମଠର ପରଂପରା। ମନ୍ଦିର ପରିସର ମଧ୍ୟରେ ଯେଉଁଠି ପୂର୍ବ ମହନ୍ତମାନେ ସମାଧିସ୍ଥ ହୋଇଛନ୍ତି ସେଠାରେ ମହନ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ ମହାରାଜଙ୍କୁ ସମାଧି ଦେବାର ସମସ୍ତ ଆୟୋଜନ ଚାଲିଥାଏ। ମଠାଧୀଶ ପ୍ରଭୁ ମଦନମୋହନ ଜୀଉଙ୍କୁ ହାତଯୋଡ଼ି ଅଶ୍ରୁଳ ନୟନରେ ଗୁହାରୀ ଜଣାଇଲି- ହେ ପ୍ରଭୁ ! ତୁମ୍ଭର ଚରଣାଶ୍ରିତ, ତୁମର ସେବା- ପୂଜା ଯାହାଙ୍କର ଦୈନନ୍ଦିନ ପରମ କର୍ତ୍ତବ୍ୟ ଥିଲା ସେହି ଅକିଞ୍ଚନଙ୍କୁ ପାଦ ପଦ୍ମରେ ସ୍ଥାନ ଦିଅ- ତାଙ୍କର ନିର୍ବାଣ ପ୍ରାପ୍ତି ହେଉ।

*ମିର୍ଜାପୁର, ମଧୁବନ*





Digitized by PPRACHIN, SOA

# ଖଣ୍ଡିତର ମଠ ଓ ମହନ୍ତ ଶିଶିର କୁମାର



ବାମଦେବ ପାଢ଼ୀ

ସମଗ୍ର ହିନ୍ଦୁ ସମାଜରେ ମଠ ଏକ ମହତ୍ୱପୂର୍ଣ୍ଣ ଅନୁଷ୍ଠାନ ରୂପେ ଦିନେ ଗଢ଼ି ଉଠିଥିଲା। ମଠ କେବଳ ଆଧ୍ୟାତ୍ମିକ ଦିଗ୍‌ଦର୍ଶନର କେନ୍ଦ୍ର ନଥିଲା, ମଠ ଥିଲା ସକଳ ଧର୍ମଭିତ୍ତିକ ଲୋକାଚାରର ଯଥାର୍ଥ ନୀୟନ୍ତକ। ସାମାଜିକ ଶିକ୍ଷାର ଆଦର୍ଶ ଅନୁଷ୍ଠାନ। ସେଇଥିପାଇଁ ହିନ୍ଦୁଧର୍ମର ସଂପ୍ରଦାୟ ନିଜ ନିଜର ଧର୍ମୀୟ କେନ୍ଦ୍ରସ୍ଥଳ ରୂପେ ମଠ ସବୁ ପ୍ରତିଷ୍ଠା କରିଥିଲେ। ଅଦ୍ୱୈତ ପନ୍ଥୀ ଆଚାର୍ଯ୍ୟ ଶଙ୍କରଙ୍କଠାରୁ ବିଶିଷ୍ଟ- ଅଦ୍ୱୈତବାଦୀ ରାମାନୁଜାଚାର୍ଯ୍ୟ ଏବଂ ଦ୍ୱୈତବାଦୀ ନିମ୍ବାର୍କ ଓ ବଲ୍ଲଭଙ୍କଠାରୁ ଅଚିନ୍ତ୍ୟ ଭେଦାଭେଦର ଚୈତନ୍ୟ ପନ୍ଥୀ ଏବଂ ପିଣ୍ଡ ବ୍ରହ୍ମାଣ୍ଡବାଦୀ ଓଡ଼ିଶୀ ବୈଷ୍ଣବ ସଂପ୍ରଦାୟ ଯାଏ ପ୍ରତ୍ୟେକ ଗୋଷ୍ଠୀନିତ ନିଜର ମଠ ସବୁ ପ୍ରତିଷ୍ଠା କରିଥିଲେ। ଆଜି ମଠର ପରଂପରା ଅବଶ୍ୟ ରହିଛି, ମାତ୍ର ଅତୀତର ସେହି ଗୌରବମୟ ଅବସ୍ଥାନ ନାହିଁ। ଇତିହାସର ଗଡ଼ାଳିକା ପ୍ରବାହରେ ମଠ ସବୁ ବଂଚିଛନ୍ତି ଏକ କ୍ରମକ୍ଷୟଶୀଳ ପରଂପରାର ଉତ୍ତରାଧିକାର ମାତ୍ର ପ୍ରକାଶକ ହୋଇ। ଅତୀତର ସ୍ମୃତି ଓ ପରଂପରାର ବିନମ୍ର ସାକ୍ଷୀଟିଏ ହୋଇ ରହିଛନ୍ତି। ମଠରେ ସଂପୃକ୍ତ ସଂପ୍ରଦାୟର ଦେବତାଙ୍କ ଆରାଧନା ହୁଏ। ଧର୍ମୀୟ ଉତ୍ସବର ପରିପାଳନ ହୁଏ। ଧର୍ମ ଗ୍ରନ୍ଥ ଓ ପୁରାଣର ଆଲୋଚନା ହୁଏ। ଅତିଥିଙ୍କ ଅଭ୍ୟର୍ଥନା ହୁଏ। ମଠ ଅନୁଷ୍ଠାନର ମୁଖ୍ୟ ପରିଚାଳକ ଲୋକମୁଖରେ ମହନ୍ତ ଭାବରେ ସଂବୋଧିତ ହୁଅନ୍ତି। ମହନ୍ତ ଶବ୍ଦ ସାରା ହିନ୍ଦୁ ସମାଜରେ ଏକ ସମ୍ମାନିତ ଶବ୍ଦ, ଏକ ସମ୍ମାନିତ ସଂବୋଧନ। ଆଜି ପରଂପରାର ଏକ ସଂକୀର୍ଣ୍ଣ ସୋପାନରେ ମଠ ଅନୁଷ୍ଠାନ ଉପନୀତ ହେଲେ ମଧ୍ୟ, ସେ ସବୁ ଅନୁଷ୍ଠାନ ବଂଚିଛନ୍ତି, ଅଛନ୍ତି ତା'ର ମହନ୍ତମାନେ।



Digitized by PPRACHIN, SOA

ତେବେ ମଠ ପରି ଏକ ଗୁରୁତ୍ୱପୂର୍ଣ୍ଣ ଧାର୍ମିକ ଅନୁଷ୍ଠାନର ଆରମ୍ଭ କେବେ ଘଟିଥିଲା ଇତିହାସ ପାଖରେ ତା'ର ଯଥାର୍ଥ ଉତ୍ତର ନାହିଁ। ଆମର ଗବେଷଣା ମଠ ପ୍ରତିଷ୍ଠାର ଆଦିମ ଅଧ୍ୟାୟକୁ ଆଜି ବି ବିସ୍ମୃତି ତଳୁ ଆବିଷ୍କାର କରିବାକୁ ସମର୍ଥ ହୋଇ ନାହିଁ। ଅନେକ ଏହାକୁ ବୈଦିକ ଧର୍ମ ସହିତ ସଂଯୁକ୍ତ କରନ୍ତି। ମାତ୍ର ତାହା ଯୁକ୍ତିଯୁକ୍ତ ମନେହୁଏ ନାହିଁ। ବୈଦିକ ସମାଜରେ ଲୋକଧର୍ମ ଓ ଆଧ୍ୟାତ୍ମିକତାର ଦିଗ୍‌ଦର୍ଶକମାନେ ଋଷି ନାମରେ ପରିଚିତ ହେଉଥିଲେ। ଋଷିମାନଙ୍କ ଆଶ୍ରୟସ୍ଥଳକୁ ମଠ କୁହାଯାଉନଥିଲା, କୁହାଯାଉଥିଲା ଆଶ୍ରମ। ବଶିଷ୍ଠ, ବିଶ୍ୱାମିତ୍ର, ବାମଦେବ ପ୍ରଭୃତି ବୈଦିକ ଋଷିଗଣ ମଠର ମହନ୍ତ ନଥିଲେ, ସେମାନେ ଥିଲେ ଆଶ୍ରମ ନିବାସୀ ଋଷି। ପ୍ରାଚୀନ ଜୈନ ସମାଜରେ ଧର୍ମୀୟ ଅଗ୍ରପୁରୁଷମାନଙ୍କୁ ମୁନୀ ବୋଲି କୁହାଯାଉଥିଲା। ଏହି ଜୈନ ମୁନୀମାନେ ମଠରେ ବାସ କରୁନଥିଲେ। ଆମ ପୌରାଣିକ କର୍ଣ୍ଣମୁନୀ ଆଶ୍ରମରେ ବାସ କରୁଥିଲେ। ପୁରାଣ ସାହିତ୍ୟର ବ୍ୟାସମୁନୀ, ଶୁକମୁନୀ ଓ ସୌନକ ମୁନୀ ପ୍ରଭୃତି ଥିଲେ ଆଶ୍ରମ ନିବାସୀ। ସେହିପରି ପୌରାଣିକ ଋଷି ପରାସର ଅଗସ୍ତ୍ୟ, ଯମଦଗ୍ନୀ ପ୍ରଭୃତି ମଧ୍ୟ ଆଶ୍ରମରେ ବାସ କରୁଥିଲେ। ପୁରାଣ ସାହିତ୍ୟରେ ଏମାନଙ୍କ ଆଶ୍ରମର ବର୍ଣ୍ଣନା ଦେଖିବାକୁ ମିଳେ। ବୌଦ୍ଧମାନଙ୍କର ଧର୍ମ କେନ୍ଦ୍ର ବିହାର ନାମରେ ବିଖ୍ୟାତ ହେଉଥିଲା। ବୌଦ୍ଧ ସାହିତ୍ୟରୁ ଆମେ ଏହି ସବୁ ବୌଦ୍ଧ ଧର୍ମଶିକ୍ଷା ଓ ସାଧନା କେନ୍ଦ୍ରର ନାମକୁ ଲକ୍ଷ୍ୟକରୁ। ଯଥା- ବେଣୁବନ ମହାବିହାର, ବିଲ୍ୱବନ ମହାବିହାର, ଜୈତ୍ର ବନ ମହାବିହାର, କୁଣ୍ଡଳ ବନବିହାର, ସପ୍ତପର୍ଣ୍ଣ ବିହାର, ନାଳନ୍ଦା ବିହାର ଓ ପୁଷ୍ପଗିରି ବିହାର ଇତ୍ୟାଦି।

ତେବେ ଭାରତୀୟ ମଠ ପରଂପରାର ଆଦିମ ଅଧ୍ୟାୟକୁ ଅନୁସଂଧାନ କରିବାକୁ ଗଲେ ସ୍ୱତଃ ମନେପଡ଼ନ୍ତି ଆଚାର୍ଯ୍ୟ ଶଙ୍କର। ଖ୍ରୀଷ୍ଟୀୟ ଅଷ୍ଟମ ଶତକର ଏହି ଜ୍ଞାନବାଦୀ ଦାର୍ଶନିକ ଓ ସନ୍ଥ ନିଜର ଅଦ୍ୱୈତ ଦର୍ଶନ ଲାଗି ଇତିହାସରେ ବିଖ୍ୟାତ। ସେ ନିଜ ମତବାଦର ପ୍ରଚାର ଉଦ୍ଦେଶ୍ୟରେ ଭାରତର ଚାରି ସୀମାନ୍ତରେ ଚାରିଗୋଟି ମଠ ପ୍ରତିଷ୍ଠା କରିଥିଲେ ଓ ନିଜର ଚାରି ପ୍ରିୟ ଶିଷ୍ୟଙ୍କୁ ଏହି ମଠର ତତ୍ତ୍ୱାବଧାରାକ ରୂପେ ନିଯୁକ୍ତି ଦେଇଥିଲେ। ଏହି ଚାରି ଜଣ ଚାରି ଶଙ୍କରାଚାର୍ଯ୍ୟ ରୂପେ ପରିଚିତ ହେଲେ। ଅର୍ଥାତ୍ ତାଙ୍କ ସହିତ ଏଇ ଚାରି ଶିଷ୍ୟ ସମାନ ସ୍ଥାନର ଅଧିକାରୀ ବୋଲି ଶଙ୍କରାଚାର୍ଯ୍ୟ ଘୋଷଣା କରିଦେଲେ। ଏହି ଚାରି ମଠ ଓ ଚାରି



Digitized by PPRACHIN, SOA

ଶଙ୍କରାଚାର୍ଯ୍ୟ ବୋଲି ପୁରୀରେ ଗୋବର୍ଦ୍ଧନ ମଠ ଓ ଶଙ୍କରାଚାର୍ଯ୍ୟ ପଦ୍ମପାଦାଚାର୍ଯ୍ୟ ଦାକ୍ଷିଣାତ୍ୟରେ କାଂଚି କାମକୋଟୀ ମଠ ଓ ଶଙ୍କରାଚାର୍ଯ୍ୟ ହସ୍ତାମଳକ, ଦ୍ୱାରକା ନିକଟରେ ଶୃଙ୍ଗେରୀ ମଠ ଓ ଶଙ୍କରାଚାର୍ଯ୍ୟ ସୁରେଶ୍ୱରାଚାର୍ଯ୍ୟ ଏବଂ ଉତ୍ତରରେ ଜ୍ୟୋତିର୍ମଠ ଓ ତା'ର ଶଙ୍କରାଚାର୍ଯ୍ୟ ତ୍ରୋଟକାଚାର୍ଯ୍ୟ। ଏହି ଚାରିଗୋଟି ମଠ ପ୍ରତିଷ୍ଠା ସହିତ ସେ ହିନ୍ଦୁ ଧର୍ମ ଲାଗି ଧର୍ମ ପ୍ରଚାରକ ସନ୍ନ୍ୟାସୀ ସଂପ୍ରଦାୟର ମଧ୍ୟ ପ୍ରତିଷ୍ଠା କଲେ। ସେ ବନ, ଅରଣ୍ୟ, ଗିରି, ପର୍ବତ, ସାଗର, ଭାରତୀ, ପୁରୀ, ସରସ୍ୱତୀ, ତୀର୍ଥ ଓ ଆଶ୍ରମ ଆଦି ଦଶ ପ୍ରକାର ଉପାଧିଧାରୀ ସନ୍ନ୍ୟାସୀ ଗୋଷ୍ଠୀ ଗଠନ କଲେ। ଯାହାଙ୍କୁ ଦଶନାମୀ ସଂପ୍ରଦାୟ ବୋଲି କୁହାଗଲା। ଶଙ୍କରାଚାର୍ଯ୍ୟଙ୍କୁ ଅନୁସରଣ କରି ହିନ୍ଦୁଧର୍ମର ପରବର୍ତ୍ତୀ ଆଚାର୍ଯ୍ୟଗଣ ଯଥା ଆଚାର୍ଯ୍ୟ ରାମାନୁଜ, ନିମ୍ବାର୍କ, ବଲ୍ଲଭ ଓ ଚୈତନ୍ୟ ପନ୍ଥୀମାନେ ନିଜ ନିଜର ମଠ ସବୁ ପ୍ରତିଷ୍ଠା କଲେ। ଓଡ଼ିଶୀ ବୈଷ୍ଣବ ସଂପ୍ରଦାୟ, ଅବଧୂତ ସଂପ୍ରଦାୟ ଓ ମହିମା ଧର୍ମୀମାନେ ମଧ୍ୟ ନିଜ ସଂପ୍ରଦାୟର ସ୍ୱତନ୍ତ୍ର ମଠ ଗଢ଼ିଲେ। ଭକ୍ତି ଯୁଗର ସବୁ ସନ୍ଥମାନେ ନିଜ ନିଜର ସ୍ୱତନ୍ତ୍ର ମଠ ପ୍ରତିଷ୍ଠା କଲେ। ଏହି ପରି ଭାବରେ ମଠର ପରଂପରା ଗଢ଼ିଚାଲିଲା। ରାଜା, ଜମିଦାର, ମହାଜନ ଓ ଭକ୍ତଜନମାନେ ନିଜ ନିଜର ଧର୍ମବିଶ୍ୱାସ ଯୋଗୁ ଏହି ସବୁ ମଠକୁ ବିପୁଳ ସଂପତ୍ତି ଦାନ କଲେ। ଫଳରେ କେତେକ ମଠ କ୍ରମେ ଏକ ଏକ ଜମିଦାରୀ ଇଷ୍ଟେଟ୍‌ରେ ପରିଣତ ହେଲା। ଏଇ ସଂପତ୍ତିର ପ୍ରାଚୁର୍ଯ୍ୟ ମହନ୍ତମାନଙ୍କୁ ଭୋଗୀ କରିଦେଲା। ମଠରୁ ଆଧ୍ୟାତ୍ମିକ ସାଧନା ଓ ଧର୍ମୀୟ ଅଭିଳାଷ କ୍ରମେ ଦୂରୀଭୂତ ହୋଇଗଲା। ଏହା ହିଁ ହେଲା ମଠଗୁଡ଼ିକର ପତନର କାରଣ। ଏସବୁ ଭିତରେ ତଥାପି କେତେକ ମଠ ଓ ମହନ୍ତ ସମାଜ କଲ୍ୟାଣ ଦିଗରେ କାର୍ଯ୍ୟ କରି ଚାଲିଲେ। ସତ୍ୟ ନାରାୟଣ ରାଜଗୁରୁଙ୍କ ଓଡ଼ିଶାର ସାଂସ୍କୃତିକ ଇତିହାସ (ଚତୁର୍ଥ ଖଣ୍ଡ)ର ତଥ୍ୟ ଅନୁସାରେ ଓଡ଼ିଶାରେ ମଠଗୁଡ଼ିକ, ଧର୍ମ ପ୍ରଚାର, ଧର୍ମଶିକ୍ଷା ଓ ପୌରହିତ୍ୟର ପ୍ରଧାନ କେନ୍ଦ୍ର ରୂପେ ରହିଥିଲା।

ଯାଜପୁର ଜିଲ୍ଲାର ଧର୍ମଶାଳା ଅଂଚଳରେ ଗଢ଼ି ଉଠିଥିବା ମଠଗୁଡ଼ିକ ଭିତରେ ଖରସ୍ରୋତା କୂଳର କେଉଟ ଲଗୁଁଆ ମୌଜାରେ ପ୍ରତିଷ୍ଠିତ ମଠର ପରଂପରା ଓ ପ୍ରଭାବ ସ୍ୱତନ୍ତ୍ର। ଏହି ମଠଟି ଶଙ୍କରଙ୍କ ପ୍ରତିଷ୍ଠିତ ଦଶନାମୀ ସଂପ୍ରଦାୟର ଏକ ମଠ। ଏହି ମଠର ମହନ୍ତଙ୍କ ଉପାଧି ହେଉଛି ଭାରତୀ। ପୁରୀରେ ପ୍ରତିଷ୍ଠିତ ଗୋବର୍ଦ୍ଧନ ମଠର ବେଦ ହେଉଛି ଋକ୍‌ବେଦ ଓ ସନ୍ନ୍ୟାସୀମାନଙ୍କର ଉପାଧି



Digitized by PPRACHIN, SOA

ହେଉଛି ବନ ଓ ଅରଣ୍ୟ, ଦାକ୍ଷିଣାତ୍ୟ କାମକୋଟୀ ପୀଠର ସନ୍ନ୍ୟାସୀମାନଙ୍କର ଉପାଧି ହେଉଛି ଭାରତୀ, ପୁରୀ ଓ ସରସ୍ୱତୀ। ଅତି ଆଶ୍ଚର୍ଯ୍ୟଜନକ ଭାବରେ ଓଡ଼ିଶାରେ ସନ୍ନ୍ୟାସୀମାନଙ୍କର ଉପାଧି ହେଉଛି ଏହି ଭାରତୀ, ପୁରୀ ଓ ସରସ୍ୱତୀ। ବନ ଓ ଅରଣ୍ୟ ପ୍ରାୟ ଦୁର୍ଲଭ। ବୋଧହୁଏ ଗଂଗ ରାଜତ୍ୱରେ ଓଡ଼ିଶା ଦାକ୍ଷିଣାତ୍ୟ ଦ୍ୱାରା ଗଭୀର ଭାବରେ ପ୍ରଭାବିତ ହୋଇଥିଲା ଓ ଦାକ୍ଷିଣାତ୍ୟର ସନ୍ନ୍ୟାସୀ ପରଂପରା ଓଡ଼ିଶାରେ ଖୁବ୍ ପ୍ରତିଷ୍ଠିତ ହୋଇଥିଲା।

ଏହି ଖଣ୍ଡିତର ମଠର ପ୍ରତିଷ୍ଠାତା ମହନ୍ତ ହେଉଛନ୍ତି ସଦାଶିବ ଭାରତୀ ଗୋସ୍ୱାମୀ। ପ୍ରାୟ ୩୦୦ ବର୍ଷ ତଳେ ସେ ଏ ମଠର ପ୍ରତିଷ୍ଠା କରିଥିଲେ। ପରଂପରା କ୍ରମେ, ବିଦାୟୀ ମହନ୍ତ ଶିଶିର କୁମାର ଭାରତୀ ହେଉଛନ୍ତି ମଠର ୧୦ମ ତମ ମହନ୍ତ। ଏହି ମଠର ବିପୁଳ ସଂପତ୍ତି ଥିଲା, ପ୍ରାୟ ୪୦ ବାଟିରୁ ଉର୍ଦ୍ଧ୍ୱ ସଂପତ୍ତି ଥିଲା ଏ ମଠର। ଏହା ଏକ ଜମିଦାରୀ ଇଷ୍ଟେଟ୍‌ରେ ପରିଣତ ହୋଇଥିଲା। ଖଣ୍ଡିତରର ମଂଗଳା ଓ ବ୍ରାହ୍ମଣ ଶାସନ ଏହି ମହନ୍ତମାନଙ୍କର ଅବଦାନ। ସ୍ୱର୍ଗତ ଶିଶିର କୁମାର ଭାରତୀ ମହନ୍ତ ଭାବରେ ଅଧିଷ୍ଠିତ ହେବାବେଳକୁ ମଠର ସେ ବିପୁଳ ସଂପତ୍ତି ଐଶ୍ୱର୍ଯ୍ୟ ଆଉ ନଥିଲା। ଜମିର ପରିମାଣ ଥିଲା ପ୍ରାୟ ୭୦ ଏକର ମାତ୍ର। ସ୍ୱର୍ଗତଃ ଶିଶିର କୁମାର ଭାରତୀ ଜଣେ ଶିକ୍ଷିତ ବ୍ୟକ୍ତି ଥିଲେ। ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ଛାତ୍ର ଗଠନରେ ସେ ନିଜକୁ ନିୟୋଜିତ କରିଥିଲେ। ଜଣେ ଆଦର୍ଶ ଶିକ୍ଷକ ଭାବରେ ସେ କେବଳ ନିଜ ଛାତ୍ର ସମାଜରେ ପୂଜିତ ହେଉନଥିଲେ, ଜଣେ ସାମାଜିକ ଗୁରୁ ଭାବରେ ସେ ଯଥେଷ୍ଟ ସମ୍ମାନ ଅର୍ଜନ କରିଥିଲେ। ସମସ୍ତ ଅଭାବ ଅସୁବିଧା ଭିତରେ ବି ସେ ମଠର ପରଂପରାକୁ ବଜାଏ ରଖିବା ଲାଗି ଯତ୍‌ପରୋନାସ୍ତି ଉଦ୍ୟମ କରୁଥିଲେ। ମଠର ପାରଂପାରିକ ଉତ୍ସବ ବ୍ୟତୀତ ମଠରେ ଏକ ବାର୍ଷିକ ଗୀତା ପାଠ ଓ ଯଜ୍ଞର ଆୟୋଜନ ସେ କରୁଥିଲେ। ପୁରାଣ ସାହିତ୍ୟର ଆଲୋଚନାମାନ ଆୟୋଜନ କରୁଥିଲେ। କୋଳଥଳଠାରେ ଏକ ହାଇସ୍କୁଲ ପ୍ରତିଷ୍ଠାରେ ତାଙ୍କର ଯଥେଷ୍ଟ ଅବଦାନ ରହିଛି। ସେ ଜଣେ ଜ୍ଞାନ ପ୍ରିୟ ଓ ସମାଜସେବା ପ୍ରବଣ ମଣିଷ ଥିଲେ। ତାଙ୍କର ବ୍ୟବହାର ଖୁବ୍ ଆକର୍ଷଣୀୟ ଥିଲା। ସେ ପ୍ରତ୍ୟେକ ବ୍ୟକ୍ତିର ସମ୍ମାନ ଓ ମର୍ଯ୍ୟାଦାକୁ ଯଥେଷ୍ଟ ମୂଲ୍ୟ ଦେଉଥିଲେ। ସମୟର ଗତିରେ ମଠ ପରଂପରା ଯେତେବେଳେ ବିଲୟମୁଖୀ ସେତିକିବେଳେ ତାଙ୍କ ମହନ୍ତର ସମୟ ଜୀବନ ଖଣ୍ଡିତର ମଠର ଇତିହାସରେ



Digitized by PPRACHIN, SOA

ଏକ ଆଲୋକିତ ଅଧ୍ୟାୟ ଭାବରେ ନିଶ୍ଚୟ ସ୍ମରଣୀୟ ହୋଇ ରହିବ। ତାଙ୍କର ସାମାଜିକ ଅବଦାନ ଓ ସାହିତ୍ୟ, ସଂସ୍କୃତି ପ୍ରତି ତାଙ୍କୁ ସମାଜରେ ଜନପ୍ରିୟ କରିଥିଲା। ଏହି ମହାନ ମହନ୍ତଙ୍କର ଦେହାବସାନ ୨୦୨୨ ମସିହା ଅଗଷ୍ଟ ୧୨ ତାରିଖ ଝୁଲଣ ପୂର୍ଣ୍ଣିମାର ସନ୍ଧ୍ୟା ୬ଟା ସମୟରେ ଘଟିଯାଇଛି। କିନ୍ତୁ ତାଙ୍କର ଅବଦାନ ତାଙ୍କୁ ଆଜି ସ୍ମରଣୀୟ କରି ରଖିଛି। ସେ ଅନେକ ଦିନ ଧରି ସମାଜର ସ୍ମୃତିରେ ବଂଚି ରହିବେ, ବାରଂବାର ମନେପଡ଼ିବେ।

ତାଙ୍କର ବିଦାୟ କେବଳ ମଠ ଲାଗି ନୁହେଁ, ସାରା ଖଣ୍ଡିତର ଲାଗି ଯେ ଅଭାବ ସୃଷ୍ଟି କରିଛି, ତା'ର ପୂରଣ ସହଜ ସମ୍ଭବ ନୁହେଁ। ଆଜି ବି ମଠରେ ପହଞ୍ଚିଲେ ସେ ମନେପଡ଼ନ୍ତି, ତାଙ୍କ ହସ ହସ ମୁହଁ ଦିଶିଯାଏ। ଜଣେ ସମାଜ ପ୍ରତି ଉତ୍ସର୍ଗୀକୃତ ଓ ଧର୍ମ ବିଶ୍ୱାସ ନିକଟରେ ଚିରଅବନତ ଏବଂ ଏକ ଧର୍ମ ଅନୁଷ୍ଠାନର ପରିଚାଳକ ଭାବରେ ନିଜର ଯେଉଁ ଭାବମୂର୍ତ୍ତି ସେ ଅର୍ଜନ କରିଯାଇଛନ୍ତି। ତାଙ୍କ ଦେହାବସାନ ପରେ ବି ସେହି ଭାବମୂର୍ତ୍ତିର ଔଜ୍ଜଲ୍ୟ ତାଙ୍କୁ ଚିର ଅମ୍ଳାନର କରି ରଖିବ। ତାଂକ ଐଶ୍ୱର୍ଯ୍ୟରେ ତାଙ୍କ ନା ଆଜି ବି ଝଟକୁଛି। ଗୋଟିଏ ଛୋଟିଆ ଲୋକ ଭୂମିର ଇତିହାସ ସେ ନାଁକୁ ସାଇତି ରଖିଛି ॥

*କୋଟପୁର, ଧର୍ମଶାଳା, ଯାଜପୁର*
*ଫୋନ୍: ୯୯୩୭୧୦୫୯୬୪*







Digitized by PPRACHIN, SOA

# ମହନ୍ତ ଶିଶିର ସାର୍ ଥିଲେ ଅନୁଷ୍ଠାନ ପ୍ରେମୀ

ସୁରେନ୍ଦ୍ର କୁମାର ତିଆଡ଼ି

କାଲିପରି ଲାଗୁଛି, ଶିଶିର ସାର୍ ମୋର ଛୋଟ ସାର ଦୋକାନରେ ଆସି ସନ୍ଧ୍ୟାବେଳକୁ ବସନ୍ତି । ଦେଶ ଦୁନିଆର ଖବର, ଆମ ଅଞ୍ଚଳର ଭଲ ମନ୍ଦ କଥା ସେଇଠି ଆଲୋଚନା ହୁଏ । ସତ୍ୟସାଇ ସଂଗଠନର ସେବା କାର୍ଯ୍ୟ ନୂଆ ସମିତି ସମ୍ପର୍କରେ ଯୋଜନା ପରିଚାଳନା ଇତ୍ୟାଦି ବହୁକଥା ସେଇଠି ଚର୍ଚ୍ଚା କରନ୍ତି । ବେଳ ଗଡ଼ିଯାଇଛି, ଶିଶିର ସାର୍ ଆଉ ଆସୁନାହାନ୍ତି । ଅଫେରନ୍ତା ରାଜ୍ୟର ଅଧିବାସୀ ହୋଇ ଚାଲିଗଲେଣି ଯେ ଯା ଭିତରେ ବର୍ଷେ ହୋଇଗଲା । ଖୁବ ନିକଟତର ହୋଇ ବହୁ କାମ କାର୍ଯ୍ୟରେ ରହୁଥିଲୁ । ତାଙ୍କର ଇହଧାମ ତ୍ୟାଗ କଥାକୁ ସହଜରେ ମୁଁ ଗ୍ରହଣ କରିପାରୁ ନାହିଁ । ତାଙ୍କ ସହ କେତେ ଘନିଷ୍ଠତା ତାହା ବାକ୍ୟରେ ବା ଲେଖାରେ ପ୍ରକାଶ କରିବା ସହଜ ନୁହେଁ । ସେ ଥିଲେ ସମ୍ଭ୍ରାନ୍ତ, ଉଚ୍ଚ ଶିକ୍ଷିତ, ଦରଦୀ, ଅନୁଷ୍ଠାନ ପ୍ରେମୀ, ଭକ୍ତିବାଦୀ, ସମାଜସେବୀ ତଥା ମିଷ୍ଟଭାଷୀ । ଆଉ କେତେକଙ୍କ ପାଇଁ ସେ ଥିଲେ ତ୍ରାଣକର୍ତ୍ତା ।

ଜଣାଶୁଣାରୁ ପ୍ରକାଶ ଯେ ପ୍ରାୟ ୬/୭ଶହ ବର୍ଷରୁ ଊର୍ଦ୍ଧ୍ୱ ସମୟଧରି ପ୍ରତିଷ୍ଠିତ ଆମ ଅଞ୍ଚଳର ପବିତ୍ର ସଦାବ୍ରତ ମଠର ସେ ଥିଲେ ଜଣେ ଉଦ୍ୟୋଗୀ ମଠାଧୀଶ । ତାଙ୍କ ସମୟରେ ମଠର ବହୁ ଉନ୍ନତିମୂଳକ କାର୍ଯ୍ୟ ସମ୍ପାଦିତ ହୋଇଛି । ତାଙ୍କର ବୁଦ୍ଧିମତା ବଳରେ ମଠ ସଂସ୍କୃତିର ପ୍ରଭାବ ବିସ୍ତାର ହୋଇଛି । ମଠ ନିୟନ୍ତ୍ରଣରେ ଥିବା ବ୍ରହ୍ମେଶ୍ୱର, ଯଜ୍ଞେଶ୍ୱର, ବାଡ଼ି ମଙ୍ଗଳା, ଘାଟ ମଙ୍ଗଳା ଆଦି ପୀଠର ବିକାଶ ଦିଗରେ ତାଙ୍କର ଭୂମିକା ପ୍ରଶଂସନୀୟ । ପ୍ରଭୁ ଶ୍ରୀ ମଦନମୋହନଙ୍କ ସଦାବ୍ରତ ମଠ ସହ ବିଭିନ୍ନ ମନ୍ଦିର ପରିଚାଳନା ଓ ରକ୍ଷଣାବେକ୍ଷଣ କାର୍ଯ୍ୟକ୍ରମକୁ ସେ ସୁଚାରୁରୂପେ ସଂପାଦନ କରୁଥିଲେ । ସତ୍ୟସାଇ ସଂଗଠନ ତଥା କୁଆଖିଆ



Digitized by PPRACHIN, SOA

ସେବା ସମିତିର ଜଣେ ପ୍ରତିଷ୍ଠାତା ସଦସ୍ୟ ଭାବେ ତାଙ୍କର କର୍ତ୍ତବ୍ୟ ପରାୟଣାତା ପ୍ରେରଣାଦାୟୀ ହୋଇରହିଛି। କୁଆଖିଆଠାରେ ୨୦୦୮ ମସିହାରେ ନୂଆ ସମିତି ପ୍ରତିଷ୍ଠାରେ ସମିତିର ଅନେକ ଉନ୍ନତିମୂଳକ କାର୍ଯ୍ୟକ୍ରମରେ ତାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ। ଉକ୍ତ ସମିତିର ଅନେକ ରାଜ୍ୟସ୍ତରୀୟ ଓ ଜିଲ୍ଲାସ୍ତରୀୟ କାର୍ଯ୍ୟକ୍ରମ ଆୟୋଜନରେ ତାଙ୍କର ଅବଦାନ ସ୍ମରଣୀୟ।

ଖଣ୍ଡିତର ହାଇସ୍କୁଲରେ ତାଙ୍କର କାର୍ଯ୍ୟକାଳ ସମୟ ୨୦୦୪-୨୦୧୦ମସିହା। ଏହି ସରକାରୀ ସେବା ଦିବସଗୁଡ଼ିକରେ ଶିକ୍ଷା ଅନୁଷ୍ଠାନ ପରିଚାଳନା, ଶୃଙ୍ଖଳିତ ଶିକ୍ଷାଦାନ, ସ୍କୁଲର ପୁରାତନ ଛାତ୍ର ସଂଗଠନ ଗଠନରେ ତାଙ୍କର ଉଲ୍ଲେଖନୀୟ ପଦକ୍ଷେପ ବେଶ ବାରି ହୋଇପଡ଼େ। ସେ ବହୁ ସମୟାନୁବର୍ତ୍ତୀ ଓ ଛାତ୍ରବତ୍ସଳ ଥିବାରୁ ତାଙ୍କ ପ୍ରତି ସହଯୋଗୀ କର୍ମଚାରୀ ଓ ଛାତ୍ରଛାତ୍ରୀମାନଙ୍କର ଅନେକ ସମ୍ମାନବୋଧ ରହିଥିଲା।

ମହନ୍ତଙ୍କ ପୂର୍ବପିଢ଼ି ମହନ୍ତମାନଙ୍କ ଦ୍ୱାରା ସମ୍ପାଦିତ ହୋଇଆସୁଥିବା ଖଣ୍ଡିତରର "ମା' ଘାଟ ମଙ୍ଗଳା ମେଲଣ" ତାଙ୍କ ସମୟରେ ମଧ୍ୟ ବେଶ ଗୁରୁତ୍ୱ ରହିଥିଲା। ଆମ୍ଭମାନଙ୍କୁ ନେଇ ଗ୍ରାମବାସୀଙ୍କ ଦ୍ୱାରା ଏହି ମେଲଣ ମହୋତ୍ସବକୁ ସେ ସୁରୁଖୁରୁରେ ପରିଚାଳନା କରିବାକୁ ସଦା ତତ୍ପର ଥିଲେ।

ଗୋଟିଏ ଅତ୍ୟନ୍ତ ସମ୍ବେଦନଶୀଳ କଥାକୁ ପ୍ରକାଶ ନକରି ରହି ହେଉନାହିଁ। ୨୦୦୫ ମସିହାର ଗ୍ରୀଷ୍ମ ମଧ୍ୟାହ୍ନରେ ମା' ଘାଟ ମଙ୍ଗଳାଙ୍କ ମନ୍ଦିରରେ ଅଗ୍ନିକାଣ୍ଡ ହେଲା। ଲୋକଙ୍କ ହୋ ହାଲା ପାଟିତୁଣ୍ଡ ଶୁଣି ମୁଁ ଖାଇବା ପାଖରୁ ଦୌଡ଼ିଲି। ପହଞ୍ଚି ଦେଖିଲି ମା'ଙ୍କ ନିକଟରେ ଥିବା ସଂକଳ୍ପ ନଡ଼ିଆଗୁଡ଼ିକ ଜଳି ଧୂଆଁ ଉଠୁଛି। କାଳ ବିଳମ୍ବ ନକରି ଲୁଗାପାଲଟି ମନ୍ଦିରରେ ପଶି ବାଲଟି ଧରି ନିଆଁକୁ ଆୟତ୍ତ କରିବାକୁ ଚେଷ୍ଟାକଲି। ପାଟିରେ କେବଳ ଥିଲା ଜୟ ମା' ମଙ୍ଗଳା.... ଜୟ ମା' ମଙ୍ଗଳା। ଖୁବ ଶୀଘ୍ର ମହନ୍ତ ଶିଶିର ସାର୍ ଆସି ମନ୍ଦିର ପାଖରେ ପହଞ୍ଚି ହତବାକ ହୋଇପଡ଼ିଲେ। ମ୍ରିୟମାଣ ହୋଇ ସେଦିନ ସାର୍‌ଙ୍କର ଅଖିଆ ଅପିଆ। ପରଦିନ ମଠରେ ବସି ସ୍ୱର୍ଗତ ରାମଚନ୍ଦ୍ର ମିଶ୍ର, ଦାମୋଦର ଶତପଥୀ, ଗଜେନ୍ଦ୍ର ଦାଶ, ମୋ' ସାଙ୍ଗ ଶ୍ରୀକାନ୍ତ କର ଓ ମୁଁ ମହନ୍ତଙ୍କ ପରାମର୍ଶ ଅନୁସାରେ ପୁରୀ ମୁକ୍ତିମଣ୍ଡପକୁ ଚାଲିଲୁ ତାଙ୍କ ସାଙ୍ଗରେ। ସେଠାରେ ପଣ୍ଡିତମାନଙ୍କ ସହ ଆଲୋଚନା ସାରି କାରିକା ଅନୁସାରେ ଗ୍ରାମକୁ ଆସି ମା'ଙ୍କ ଯଥାବିଧି ପୂଜାର୍ଚ୍ଚନା କରିବା ସହ ଯଜ୍ଞ କର୍ମ



Digitized by PPRACHIN, SOA

କରିଥିଲୁ। ସେହି ବର୍ଷଠାରୁ ମା'ଙ୍କ ମନ୍ଦିର ସମ୍ମୁଖରେ ଯଜ୍ଞଉତ୍ସବ ହୋଇଆସୁଛି। ଠିକ୍ ସେବେଠାରୁ ମା'ମଙ୍ଗଳାଙ୍କ ନୂତନ ମନ୍ଦିର କାର୍ଯ୍ୟ ମଧ୍ୟ ଆରମ୍ଭ ହୋଇଥିଲା, ଯାହାକି ଏବେ ସମ୍ପୂର୍ଣ୍ଣ ହୋଇସାରିଲାଣି। ବହୁ ସଂସ୍କୃତି କ୍ଷେତ୍ର ଆମ୍ଭ ଅଞ୍ଚଳରେ ଉନ୍ନତି କରୁଛି, ସେଥିମଧ୍ୟରୁ ଅନେକଙ୍କ ଦେହରେ ଶିଶିର ସାରଙ୍କ ଶୁଭସ୍ପର୍ଶ ରହିଥିଲା। ବଡ଼ ଦୁଃଖର କଥା ଏହି ସକଳ ଉନ୍ନତିର ଦୃଶ୍ୟ ଦେଖିବାକୁ ମହନ୍ତ ଶିଶିର ସାର୍ ଆଜି ଆମ ଗହଣରେ ନାହାନ୍ତି।

*ସରପଞ୍ଚ , ରସୁଲପୁର ଗ୍ରାମ ପଞ୍ଚାୟତ, ଯାଜପୁର*





Digitized by PPRACHIN, SOA

# ମଳିନତ୍ୱ ବିହୀନ ଦର୍ପଣ



**କଳ୍ପତରୁ ପଣ୍ଡା**

ଶିଶିର ସାର୍ ଆଉ ନାହାନ୍ତି, ଏ କଥାକୁ ଯେତେ ଦୃଢ଼ତାର ସହ ବୁଝିଲେ ବି ତଥାପି ମନ ଅବୁଝା ରହିଯାଉଛି। ଯେମିତି ମୋ' ବାପା ଶିଶିର ସାର୍‌ଙ୍କ ପୂର୍ବ ୨ ବର୍ଷରୁ ଚାଲିଗଲେଣି। ତଥାପି ଏକଥା ମନକୁ ପାଉନି ଯେ ବାପା ଆଉ ମିଳିବେ ନାହିଁ। କେବେକେବେ ଅନ୍ୟମନସ୍କତାରେ କ୍ଷୀଣ ଆଶାଟିଏ ଆସି ମନକୁ ଜାବୋଡ଼ି ଧରୁଛି, ବୋଧହୁଏ ବାପା କୁଆଡ଼େ ଯାଇଛନ୍ତି ଆସିବେ। ଠିକ୍ ସେମିତି ଶିଶିର ସାର୍ ବୋଧେ ଅସୁସ୍ଥ ଅଛନ୍ତି ଆଉ ବାଟଘାଟ, ଛକ ବଜାରରେ ଦେଖାଯାଉନାହାନ୍ତି। ମଠରେ ବିଶ୍ରାମ ନେଉଛନ୍ତି ସୁସ୍ଥ ହୋଇଗଲେ ଦୁଇଚାରିଦିନପରେ ବାହାରିବେ। ଗତ ଝୁଲଣ ଯାତ୍ରା ସମୟରୁ ପୁଣି ଝୁଲଣ ଯାତ୍ରା ପହଞ୍ଚିଲାଣି। ଠାକୁର ଶ୍ରୀ ମଦନମୋହନଙ୍କର ସେବାପୂଜା ଚାଲିଛି। ଠାକୁରେ ଅପଲକ ନୟନରେ ଚାହିଁଛନ୍ତି ଖରସ୍ରୋତା ନଦୀ ଆଡ଼କୁ। ନଦୀରେ ଅନେକ ପାଣି ବହି ଚାଲିଗଲାଣି । ବନ୍ଧ କଡ଼ରେ ତମାଳ ଗଛରୁ ଅନେକ ପତ୍ର ଝଡ଼ି ପୁଣି ପତ୍ର ହେଲାଣି। ମଠ ପାଖରେ ରହି କୃଷ୍ଣ ପ୍ରେମାଶକ୍ତ ତମାଳ ଝୁରୁଛି ମଠର ମହନ୍ତଙ୍କୁ। ଉଭୟଙ୍କ ଆଦ୍ୟଯୌବନ କଟିଛି ଖରସ୍ରୋତା ନଦୀର କୂଳରେ। ଧୂ ଧୂ ଖରାବେଳେ କେବେକେମିତି ମଠରୁ ଉଠିଆସି ତମାଳର କେନା କେନା ଡାଳକୁ ଆଉଜି ପଡ଼ି ଠିଆ ହୋଇ ପଡ଼ନ୍ତି ଯୁବକ ମହନ୍ତ ଶିଶିର ବାବୁ। ଗୋରାଗୋରା ଅଳ୍ପ କଠୋର ହାତର ପରଶ ସାଙ୍ଗରେ ଧଳା



Digitized by PPRACHIN, SOA

ଗଣ୍ଠିରୁ ବାହାରି ଆସୁଥିବା ଚୁଆ ଚନ୍ଦନର ବାସ୍ନା । କେବେ ଅପରାହ୍ନରେ ଲୋମଶ ଦେହରୁ ପୁଣି ପଣ୍ଡସ୍ ପାଉଡ଼ରର ବାସ୍ନା ଆଘ୍ରାଣ କରି ନିଜର ବାହୁରେ ତାଙ୍କୁ ଟିକେ ଜାବୋଡ଼ି ଧରିଥିବାର ଅନୁଭବ ନିଆରା । ତାଙ୍କ ଅବର୍ତ୍ତମାନରେ ପୁରୁଣା ସ୍ମୃତିକୁ ମନେ ପକାଉଛି ତମାଳ । ପ୍ରଭୁ ଶ୍ରୀ ମଦନ ମୋହନଙ୍କର ଆଦ୍ୟ ସେବକଙ୍କ ସାନ୍ନିଧ୍ୟ ଆଉ ମଳିବ ନାହିଁ । ମଠର ପଡ଼ୋଶୀଟିଏ ହୋଇ ନଈ ଅତଡ଼ାରେ ମହାଦେବଙ୍କ ମନ୍ଦିର ପୁନର୍ବାର ଗଢ଼ିଉଠିଛି । ମନ୍ଦିରର ଇଟା ପଥର ବି ମହନ୍ତଙ୍କୁ ମନେ ପକାଉଛି । ମଠ ଆଶ୍ରାରେ ପଡ଼ିରହିଥିବା ଭଙ୍ଗା ଲଞ୍ଚଟା ଖୋଜୁଛି ପୃଥୁଳ ଶରୀରର ଗୋରା ତକ୍‌ତକ୍ ମହନ୍ତ ଗଲେ କୁଆଡ଼େ ! ନିଶାଡ଼ି ଜୁଆଡ଼ିଙ୍କ ଅସଭ୍ୟ ପରିବେଶରୁ, ଡିଆଁକୁଦାରୁ ରକ୍ଷା କରି ଶାନ୍ତିରେ ଶୋଇବାକୁ ମଠବାଡ଼ିରେ ଟିକେ ଜାଗା ଦେଇଥିଲେ ମହନ୍ତ । ମହନ୍ତଙ୍କ ଅନୁପସ୍ଥିତିରେ ପୁଣି ପରିବେଶ ବିଗିଡ଼ି ଯିବନି ତ ! ବୟସ୍କ ବଉଳ, ତମାଳ, ଆମ୍ବ ଯିଏ କି ମଠପାଇଁ ଗର୍ବରେ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱସମୟ ଧରି ଛିଡ଼ା ହୋଇଛନ୍ତି । ନିଜର ଛାଇତଳେ ଫେରଣ୍ଡା, ହେଟା, ଶିଆଳମାନଙ୍କର କଞ୍ଚାମାଂସ ଭୋଜି, ସ୍ୱାର୍ଥପାଇଁ କଳିଗୋଳ ପୁଣି ହତ୍ୟା ସବୁ ଦେଖିଛନ୍ତି । କେବେ କାହାର ସ୍ୱାର୍ଥପାଇଁ ଡାହିଟିଏ କି ସମ୍ପୂର୍ଣ୍ଣ ଗଛଟିଏ ଚାଲିଯାଇଛି । ତଥାପି ଧୈର୍ଯ୍ୟଚ୍ୟୁତ ହୋଇନାହାନ୍ତି ମହାବୃକ୍ଷମାନେ । ସେମାନଙ୍କ ନଭଶ୍ଚୁମ୍ବୀ ଚେହେରାକୁ ଦେଖି ମହନ୍ତ ଉତ୍ସାହିତ ହୋଇ ମଠବାଡ଼ିରେ ରହି ମଠ ଶାସନକୁ ସମ୍ଭାଳି ଥିଲେ । ନିକାଞ୍ଚନ ନିସ୍ତବ୍ଧ ଏପରି ଜଙ୍ଗଲିଆ ପରିବେଶରେ ମଠରେ କୈଶୋର ଓ ଯୌବନକୁ ହଜେଇ ଦେଇ ପ୍ରାଚୀନତାରୁ ଆଧୁନିକତା ଆଡ଼କୁ ଅଗ୍ରସର ହୋଇଥିଲେ ବୟସର ତାଳେତାଳେ ।

ମଠବାଡ଼ି ଓ ଶିଶିର ସାର୍‌ଙ୍କୁ ଦେଖିଲେ ମୋର ମନରେ ଗୋଟିଏ ଭ୍ରମ ସୃଷ୍ଟିହୁଏ । ସାର୍ ହେଉଛନ୍ତି ଜଙ୍ଗଲ ବିଭାଗର ଅଫିସର ତାଙ୍କ ବାସଭବନ ହେଉଛି ଗୋଟିଏ ବଙ୍ଗଳା । ତମାମ ମଠବାଡ଼ି ହେଉଛି ଗୋଟିଏ ଛୋଟିଆ ଅଭୟାରଣ୍ୟ । ତା'ରି ଭିତରେ ମଠ ଗୋଟିଏ ତୀର୍ଥକ୍ଷେତ୍ର । ସାମାଜିକ ଜୀବନରେ ଯୋଡ଼ାଯୋଡ଼ି ହୋଇ ମୁଁ ତାଙ୍କୁ ଶିଶିର ସାର୍ ବୋଲି ସମ୍ବୋଧନ କରେ । ମୁଁ ତାଙ୍କର ସ୍କୁଲ ପଢ଼ିବା ଛାତ୍ର ନହେଲେ ବି ତାଙ୍କୁ ସାର୍‌ବୋଲି ସମ୍ମାନ ଦିଏ । କାରଣ ଯେଉଁ ସମୟରେ ସାର୍ କୋଳଥଳ ହାଇସ୍କୁଲରେ ଶିକ୍ଷକତା କରୁଥିଲେ ସେଠି ମୋ' ବୟସର ବହୁତ ପିଲା ତାଙ୍କର ଛାତ୍ରଛାତ୍ରୀ । ଯୋଗକୁ ସେ ଆସି ଖଣ୍ଡିତର ହାଇସ୍କୁଲରେ ପ୍ରଧାନ



Digitized by PPRACHIN, SOA

ଶିକ୍ଷକ ହେଲେ। ଆମ ଅଞ୍ଚଳର ମୋ'ଠୁ ବହୁ ସାନ ପିଲା ତାଙ୍କର ମଧ୍ୟ ଛାତ୍ରଛାତ୍ରୀ ହୋଇ ସୁନାମ ଅର୍ଜନ କରିଛନ୍ତି। ସେ ମଧ୍ୟ ଖଣ୍ଡିତର ହାଇସ୍କୁଲର ପ୍ରଥମ ବ୍ୟାଚ୍ ଛାତ୍ର। ତାଙ୍କର ପୂର୍ବଜ ଖଣ୍ଡିତର ହାଇସ୍କୁଲ ଗଠନର କର୍ଣ୍ଣଧାର ସାଜିଥିଲେ। ସେହି ସ୍କୁଲରେ ପାଠ ପଢ଼ିବା ଓ ପାଠ ପଢ଼େଇବାସହ ଚାକିରିର ଶେଷ ଦିନ ସେହିଠାରେ ବିତାଇବା ଖୁବ ଭଲ ଅନୁଭୂତି ଦେଇଥିଲା ସାର୍‌ଙ୍କୁ। ସୌଭାଗ୍ୟବଶତଃ ସେ ମଧ୍ୟ ଆମ ବିଦ୍ୟାଳୟର ପୁରାତନ ଛାତ୍ର ସଂଗଠନର ସଭାପତି ଭାବେ ସର୍ବସମ୍ମତଭାବେ ମନୋନୀତ ହୋଇଥିଲେ। ଏତଦ୍‌ବ୍ୟତୀତ ସତ୍ୟସାଇ ସେବା ସଂଗଠନରେ ସେ ଜଣେ ପ୍ରଥମ ଧାଡ଼ିର  ସଂଗଠକ ଭାବେ କାର୍ଯ୍ୟ କରୁଥିଲେ। ଶ୍ରୀଶ୍ରୀ ସତ୍ୟସାଇଙ୍କ ସାନ୍ନିଧ ଲାଭକରିବା ସହ ତାଙ୍କର ପାଦସେବା କରିବାର ସୌଭାଗ୍ୟ ଅର୍ଜନ କରିଥିବା କଥା ସେ ଅନେକ ସାଇପ୍ରେମୀଙ୍କ ନିକଟରେ ଶ୍ରଦ୍ଧାର ସହ ପ୍ରକାଶ କରନ୍ତି।

ମୋ' ବଡ଼ବାପାଙ୍କ ସ୍କୁଲ ପଢ଼ା ବ୍ୟାଚ୍‌ର ହୋଇଥିବାରୁ ଆମ ଘର ସହ ତାଙ୍କର ଭାବପୂର୍ଣ୍ଣ ସମ୍ପର୍କ ରହିଥିଲା ବାଲ୍ୟକାଳରୁ। ମୋ' ବାପାଙ୍କର ତାଙ୍କ ପରିବାରର ଅନେକ ସଦସ୍ୟଙ୍କ ସହ ଅତି ଘନିଷ୍ଠ ସମ୍ପର୍କ। ଯେମିତିକି ଗୋଟିଏ ପରିବାରର ଲୋକ ଭଳି। ତେଣୁ ବାପା ବଡ଼ବାପାଙ୍କ ସହ ଅତି ଘନିଷ୍ଠ ହୋଇଥିବାରୁ ମୋର ପିତୃତୁଲ୍ୟ ଥିଲେ ସେ। କେହିକେବେ ସାର୍‌ଙ୍କ କଠୋରତାକୁ ବିରୋଧ କଲେ ମୋ' ଦେହରେ ଯାଏନି। ସମୟ ସମୟରେ ସେ ଖୁବ ଦୃଢ଼ ପଦକ୍ଷେପ ନେଇ ଅନେକଙ୍କର କଟାକ୍ଷର ଶିକାର ହୁଅନ୍ତି।  ମୋ ଜେଜେ ମା'ଙ୍କଠାରୁ ସେ ଅନେକ ସ୍ନେହ ଶ୍ରଦ୍ଧା ପାଇଥିବା ବିଷୟରେ ମୋ' ଆଗରେ କହିବାବେଳେ ମତେ ବହୁ ଖୁସି ଲାଗେ। ଜେଜେମା'ଙ୍କ ଦ୍ୱାଦଶାହ ଭୋଜି ଓ ସ୍ମୃତି ଚାରଣସଭାରେ ଯୋଗଦେଇ ସେ ବହୁତ ବ୍ୟସ୍ତ ହୋଇ ବହୁତ ପୁରୁଣା ସ୍ମୃତି ରୋମନ୍ଥନ କରିଥିଲେ। ମୋ' ପୁଅ ବ୍ରତଘରକୁ ବି ଖୁବ ଆଦରରେ ଆସି ଭୋଜିରେ ଯୋଗଦେଇ ଆମ୍ ସମସ୍ତଙ୍କୁ ଉତ୍ସାହିତ କରିବା ସହ ତାଙ୍କର ବହୁ ସାଙ୍ଗସାଥିମାନଙ୍କ ସହ ବସି ଦୀର୍ଘ ସମୟ ଆଳାପ  କରୁଥିଲେ।

ମୋର ତାଙ୍କ ସହ ମିଶିବାର ଲାଳସା ଥାଏ। ସାର୍ ଯେହେତୁ ଗୋଟିଏ ଐତିହାସିକ କ୍ଷେତ୍ରର କ୍ଷେତ୍ରାଧିପତି ଦୁଇ ଚାରି ପିଢ଼ିର ଖବର ତାଙ୍କ ପାଖରେ ମିଳିଯାଏ। ସେ ଏପରି ଏକ ଦର୍ପଣ ଥିଲେ ତାଙ୍କଠାରେ ଆମ ଅଞ୍ଚଳର ଅତୀତ କାଳକୁ ଦେଖିବାର ସୁଯୋଗ ମିଳୁଥିଲା। ନଦୀ, ନାଳ, ବନ୍ଧ, ସ୍କୁଲ, କଲେଜ,



Digitized by PPRACHIN, SOA

ମଠ, ମନ୍ଦିର, ଚର୍ଚ୍ଚ, ଘାଟ, ବଜାରଠାରୁ ଆରମ୍ଭ କରି କଣ୍ଟିଆକୂଳ ଶାସନର ସ୍ଥାପନା, ଜଗନ୍ନାଥ ସଡ଼କର ଗରିମା, ବାରପୋଲିଆର ଇତିହାସ, ଓଳାସ ଶରଗଡ଼ା ମଧ୍ୟରେ ତଫାତ୍ ଇତ୍ୟାଦି ଇତ୍ୟାଦି। ସେ ତାଙ୍କ ପୂର୍ବସୂରୀ ମାନଙ୍କଠାରୁ ଶୁଣିଥିବା ଅନେକ ରୋଚକ ତଥ୍ୟ ମଧ୍ୟ କହିଥିଲେ, ଯାହା ମୁଁ ଜାଣି ରୋମାଞ୍ଚିତ ହୁଏ। ପଲଟନ୍ ତୋଟା, ମା' ଘାଟ ମଙ୍ଗଳାଙ୍କ ଆଗମନ ଓ ମନ୍ଦିର ସ୍ଥାପନା, ଖାଙ୍କଡ଼େଶ୍ୱରଙ୍କ ମହିମା, ବଡ଼ତ୍ରିଲୋଚନପୁର ଓ ସାନତ୍ରିଲୋଚନପୁର ମଝିରେ ଖରସ୍ରୋତା ନଦୀର ଅତୀତର ସ୍ଥିତି ସମ୍ପର୍କରେ ବହୁ ଅନାଲୋଚିତ ତଥ୍ୟର ସେ ଥିଲେ ସଂରକ୍ଷକ ଓ ଗବେଷକ। କିଛି କିଛି ତଥ୍ୟ ଆଲୋଚନା ମାଧ୍ୟମରେ ବାଣ୍ଟି ଦେଇଥିଲେ। ଆହୁରି ଅନେକ ରହିଗଲା ଅନାଲୋଚିତ ହୋଇ, ଯାହାକି ଆମ୍ଭ ଅଞ୍ଚଳ ପାଇଁ ଏକ ଗୁରୁତର କ୍ଷତି କହିଲେ ଅତ୍ୟୁକ୍ତି ହେବ ନାହିଁ। ବିଶେଷକରି ଅଞ୍ଚଳର ଇତିହାସ ସମ୍ପର୍କରେ ରୁଚି ରଖୁଥିବା ବୁଦ୍ଧିଜୀବୀ, ସଂସ୍କୃତିପ୍ରେମୀ ଓ ଛାତ୍ରଛାତ୍ରୀମାନଙ୍କ ପାଇଁ ଏପରି ଏକ ମଳିନତ୍ୱ ବିବର୍ଜିତ ଦର୍ପଣ ଭାଙ୍ଗି ଚୂର୍‌ମାର୍ ହୋଇଗଲା।

*ସମ୍ପାଦକ, ପ୍ରେସ୍ କ୍ଲବ, କୁଆଖିଆ*

*କୁଆଖିଆ, ଯାଜପୁର, ଫୋନ-୯୪୩୯୩୭୬୩୮୪*

●●●





Digitized by PPRACHIN, SOA

# ଆମ ସଂସ୍କୃତିରେ ମଠ- ମନ୍ଦିର

ପଣ୍ଡିତ ଅଭୟ କୁମାର ତ୍ରିପାଠୀ ଶର୍ମା



ବର୍ଷାଣାଂ ଭାରତ ଶ୍ରେଷ୍ଠଃ ଦେଶାନାଂ ଉତ୍କଳ ସ୍ମୃତଃ।

ଉତ୍କଳସ୍ୟ ସମଂ ଦେଶ ଦେଶ ନାସ୍ତି ମହୀତଳେ।" (କପିଳ ସଂହିତା)

ସମସ୍ତ ଦୃଷ୍ଟିକୋଣରୁ ମହାନ ଭାରତବର୍ଷ ସମଗ୍ର ବିଶ୍ୱରେ ନିଜର ଶ୍ରେଷ୍ଠତା ପ୍ରତିପାଦନ କରେ। ସେହି ଦେଶାନ୍ତର୍ଗତ ଉତ୍କଳ ପ୍ରଦେଶ ମଧ୍ୟ ତା'ର କଳା, ସୌନ୍ଦର୍ଯ୍ୟ, ବୀରତ୍ୱ ପ୍ରାକୃତିକ ସଂପଦ ଏବଂ ସକଳ ଗୁଣାବଳୀରେ ଉତ୍କର୍ଷ ନିମନ୍ତେ ଲୋକଙ୍କର ଚିରସ୍ମରଣୀୟ। ଏହି ଉତ୍କଳ ଦେଶ ବା ପ୍ରଦେଶ ସମଗ୍ର ବିଶ୍ୱର ଆଉ କେଉଁଠାରେ ଦୃଶ୍ୟମାନ ହୁଏନି। ଏଣୁ ଉକ୍ତ ମାଟିକୁ ଅନନ୍ତକୋଟି ଦଣ୍ଡବତ ପୂର୍ବକ ଲେଖାଟି ଉପସ୍ଥାପନ କରୁଛି।

ଅଧୁନା ଉତ୍କଳ ବା ଓଡ଼ିଶା ଏକ ଭାଷାଭିତ୍ତିକ ରାଜ୍ୟ ଭାବେ ଏକ ସ୍ୱତନ୍ତ୍ର ସ୍ଥାନ ନେଇଛି। ଏହାର ଭାଷା ମଧ୍ୟ ସାଂସ୍କୃତିକ ଭାଷାର ମାନ୍ୟତା ପ୍ରାପ୍ତ କରିଛି। ଏହି ରାଜ୍ୟାନ୍ତର୍ଗତ ଯାଜପୁର ଜିଲ୍ଲାର ରସୁଲପୁର ପଂଚାୟତ ସମିତି, ରସୁଲପୁର ପଂଚାୟତର ଖଣ୍ଡିତର ଗ୍ରାମରେ ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ଜନ୍ମ ନିଏ ମଦନ ମୋହନ ମଠ, ଏହି ମଠର ବିଶେଷତ୍ୱ ଶ୍ରୀ ଶ୍ରୀ ମଦନମୋହନ ଜୀଉ ମଠ,



Digitized by PPRACHIN, SOA

ଐତିହ୍ୟ ଓ ସଂସ୍କୃତି ପୁସ୍ତକରେ ପୂର୍ବରୁ ପ୍ରତିପାଦନ କରିଛୁ। ତେବେ ଏ ମଠର ପ୍ରଥମ ପ୍ରତିଷ୍ଠାତା ବା ମଠାଧୀଶ ଆଦି ଶଙ୍କରାଚାର୍ଯ୍ୟଙ୍କ ଦଶନାମୀ ସଂପ୍ରଦାୟର ଭାରତୀ ସଂପଦାୟ ସମ୍ଭୂତ ମହନ୍ତ ସଦାଶିବ ଭାରତୀ ଗୋସ୍ୱାମୀ ଥିଲେ। ଏହି ମଠରେ ଭାରତର ବିଭିନ୍ନ ପ୍ରାନ୍ତରୁ ଆସୁଥିବା ପରିବ୍ରାଜକ ତଥା ତୀର୍ଥମାନଙ୍କର ବିଶ୍ରାମ ନେବାର ବ୍ୟବସ୍ଥା ଥିଲା। ଏଣୁ ଏହାର ନାମକରଣ ଯଥାର୍ଥରେ 'ସଦାବ୍ରତ' ମଠ ହୋଇଥିଲା। ଯେତେବେଳେ ବି ଭକ୍ତ ପହଞ୍ଚିଲେ ଉପାସ ରହୁନଥିଲେ କିଛିନା କିଛି ପ୍ରସାଦ ରୂପେ ମିଳିଯାଉଥିଲା। ଧୀରେଧୀରେ ମଠର ପ୍ରଶସ୍ତି ପ୍ରଚାର ପ୍ରସାର ଲାଭ କରିଥିଲା ଓ ବିଭିନ୍ନ ସମୟରେ ସନାତନ ସଂସ୍କୃତି ପରମ୍ପରାର ଅନେକ ପର୍ବପର୍ବାଣି ମହାଆଡ଼ମ୍ବରରେ ପାଳନ ହେବାକୁ ଲାଗିଲା। ବଂଶାନୁକ୍ରମିକ ଏହି ମଠର ଏ ପର୍ଯ୍ୟନ୍ତ ସମସ୍ତ ମଠାଧୀଶମାନେ ହେଲେ-

୧. ମହନ୍ତ ସଦାଶିବ ଭାରତୀ ଗୋସ୍ୱାମୀ

୨. ମହନ୍ତ ଗରିବ ଭାରତୀ ଗୋସ୍ୱାମୀ

୩. ମହନ୍ତ ଦେଓ ଭାରତୀ ଗୋସ୍ୱାମୀ

୪. ମହନ୍ତ ପୁରୁଷୋତ୍ତମ ଭାରତୀ ଗୋସ୍ୱାମୀ

୫. ମହନ୍ତ ହରିହର ଭାରତୀ ଗୋସ୍ୱାମୀ

୬. ମହନ୍ତ ବୃନ୍ଦାବନ ଭାରତୀ ଗୋସ୍ୱାମୀ

୭. ମହନ୍ତ ଲୋକନାଥ ଭାରତୀ ଗୋସ୍ୱାମୀ

୮. ମହନ୍ତ ପୂର୍ଣ୍ଣଚନ୍ଦ୍ର ଭାରତୀ ଗୋସ୍ୱାମୀ

୯. ମହନ୍ତ ନବକିଶୋର ଭାରତୀ ଗୋସ୍ୱାମୀ

ଏହି ମହନ୍ତମାନଙ୍କ ଦ୍ୱାରା ମଠରେ ବର୍ଷକରେ ଅନେକ ଉତ୍ସବ ପାଳନ ସହ ଭକ୍ତମାନଙ୍କ ନିମନ୍ତେ ପ୍ରସାଦ ସେବା ପ୍ରାୟତଃ ସବୁଦିନ ହେଉଥିଲା। ଅତିଥି ଅଭ୍ୟାଗତଙ୍କ ଚର୍ଚ୍ଚାରେ ଯାଜପୁର ଜିଲ୍ଲାରେ ଏ ମଠର ଖ୍ୟାତି ରହିଛି। ବିଶେଷ କରି ୰ମହନ୍ତ ନବକିଶୋର ଭାରତୀଙ୍କ ସମୟରେ ମଠରେ ବର୍ଷର ବହୁ ସମୟରେ ସାଂସ୍କୃତିକ କାର୍ଯ୍ୟମାନ ଅନୁଷ୍ଠିତ ହେଉଥିଲା। ସେ ଜଣେ ସଂସ୍କୃତି ପ୍ରେମୀ ତଥା ନିଜେ ଜଣେ କବି ଓ ନାଟ୍ୟକାର ଥିଲେ। ବସନ୍ତ ପଂଚମୀରେ ବସନ୍ତୋତ୍ସବ ପାଳନ ଅବସରରେ ମୁକ୍ତମଂଚ ନାଟକ ନିଜେ ଲେଖି ସେଥିରେ ସେ ଅଭିନୟ



Digitized by PPRACHIN, SOA

ମଧ୍ୟ କରୁଥିଲେ। ଏହି ନାଟକ ସବୁ ମଠ ପରିସରରେ ଅନୁଷ୍ଠିତ ହେଉଥିଲା। ଶରତ ରାହାସରେ କୁଞ୍ଜ ହେଉଥିଲା, ଏବେ ବି ତାହା ଧାରାବାହିକ ଭାବେ ହେଉଛି। ଏଥିରେ ବିଭିନ୍ନ ପ୍ରାନ୍ତରୁ କଳାକାରମାନେ ଆସି ଓଡ଼ିଶୀ, ଚମ୍ପୁ, ଛାନ୍ଦ ଇତ୍ୟାଦି ପୁରାତନ ସୃଷ୍ଟି ଆଧାରିତ ଭକ୍ତି ସଂଗୀତ, ଭଜନ, ଜଣାଣ ଇତ୍ୟାଦି ପରିବେଷଣ କରିବା ସହ ମଠ ପରିସର ଜନସମାଗମରେ ଉତ୍ସବମୁଖର ହୋଇ ଉଠେ। ମହନ୍ତ ନବକିଶୋରଙ୍କ ସମୟରେ ମଠର ଉତ୍ତରୋତ୍ତର ଉନ୍ନତି ନିମନ୍ତେ ସେ ଅତ୍ୟନ୍ତ ଯତ୍ନବାନ ହୋଇଥିଲେ।

ପୂର୍ବତନ ତଥା ଦଶମ ମହନ୍ତ ଭାବେ ୰ଶିଶିର କୁମାର ଭାରତୀ ସେମାନଙ୍କଠାରୁ ସଂପୂର୍ଣ୍ଣ ଭିନ୍ନ ଥିଲେ। ସେ ଏକାଧାରରେ ଜଣେ ସୁଶିକ୍ଷିତ, ଶିକ୍ଷକ ତଥା ସଂସ୍କୃତି ପ୍ରେମୀ ଓ ସଂଗଠକ ଭାବରେ ବେଶ୍ ଜଣାଶୁଣା। ସେ ଶିକ୍ଷକତା କରି ପ୍ରଧାନ ଶିକ୍ଷକ ଭାବେ ଖଣ୍ଡିତର ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ତାଙ୍କ ସେବାରୁ ଅବ୍ୟାହତି ନେଇଥିଲେ। ମଠର ପରମ୍ପରା ଥିଲା ଯେ କେହି ମହନ୍ତ ହେବେ ସେ ବ୍ରହ୍ମଚାରୀ ରହିବେ। ମାତ୍ର ସେ ଦାର ଗ୍ରହଣ କରି ଏହି ପରମ୍ପରାକୁ ଭାଂଗି ଦେଇଥିଲେ ମଧ୍ୟ ତାଙ୍କର କୌଣସି ସନ୍ତାନ ଉତ୍ପତ୍ତି ହୋଇନଥିଲା। ଏଠାରେ ଉଲ୍ଲେଖଯୋଗ୍ୟ ଯେ ମଠର ଅଧୀଶ୍ୱର ପୀଠ ଦେବତା ମଦନମୋହନ ଷଡ଼ଭୁଜ। ତାଙ୍କର ଚାରି ହାତରେ ଶଂଖ, ଚକ୍ର, ଗଦା, ପଦ୍ମ ସହ ଅନ୍ୟ ଏକ ହସ୍ତରେ ବଂଶୀ ଶୋଭା ପାଉଥିବା ବେଳେ ଗୋଟିଏ ହସ୍ତରେ ଗିରି ଗୋବର୍ଦ୍ଧନ ଧାରଣ କରିଅଛନ୍ତି। ସେହିପରି ତାଙ୍କ ଚତୁଃପାର୍ଶ୍ୱରେ ଗୋ' ବତ୍ସ ଓ ଗୋପବାଳକମାନେ ପ୍ରତୀୟମାନ। ଚଳନ୍ତି ପ୍ରତିମା ଭାବେ ରାଧାକୃଷ୍ଣଙ୍କର ଦୁଇ ମୂର୍ତ୍ତି ଚନ୍ଦନ ଯାତ୍ରାରେ ଚାପ ଖେଳନ୍ତି ଓ ଦୋଳଯାତ୍ରାରେ ମିଳନମାନଙ୍କରେ ଦୋଳ ବିମାନରେ ବିରାଜମାନ ହୋଇ ଫଗୁ ଖେଳନ୍ତି। ପାର୍ଶ୍ୱଦେବତା ଭାବେ ଏଠାରେ ଏକ ଶିବ ମନ୍ଦିର ଦେଖାଯାଏ, ଏଥିରୁ ଅନୁମାନ କରାଯାଏ। ହରିହର ଉଭୟଙ୍କୁ ସମଦୃଷ୍ଟିରେ ଦେଖୁଥିଲେ ଭାରତୀ ସଂପ୍ରଦାୟ। ଆଉ ମଧ୍ୟ ଅନତି ଦୂରରେ 'ଯଜ୍ଞେଶ୍ୱର ମହାଦେବ' ଓ ଦେବୀ 'ଜାଗୁଳାଈ'ଙ୍କ ମନ୍ଦିର ମଠ ବାଡ଼ିର ନଦୀ କୂଳରେ ଅବସ୍ଥିତ। ମଠ ମାର୍ଫତିରେ ପରିଚାଳିତ 'ମା' ଘାଟମଂଗଳା', 'ମା' ଜଂଜାଳି' (ସାନ ତ୍ରିଲୋଚନପୁର), 'ଗଡ଼ଗଡ଼େଶ୍ୱର' ଓ 'ବାଗେଶ୍ୱରୀ' (ଜଳସରପୁର), 'ରାଧାଗୋବିନ୍ଦ ଜୀଉ' ଏସବୁ ପରିଚାଳନା ଦାୟିତ୍ୱ ମଧ୍ୟ ମଠର ଥିଲା। ଏତଦ୍‌ଭିନ୍ନ ୧୭୦ ବର୍ଷ ଧରି



Digitized by PPRACHIN, SOA

ଖଣ୍ଡିତରେ ଘାଟମଂଗଳା ମିଳନର ପରିଚାଳନା ଦାୟିତ୍ୱ ମଧ୍ୟ ମଠ ଅଧୀନରେ କରାଯାଉଅଛି। ଏହି ମିଳନର ଥାନପତି ଭାବେ ମଦନ ମୋହନ ଅଦ୍ୟାବଧି ବିରାଜମାନ ହୁଅନ୍ତି। ଏହି ମଂଗଳା ମନ୍ଦିରର ଅନେକ କିମ୍ବଦନ୍ତୀ ମଧ୍ୟ ରହିଛି। ପୂର୍ବେ ମଂଗଳାଙ୍କ ମନ୍ଦିର ବର୍ତ୍ତମାନ ଯେଉଁଠି ଅଛି ସେଠାରେ ନଥିଲା। ସେ ମନ୍ଦିର ନଦୀ ଗର୍ଭରେ ଲୀନ ହେବାପରେ ପ୍ରାୟ ସପ୍ତଦଶ ଶତାବ୍ଦୀରେ ପୁନଃ ଏକ ମନ୍ଦିର ସାନ ତ୍ରିଲୋଚନପୁରରେ ପ୍ରତିଷ୍ଠା ହୋଇଥିଲା। ସେହି ମନ୍ଦିର ମଧ୍ୟ ବର୍ତ୍ତମାନ ନାହିଁ। ତାହା ସ୍ଥାନରେ ଏବେ ନୂତନ ମନ୍ଦିର ଗଢ଼ା ଯାଇଛି। ପୂର୍ବ ମନ୍ଦିର ସମ୍ମୁଖରେ ଏକ ଯଜ୍ଞ ମଣ୍ଡପର ଭଗ୍ନାବଶେଷ ଉପରେ ବର୍ତ୍ତମାନ ନୂତନ ଯଜ୍ଞମଣ୍ଡପ ଦଣ୍ଡାୟମାନ। ତତ୍‌ସଂଲଗ୍ନ କ୍ଷେତ୍ରରେ ଏକ୍ ସଦୃଶ୍ୟ ବିଶାଳ କଲ୍ୟାଣ ମଣ୍ଡପ ମଧ୍ୟ ନିର୍ମାଣ ହୋଇଛି। ପୂର୍ବାପେକ୍ଷା ଏ ସ୍ଥାନର ମହିମା ଅଧିକ ପ୍ରସାରିତ ହୋଇଛି। ଏହି ମନ୍ଦିରର ସମ୍ମୁଖ ଭାଗରେ ୧୯୫୬ ମସିହାରୁ ଯାଜପୁର କବାଡ଼ି ଆସୋସିଏସନ ଆନୁକୁଲ୍ୟରେ ସର୍ବଭାରତୀୟ ପୁରୁଷ ଓ ମହିଳା କବାଡ଼ି ଦୀର୍ଘ ଚାରିଦିନ ଯାଏ ଦିବା ରାତ୍ର ଅନୁଷ୍ଠିତ ହୁଏ। ଏହି ଅନୁଷ୍ଠାନର ସଭାପତି ଦାୟିତ୍ୱରେ ନବମ ମହନ୍ତ ୰ନବକିଶୋର ଭାରତୀ ମଧ୍ୟ କିଛିଦିନ ଥିଲେ।

ଏଣୁ ଏଥିରୁ ସ୍ପଷ୍ଟ ଅନୁମାନ କରାଯାଏ। ମଠ ସହ ଗ୍ରାମ ଓ ଗ୍ରାମବାସୀ ଓତଃପ୍ରୋତ ଭାବେ ଜଡ଼ିତ। ମୋର ମନେପଡ଼େ ମୋର ପିତାମହ ନାରାୟଣ ତ୍ରିପାଠୀ ଓ ମାର୍କଣ୍ଡେୟ ତ୍ରିପାଠୀ ମଠ ସହ ସଂପୂର୍ଣ୍ଣ ଭାବେ ସହଯୋଗ କରୁଥିଲେ। ଅନେକ ଥର ପିଲାବେଳେ ମତେ ପିତାମହ ନାରାୟଣଙ୍କ ଅନ୍ତେ ମାର୍କଣ୍ଡେୟ ତ୍ରିପାଠୀ ମତେ କାନ୍ଧରେ ବସାଇ ମଠକୁ ବୁଲାଇ ନିଅନ୍ତି। ସେତେବେଳେ ୰ନବକିଶୋର ଭାରତୀ ମହୋଦୟଙ୍କୁ ମୁଁ ଜେଜ ମହନ୍ତ ଡାକୁଥିଲି। ସେ ମତେ ଶ୍ରଦ୍ଧାରେ କୋଳରେ ବସାଇ ଲଡ୍ଡୁ ଖାଇବାକୁ ଦିଅନ୍ତି। ବହୁ ବିଷୟରେ, ଉଭୟ ବସି ଆଲୋଚନା କରନ୍ତି। ଯେହେତୁ ଉଭୟେ ପାଖାପାଖି ବୟସର ଥିଲେ ତଥାପି ମହନ୍ତ ମହାରାଜ ଜେଜେଙ୍କୁ ନନା ସମ୍ବୋଧନ କରନ୍ତି। ଅନେକ କଥାରେ ପରାମର୍ଶ ମଧ୍ୟ ଲୋଡ଼ନ୍ତି। ଏହା ମୋ' ଅନୁଭୂତିର ଏକ ଦୃଷ୍ଟାନ୍ତ।

ପୂର୍ବ ସମୟରେ ଯେତେବେଳେ ଆମ ସମାଜରେ ଏହି ମଠ ମନ୍ଦିରମାନ ନିର୍ମାଣ ହେଲା, ସେତେବେଳେ ଅନେକ ମହତ ଉଦ୍ଦେଶ୍ୟ ଏଥିରେ ସମାହିତ ହୋଇଥିଲା। ଏହାଦ୍ୱାରା ସାମାଜିକ ଏକତା ଓ ସମନ୍ୱୟ ଭାବ ରକ୍ଷା କରିବାର



Digitized by PPRACHIN, SOA

ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଦ୍ୱିତୀୟରେ ମାନବ ସମାଜରେ ନାନାଦି ସାଂସାରିକ ଚିନ୍ତା ଓ ବ୍ୟାକୁଳ ଦୂର କରିବା ତଥା ଭଗବତ ନାମରେ ଶାନ୍ତି ପ୍ରାପ୍ତି କରିବାର ଏସବୁ ମାଧ୍ୟମ ଅବ୍ୟର୍ଥ ଥିଲା । ବୋଧହୁଏ ସେଥିପାଇଁ ଏହି ଅନୁଷ୍ଠାନ ସହ ସାଂସ୍କୃତିକ କାର୍ଯ୍ୟକ୍ରମକୁ ଯୋଡ଼ା ଯାଇଥିଲା । ଭାଇଚାରାର ମୂଳଦୁଆ ଏସବୁ ଅନୁଷ୍ଠାନରୁ ସୃଷ୍ଟି ହୋଇ ସମାଜରେ ଅନେକ କଳିକତରାଳକୁ ଏଡ଼ାଇ ଦେଇ ହେଉଥିଲା ।

ପରିଶେଷରେ ଏତିକି କହିବି ଯେ ଏହି ମଠ ମନ୍ଦିରମାନ ଭାରତୀୟ ସଂସ୍କୃତିରେ ଗଢ଼ାଯିବାର ଯେଉଁ ଉଦ୍ଦେଶ୍ୟ ଥିଲା ତାହା ଅଧୁନା ସ୍ଲାଣୁ ହୋଇଛି । ଏହାର ମୁଖ୍ୟ କାରଣ ସଂପ୍ରତିକ ସମାଜର ତୁଚ୍ଛ ହୀନ ରାଜନୀତି ମନୁଷ୍ୟ ମଧ୍ୟରୁ ମାନବିକତା ବୋଧ ଧୀରେଧୀରେ ବିଲୁପ୍ତ ହୋଇ ସ୍ୱାର୍ଥ ମଧ୍ୟରେ ବୁଡ଼ିଯାଉଛି । ବିନା ସ୍ୱାର୍ଥରେ କେହି ପଦେ ବଚନ ମୁହଁରୁ ମଧ୍ୟ ବାହାର କରିବାକୁ ଅପ୍ରସ୍ତୁତ । ସେହି ମଦନମୋହନଙ୍କ ଠାରେ ମୋର ପ୍ରାର୍ଥନା ପ୍ରଭୁ ସମସ୍ତଙ୍କୁ ପୁନଃ ମାନବିକତାର ପଥ ପ୍ରଦର୍ଶନ ପୂର୍ବକ ଆଶୀର୍ବାଦ କରନ୍ତୁ ।

ସର୍ବେ ଭବନ୍ତୁ ସୁଖିନଃ ସର୍ବେସନ୍ତୁ ନିରାମୟ ।
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା' କଶ୍ଚିଦ୍ ଦୁଃଖ ଭାଗ୍ ଭବେତ ।
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ.... ।

*ସାନ ତ୍ରିଲୋଚନପୁର, ଖଣ୍ଡିତର, ଯାଜପୁର*
*ସଂପାଦକ, ଯୁଗଜ୍ୟୋତି, କୁଆଖିଆ*







Digitized by PPRACHIN, SOA

# ସ୍ମୃତି ଅର୍ଘ୍ୟ

ଶ୍ରୀ ବିଚିତ୍ରାନନ୍ଦ ଆରଣ



ନର ଦେହ ହୀନ ମୂର୍ତ୍ତିକା ନୁହେଁ
ନାରାୟଣ ତା'ର ଜୀବନ ରସ,
ମହାଚେତନାର ଅଂଶ ସେ ଏକ
ବିକାଶ ପାଇଁ କି ଶରୀରେ 'ବଶ'।

ଏ ମରଣଶୀଳ ସଂସାର ପଥରେ ଚାଲି ଚାଲି ଯିବାବେଳେ କେତେ ଜଣ ଜଣା-ଅଜଣା ସାଥୀ ଆମ୍ଭମାନଙ୍କର ସହିତ ମିଳିତ ହୁଅନ୍ତି। ସେମାନେ ଆମର ଭାଇ ବନ୍ଧୁ, କୁଟୁମ୍ବ, ଆତ୍ମୀୟ ସୋଦର ରକ୍ତ ସଂପର୍କୀୟ, ଅନ୍ୟ କେତେ ଜଣ ପଥ ଚଲା ସାଥୀ। ପଥରେ ଯିବାବେଳେ, ଗପ ସପ ହୋଇ ସମୟ ଅତିବାହିତ କରନ୍ତି। ପଥ ଚଲା କଷ୍ଟ ବାଧେ ନାହିଁ। ଯାହାର ବାଟ ସରିଯାଏ, ସେ ସେହିଠାରେ ରହିଯାଏ। ଅନ୍ୟମାନେ ପୁଣି ଗପସପରେ ମାତି ପଥଚଲା କଷ୍ଟକୁ ନଜର ଦିଅନ୍ତି ନାହିଁ। ସମୟ ସରି ଗଲେ, ନିଜର ନିର୍ଦ୍ଦିଷ୍ଟ ଗନ୍ତବ୍ୟ ସ୍ଥଳ ପାଇଗଲେ ଆଉ ଅଧିକ ନ ଚାଲି ସେହି ସ୍ଥାନରେ ଅଟକି ଯାଆନ୍ତି। ତାଙ୍କର ସେହି ସମୟ ମଧ୍ୟରେ କେତେକ ମନେ ରହନ୍ତି, ଅନ୍ୟ କେତେକ ମନେ ରହନ୍ତି ନାହିଁ। କାରଣ ସମସ୍ତଙ୍କର ଆଚାର ବ୍ୟବହାର ପରସ୍ପରଠାରୁ ଅଲଗା ଥାଏ। କେତେ ଆସିଛନ୍ତି, କେତେକ ଯାଇଛନ୍ତି, କେତେକଙ୍କୁ ଭୁଲି ହୁଏ ନାହିଁ, ଭୁଲିଗଲେ ମଧ୍ୟ ସ୍ମୃତିପଟରେ ଅପସୋରା ହୋଇ ରହିଯାଆନ୍ତି। ସେମାନଙ୍କ ବିୟୋଗରେ ଦୁଃଖ ଆସେ, ଆଖିରୁ ଝରିପଡ଼େ ଅସରା ଲୁହ ଟୋପା।



Digitized by PPRACHIN, SOA

ମନର ଝରକା ଦେଇ ବେଳେବେଳେ ଅତୀତର ସ୍ମୃତି ଝଲସି ଉଠେ। ବିଶେଷ କରି ବାହ୍ୟ ଜୀବନର କେତେକ ଘଟଣା ଅଘଟଣା ଆଜି ଏକ ସ୍ମୃତି ହୋଇ ବେଳେବେଳେ ମୋତେ ଦେଇଥାଏ ଅସୀମ ଆନନ୍ଦ। ବିସ୍ମୟରେ ସମଗ୍ର ସତ୍ତା ଆବୋରି ବସେ, ଆଖିରୁ ଝରାଏ ଲୁହ। ମନେମନେ ମୁଁ ନ ହସି ରହିପାରେନା। ସେଇ କଅଁଳ ମନ ନେଇ ପୁଣି ଫେରିଯିବାକୁ ଅତୀତକୁ। ମୁଁ ଭୁଲିପାରେନା ଅତୀତର ସ୍ମୃତି, ବାଲ୍ୟ ଜୀବନର ଅନେକ କଥା। ଯାହା ସବୁ ମନ ମଧ୍ୟରେ ଗୁନ୍ଥା ହୋଇ ରହିଛି, ରହିବ ମଧ୍ୟ। ଜୀବନର ଆରମ୍ଭ ବିକାଶର ସମାପ୍ତି ଯେମିତି ଅନିର୍ଦ୍ଦିଷ୍ଟ ଅନିୟନ୍ତ୍ରିତ। ବୟସର ମଧ୍ୟାହ୍ନ ଜୀବନର ପାହାନ୍ତି ତାରା ଆଡ଼କୁ ପୁଣିଥରେ ଫେରି ଚାହିଁବାବେଳେ କେତେ ସ୍ମୃତି ସଜଳ ହସ ବିଷାଦମୁଖର ଜିଅନ୍ତା ଜୀବନର ଛବି ସବୁ ଉଙ୍କିମାରେ ମନର ଦର୍ପଣରେ। ଆଜି ମୁଁ କେତେ ବନ୍ଧୁ ଆତ୍ମୀୟ ସୋଦରମାନଙ୍କୁ ମାନସ ପଟରେ ଭୁଲିପାରୁ ନାହିଁ। ସେ ଚାଲି ଯାଇଛନ୍ତି ଅଜଣା ରାଇଜକୁ। ମୋର ଭୁଲିବାର ନାହିଁ ଯେଉଁ କେତେ ଜଣଙ୍କୁ, ସେମାନଙ୍କ ମଧ୍ୟରେ ମୋର ରକ୍ତ ସଂପର୍କୀୟ ମାମୁଁ ପୁଅ ଭାଇ ଖଣ୍ଡିତର ମଠର ମହନ୍ତ, ତଥା ଖଣ୍ଡିତର ହାଇସ୍କୁଲର ପୁରାତନ ଛାତ୍ର ଓ ସେହି ହାଇସ୍କୁଲ ଅବସର ପ୍ରାପ୍ତ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଶିଶିର କୁମାର ଭାରତୀଙ୍କୁ। ସେ ମୋର ସାନୁଜ ଓ ବାଲ୍ୟକାଳର ସ୍କୁଲ ସାଥୀ।

୧୯୬୬ ମସିହା ମୁଁ ଅଷ୍ଟମ ଶ୍ରେଣୀ ପାଶ୍ କରି ଖଣ୍ଡିତରକୁ ଆସିଲି, ସେତେବେଳେ ମୋ' ବଡ଼ ମାମୁଁଙ୍କ ଉଦ୍ୟମରେ ଗୋଟିଏ ନୂଆ ହାଇସ୍କୁଲ ଖୋଲା ହେଲା। ମୋ' ମାଆର ଆର୍ଥିକ ଅବସ୍ଥା ବହୁତ ଖରାପ ଥିଲା। ସେ ଆଉ ପଢ଼ାଇବାକୁ ଅକ୍ଷମ ହେଲେ। ଏହିଠାରେ ରହି ପଢ଼ାଇବା ପାଇଁ ସେ ସ୍ଥିର କରି ମାମୁଁଙ୍କୁ କହିଲେ। ମୁଁ ସାର୍ଟିଫିକେଟ ନେଇ ଆସି ନବମ ଶ୍ରେଣୀରେ ନାମ ଲେଖାଇଲି। ଶିଶିର ସପ୍ତମ ପାଶ କରି ଅଷ୍ଟମରେ ନାମ ଲେଖାଇଲା। ମାମୁଁ ସ୍କୁଲର President ଥିଲେ। ଗ୍ରାମର ବିଶିଷ୍ଟ ବ୍ୟକ୍ତିମାନେ ନିଜ ପିଲାମାନଙ୍କର ଉନ୍ନତି ପାଇଁ Private Schoolରେ ନ ପଢ଼ାଇ ଅନ୍ୟ ସ୍କୁଲରେ ଲେଖାଇଲେ। କିନ୍ତୁ ଆମେ ଦୁଇ ଭାଇ ସେହି ସ୍କୁଲରେ ଏକାଦଶ ଶ୍ରେଣୀ ଯାଏ ପଢ଼ି ମାଟ୍ରିକ ପାଶ କଲୁ।

୧୯୬୯ ମସିହାରେ ମୁଁ ମାଟ୍ରିକ ପାଶ କଲି। ଖଣ୍ଡିତର ହାଇସ୍କୁଲର ପ୍ରଥମ ବ୍ୟାଚ। ତା' ପରବର୍ଷ ଶିଶିର ମଧ୍ୟ ପାଶ କଲା। ଆମେ ଦୁହେଁ ଗୋଟିଏ



Digitized by PPRACHIN, SOA

ଟେବୁଲ ଉଭୟ ପାର୍ଶ୍ୱରେ ବସି ସନ୍ଧ୍ୟା ଓ ସକାଳ ସମୟରେ ପାଠ ପଢୁ। ସେ ଟେବୁଲଟି ଏ ପର୍ଯ୍ୟନ୍ତ ଅଛି ବୋଧହୁଏ। ଯେତେବେଳେ ସେଠାକୁ ଗଲେ ପୂର୍ବ ସ୍ମୃତି ମନେପଡ଼େ। ମୋର ପାରିବାରିକ ସ୍ଥିତି ସ୍ୱଚ୍ଛଳ ନଥିଲା। ପରିବାର ପାଇଁ କିଛି କରିବାକୁ ହେବ ଭାବି, ସେଠାରୁ ପ୍ରତ୍ୟାବର୍ତ୍ତନ କଲି ସ୍ୱଗୃହକୁ। ଭଗବାନ ମଂଗଳମୟ, ସେ ସମସ୍ତଙ୍କର ମଂଗଳ କାମନା କରନ୍ତି। ତାଙ୍କର ବାଛ ବିଚାର ନାହିଁ। ମୋତେ ଗୋଟିଏ M.E. Schoolରୁ ସହକାରୀ ଶିକ୍ଷକ ଚାକିରି ମିଳିଲା। ସେତେବେଳେ କମିଟି ହାତରେ Power ଥିଲା। ମାତ୍ର ଟ. ୮୦ (ଅଶୀ)ରେ ଚାକିର କଲି। ରାତିରେ ପିଲାଙ୍କୁ ଟ୍ୟୁସନ୍ କରେ। ଖାଇବା ଚାକିରି ଦ୍ୱାରା ହୋଇଯାଏ। ଶିଶିର College ରେ B.A. Pass କରି B.Ed ହେଲା। ସେ ପ୍ରଥମେ ମଧୁବନ ହାଇସ୍କୁଲ, ପରେ କୋଳଥଳ ହାଇସ୍କୁଲରେ H.M. ଭାବେ ଓ ଶେଷରେ ଯେଉଁଠି ପାଠ ପଢ଼ା କରିଥିଲେ, ସେହି ଖଣ୍ଡିତର ହାଇସ୍କୁଲରେ ପ୍ରଧାନଶିକ୍ଷକ ହୋଇ ଅବସର ଗ୍ରହଣ କଲା।

ମୋର ଚାକିରି ମଧ୍ୟରେ Direct preachment ହେଲା। ମୁଁ ନିଜକୁ ପ୍ରତିଷ୍ଠିତ କରିବା ପାଇଁ Private ରେ I.A, B.A. ପାଶ କରି Summer course B.Ed.ରେ ମଧ୍ୟ ହେଲା। ମୋର B.Ed. ହେବା ଶୁଣି ସେ ବହୁତ ଖୁସି ହେଲା। ମୁଁ ସହକାରୀ ଶିକ୍ଷକରୁ Promotion ରେ ପ୍ରଧାନଶିକ୍ଷକ ହେଲି। କିଛିଦିନ ପରେ S.I.S ଭାବେ ନିଯୁକ୍ତି ପାଇଲି। ଖଣ୍ଡିତର ଗଲେ ଉଭୟ ବସି ଆଲୋଚନା କରୁ। ଯାହା କରିବାକୁ ଥାଏ ସେ ମୋ' ପାଖରେ ପ୍ରକାଶ କରେ।

ପ୍ରଧାନଶିକ୍ଷକ ଭାବେ ବିଦ୍ୟାଳୟରେ ଥିଲେ ମଧ୍ୟ ସେ ଖଣ୍ଡିତର ମଠରେ ମହନ୍ତ ହୋଇଥିଲା ବଡ଼ମାମୁଁଙ୍କ ମୃତ୍ୟୁପରେ। ତେଣୁ ମହନ୍ତର ଯାହା କରିବାର ଥିଲା ତାହା ସେ ସୁଚାରୁରୂପେ ପ୍ରତିପାଦନ କରୁଥିଲା। ମଠର ଉନ୍ନତି ମା' ମଂଗଳାଙ୍କର ପୁନରୁଦ୍ଧାର, ବାବା ଯଜ୍ଞେଶ୍ୱର ମନ୍ଦିର ନିର୍ମାଣ କର୍ମରେ ସେ ଲାଗିଥିଲା ଓ ତାହା ସେ ସବୁ ପୂର୍ଣ୍ଣାଂଗ କରିଛି। ଶିକ୍ଷକ ଭାବରେ ସେ ଥିଲା ନିୟମର ନିୟାମକ, ଦାୟିତ୍ୱବୋଧର ମାପକାଠି, କର୍ତ୍ତବ୍ୟ ପରାୟଣତାର ଦୃଷ୍ଟାନ୍ତ ଓ ନବ ଚେତନାର ପଥ ପ୍ରଦର୍ଶକ। ସେ ଜଣେ ସୁଦକ୍ଷ କର୍ତ୍ତବ୍ୟପରାୟଣ ବ୍ୟକ୍ତି।

ତା' ବ୍ୟତୀତ ମଠର ପାଳିତ ବାରମାସରେ ତେର ପର୍ବ ମଧ୍ୟ ଠିକ୍



Digitized by PPRACHIN, SOA

ଭାବରେ ସଂପନ୍ନ କରିପାରିଥିଲା। ଏକ ନିର୍ଲିପ୍ତ ସଂସାରୀ ଭାବେ ସର୍ବଦା ମଠ ସମ୍ବନ୍ଧରେ ଚିନ୍ତା କରୁଥିଲା। ଯାହା ନ ହୋଇଛି, ତାହା ଆଗ୍ରହର ସହ ସମାପନ କରୁଥିଲା। ସମୟ ସରିଯାଏ। ସ୍ମୃତି ରହିଯାଏ। ୨୦୨୨ ଅଗଷ୍ଟ ମାସ ୧୨ ତାରିଖରେ ମୁଁ ଖବର ପାଇଲି ଶିଶିର ଦେହ ଭଲ ନାହିଁ। ସେ କଟକ ଯାଇଛି। ମୁଁ ଭାବିଲି ଆଜି ତ ଝୁଲଣ ପୂର୍ଣ୍ଣିମା, ଫେରି ଆସିବ ବୋଧହୁଏ। କାରଣ ପୂର୍ଣ୍ଣିମା ଦିନ ଶ୍ରେଷ୍ଠ ଝୁଲଣ ଉତ୍ସବ। ଏହି ମଠରେ ସବୁ ବର୍ଷ ହୁଏ। ମୋ' ପିଲା ବେଳରୁ ଜାଣିଛି। ତା' କିଛି ସମୟ ପରେ ପୁଣି ଖବର ପାଇଲି ଯେ ଅବସ୍ଥାର ପରିବର୍ତ୍ତନ ହୋଇ ପାରୁ ନାହିଁ। ବରଂ ଖରାପ ଆଡ଼କୁ ଗତି କରୁଛି। ପ୍ରାୟ ସବୁବେଳେ ଏହାକୁ ବୁଝିବାକୁ ଫୋନ୍ କରୁଥିଲି। ହଠାତ୍ ଖବର ପାଇଲି ଯେ ପ୍ରାୟ ସନ୍ଧ୍ୟା ବେଳେ ସେ ଇହଲୀଳା ସମ୍ବରଣ କରି ସାରିଛି। ଅନ୍ୟମାନେ ତା'ର ଶବ ନେଇ ଘରକୁ ଆସୁଛନ୍ତି। ସମ୍ବାଦଟି ସତ୍ୟ ହେଲେ ମଧ୍ୟ ମୁଁ ମନକୁ ହଠାତ୍ ନେଇପାରିଲି ନାହିଁ। ଅଜଣା ଦୁଃଖ ଆସି ପହଞ୍ଚିଲା। ବେନି ଚକ୍ଷୁରୁ ଝରିଗଲା ଦୁଇ ଟୋପା ତତଲା ଲୁହ। ମୋ'ଠାରୁ ଛୋଟ ହୋଇ ସେ ଚାଲିଗଲା, ଏହା ଭାବିବାକୁ ଲାଗିଲି, ରାତ୍ରିଟା କେବଳ ଭାବିବାରେ ବ୍ୟସ୍ତ ରହିଲି।

ତା' ପରଦିନ ପ୍ରବଳ ବର୍ଷା। ଯାଇପାରିଲି ନାହିଁ। ୩ ଦିନପରେ ମୋର ଭଣଜା କୁଲୁକୁ ନେଇ ପହଞ୍ଚିଲି ଖଣ୍ଡିତରରେ। ମୋତେ ଖାଲି ଅନ୍ଧାର ଦେଖାଯାଉଥିଲା। ମୋ' ପାଦଠାରୁ ପୃଥିବୀଟା ଛାଡ଼ି ଯାଉଥିଲା ବୋଲି ବୋଧ ହେଉଥିଲା। ସାହସ ଧରି ପହଞ୍ଚିଲି। କାହାକୁ ପଚାରିବି ? କ'ଣ ପଚାରିବି ? କିଏ ମୋତେ କହିବ ? ଖାଲି ଅସଂଖ୍ୟ ପ୍ରଶ୍ନ ଉଙ୍କି ମାରିଲା ମନରେ ମୋର। ଦେଖିଲି ଅନ୍ୟ ଦୁଇ ଭାଇ ବସନ୍ତ ଓ ଶ୍ରୀମନ୍ତଙ୍କୁ। ତା'ପରେ ଭେଟିବାର ସାହସ ନେଇ ଦେଖିଲି ଭାଇ ବୋହୂ ବାସନ୍ତୀକୁ। ସମସ୍ତଙ୍କ ଆଖିରେ ଜଳ ନାହିଁ। ଶୁଖିଯାଇଛି, ଢଳଢଳ ଛଳଛଳ ଆଖି ସେମାନଙ୍କର। ମୁଁ ତାଙ୍କୁ ଚାହିଁ ଫେରିଲି। କିଏ ବୁଝିବ ମୋ' ବେଦନା। କଚେରଘର ଟେବୁଲକୁ ଟିକେ ଚାହିଁ ଦେଲି। ମନରେ ପଡ଼ିଗଲା ପୁରୁଣା ସ୍ମୃତି। ସମ୍ଭାଳି ପାରିଲିନି କୋହକୁ। ଚାପି ହୋଇ ଚଉକି ଉପରକୁ ଚାଲିଗଲି। ତା'ପରେ ଏକ ମୁହାଁ ହୋଇ Bridge ଆଡ଼କୁ ଚାଲିଲି।

ଏ ଅନିତ୍ୟ ସଂସାରରେ ଜନ୍ମ, ବ୍ୟାଧି, ମୃତ୍ୟୁ ମୁଖରୁ ଅବତାର ପୁରୁଷଙ୍କର ନିସ୍ତାର ନାହିଁ ମୁଁ ଜାଣେ। କିନ୍ତୁ ମନଟା ମାନୁ ନାହିଁ। ମନେପଡ଼ିଯାଏ ପଂକ୍ତିଟିଏ,



Digitized by PPRACHIN, SOA

"ମଉଳିଛି ଫୁଲ ରହିଛି ମହକ ରହିବ କାଳ ଅପାର
ନିରବ ରହିଛି ତୁମ କଣ୍ଠସ୍ୱର ତୁମେ ଯେ ଚିର ଭାସ୍ୱର।

ଏ ମରଣଶୀଳ ଦୁନିଆରେ ଜନ୍ମ ଆଉ ମୃତ୍ୟୁ ହିଁ ଚିରନ୍ତନ ସତ୍ୟ। ଜନ୍ମରେ ଆନନ୍ଦ, ମୃତ୍ୟୁରେ ବିଷାଦ। ଯାହା ସମସ୍ତଙ୍କ ଜୀବନରେ ଘଟେ। ଏଥିରେ ନୂତନତ୍ୱ କିଛି ନାହିଁ। କେବଳ ଏହାକୁ ସାମ୍ନା କରିବାକୁ ହେଲେ। ମୃତ୍ୟୁ ପାଇଁ ସାହସ ଓ ଧୈର୍ଯ୍ୟର କଠିନ ପରୀକ୍ଷାରେ ସମ୍ମୁଖୀନ ହେବାକୁ ପଡ଼ିବ ନିଶ୍ଚୟ।

ଶିଶିର ଚାଲିଗଲା। ଦେଇଗଲା ସମସ୍ତଙ୍କୁ ଆନନ୍ଦ। କାରଣ ଯାହା ସବୁ ନିର୍ମାଣ କରି ଦେଇଗଲା, ତାହା ହୋଇଥାନ୍ତା କି ନାହିଁ। ଯାହାକୁ ଦେଖି ମନର ସୁଖ ଆସିଲା। ତା'ର ନିଷ୍ଠାପରତା, ସତ୍ୟବାଦୀତା, ଧୈର୍ଯ୍ୟ, ସାହସ ଅନ୍ୟମାନଙ୍କ ପାଇଁ ଦେଇଗଲା ପ୍ରେରଣା। ରଖି ଦେଇଗଲା ସ୍ମୃତିର ପାହାଡ଼। ଯେଉଁ ପାହାଡ଼କୁ ଆମ୍ଭେମାନେ ଚଢ଼ି ପାରିବୁ ନାହିଁ। ଏ ସଂସାରରେ କୌଣସି ସ୍ମୃତି ଚିରସ୍ଥାୟୀ ନୁହେଁ। ବରଂ କ୍ଷଣସ୍ଥାୟୀ। ପୃଥିବୀ ଏକ ନିର୍ଦ୍ଦିଷ୍ଟ ଶୃଂଖଳାରେ ଲୟ ବାଦିତାରେ ବୃତ୍ତାକାରରେ ଘୂର୍ଣ୍ଣୟମାନ। ଅସ୍ତିତ୍ୱରେ ଏହା ଧର୍ମ। ଶିଶୁ, କୈଶର, ଯୁବା, ବୃଦ୍ଧାବସ୍ଥା ଆସି ପୁଣି ଚାଲିଯାଏ। ସାଗର କୂଳ ଲଘି ଯାଏ। ପରମୁହୂର୍ତ୍ତରେ ସାଗର ଗର୍ଭକୁ ପ୍ରତ୍ୟାବର୍ତ୍ତନ କରେ ଓ ପୁନଃ ଆଗମନ କରେ। ଏମିତି ଆମର ଜୀବନ। ସବୁ କିଛି ଯିବା ଆସିବା, ଆଗ ପଛ ହୋଇ। ମଣିଷ ଜୀବନ ଅବସ୍ଥା ସ୍ଥିର ନୁହେଁ। ଦୁଃଖ ଆସିପାରେ, ଯନ୍ତ୍ରଣା ଆସିପାରେ, ସମସ୍ୟା ଆସିପାରେ କିନ୍ତୁ ବିଚଳିତ ନହୋଇ ଧୈର୍ଯ୍ୟ ଧରିବା ମାନବର ଧର୍ମ ଅଟେ।

"ଫୁଲଟିଏ ଫୁଟି ଝରିଯାଏ ସିନା ରହିଯାଏ ତା'ର ବାସ
ମହତ ପୁରୁଷ ମୃତ୍ୟୁ ପରେ ତା'ର ରଖି ଦେଇଯାଏ ବାସ।"

ବାସ୍ତବରେ ଶିଶିର ବାସ ଟିକକ ରଖିଯାଇଛି, ସର୍ବଦା ଏହା ରହିଥିବ। ରଖି ଦେଇଛି ତା'ର ନିଷ୍ଠାପରତା। ଧୈର୍ଯ୍ୟ, ବିବେକ ଓ ସ୍ନେହ ସମସ୍ତଙ୍କ ମାନସପଟ୍ଟରେ। ମୋତେ ଯେଭଳି ଭାବରେ ମାନୁଥିଲା, ତାହା କହିହେବନି। କାରଣ ଯାହା କଲେ ଅନ୍ତରକୁ ଟିକେ ପଚାରେ। ସଦା ସର୍ବଦା ହସ ସହ ମୁହଁ। ଫୋନ୍ କଲେ ଭାଇ ନମସ୍କାର, ଆଉ ଶୁଭା ଯାଉନି। ସେ ଚାଲିଗଲେ ମଧ୍ୟ ସବୁବେଳେ ତା' କଣ୍ଠସ୍ୱର ମୋତେ ବାରମ୍ବାର ଶୁଭୁଛି। John Creers ଙ୍କ



Digitized by PPRACHIN, SOA

ଭାଷାରେ, There is no death the starts go down to rise upon shame other shore and bright in heaven jeweled to shine for other more. ଦୁଃଖରେ, ସୁଖରେ ସମଭାବାପନ୍ନ ହୋଇ ରହିବା ପ୍ରକୃତ ମଣିଷର ଚିନ୍ତାଧାରା । ମୁଁ ସେହି ଠାକୁରଙ୍କୁ ପ୍ରାର୍ଥନା କରୁଛି ତା'ର ଭାଇମାନଙ୍କୁ, ଦୁଃଖିନୀ ପତ୍ନୀକୁ ସାହସ ପ୍ରଦାନ କରି, ଏହାର ମୁକାବିଲା ପାଇଁ ଧୈର୍ଯ୍ୟ ଦିଅନ୍ତୁ, ମନୋବଳ ଦେଇ ସମସ୍ତଙ୍କୁ ବଳ ପ୍ରଦାନ କରନ୍ତୁ । ତାଙ୍କର ପରିବାର ଓ କୁଟୁମ୍ବ ସଦସ୍ୟମାନେ ଚିନ୍ତାରୁ ମୁକ୍ତ ହୋଇ ନିଜକୁ ଶ୍ରୀ ଶ୍ରୀ ଠାକୁରଙ୍କ ଚରଣରେ ସମର୍ପଣ କରନ୍ତୁ ।

"ଯେ ପ୍ରଭୁ ଦେଲା ଏତେ ଦୁଃଖ, ସେ ପ୍ରଭୁ ଶରଣ ରକ୍ଷକ ।"

ହେ ଅଜଣା ରାଇଜର ସାନୁଜ ମୋର ! ଅଫେରା ରାଇଜର ନିତ୍ୟବାସୀ । ମୋର ଗୋଟିଏ ଛୋଟ କଥାକୁ ମାନି ଯେଉଁଠି ଥାଅ ସୁଖରେ ଥାଅ । ମୋତେ ଟିକେ ମନେପକାଇବ କାରଣ ଅର୍ଦ୍ଧ ବୟସ ସାଥୀରେ ଚଳିଛନ୍ତି, ଭୁଲିନାହିଁ । ମୁଁ ମଧ୍ୟ ସେହି ସମୟକୁ ଅପେକ୍ଷା କରିଛି, ଯେପରିକି ତୁମ୍ ପାଖକୁ ଯିବାକୁ କେତେ ସମୟ ଅଛି । ମୁଁ ଆଜି ଦୁଃଖରେ ଲେଖୁଛି ଓ ସ୍ମରଣ କରୁଛି ନାଟ୍ୟାଚାର୍ଯ୍ୟ ରଘୁନାଥ ପଣ୍ଡାଙ୍କର ପଂକ୍ତିଟିଏ ।

"ତୋ' ପାଇଁ ମୁଁ ଲେଖୁଅଛି ମୋ' ପାଇଁ କେ ଲେଖିବ ।
ତୋ' ପାଇଁ ମୁଁ କାନ୍ଦୁଅଛି ମୋ' ପାଇଁ କେ କାନ୍ଦିବ ।"

ଶେଷରେ ଜଣେ ଇଂରେଜ କବିଙ୍କର ମତରେ, "It you live we live for the lord and it we live for the lord therefore whether we live or die we belong to god." ମରଣ ତା' ପାଇଁ ଅମୃତ ସମାନ ହୋଇଛି ତା'ର କୋଟି ଜନ୍ମର ଶୂନ୍ୟ ଭିକ୍ଷାଝୁଲି ଆମମାନଙ୍କର ଚିରି ଅପାସୋରା ହୋଇ ରହିବ । ସେ ମଧ୍ୟ ମରି ସମସ୍ତ କାର୍ଯ୍ୟ ଦେଖିପାରିବ ? ବିଦାୟ ...... ଭାଇ .... ବିଦାୟ ।

ପ୍ରାକ୍ତନ- **S.I.S.**
**Basudevpur, Bhadraka**





Digitized by PPRACHIN, SOA

# ଶିଶିର ଭାରତୀ ଗୋସ୍ୱାମୀ
## ଏକ ବିରଳ ବ୍ୟକ୍ତିତ୍ୱ



ଅରବିନ୍ଦ ଦାଶ

ଖରସ୍ରୋତା ନଦୀର ଦକ୍ଷିଣ କୂଳ। ବନ୍ୟା ପ୍ରକୋପରୁ ମୁକ୍ତି ନିମନ୍ତେ ନିର୍ମିତ ଏକ ମଜ୍‌ବୁତ ବନ୍ଧ। ବନ୍ଧକୁ ସ୍ପର୍ଶ କରି ଦକ୍ଷିଣ ପାର୍ଶ୍ୱକୁ ଶହଶହ ବର୍ଷ ଧରି ଏକ ଧ୍ୟାନମଗ୍ନ ଋଷି ପରି ବସି ରହିଛି ଏକ ପୁଣ୍ୟପୀଠ, ଶ୍ରୀ ଶ୍ରୀ ମଦନ ମୋହନ ମଠ। ସବୁଜିମା ଭରା ହୃଦଚୋରା ଶାନ୍ତ ସ୍ନିଗ୍ଧ ପରିବେଶ। ସଂସାର ଜଂଜାଳ ସାହସ କରିପାରେନା ତା'ର ପରିସୀମା ସ୍ପର୍ଶ କରିବାକୁ। ଦିବ୍ୟ ଶାନ୍ତ ଅନୁଭବ ହୁଏ। ଅବଶ୍ୟ ହାତ ଗଣତି କେତେ ଥର ମୁଁ ସେ ସବୁକୁ ଯାଇଛି। ସେ ସ୍ଥାନର ଦିବ୍ୟତା ଅନୁଭବ କରିଛି। ମଧୁରମୟ ସେ ପରିବେଶର ମଧୁରିମାରେ ଅବଗାହନ କରିଛି। ହୃଦୟକୁ ଦିବ୍ୟଶାନ୍ତିର ପରିତୃପ୍ତି ମିଳିଛି। ମନେପଡ଼େ ପିତୃ ପ୍ରତିମ ଗୁରୁ ଶ୍ରୀଯୁକ୍ତ ସୁଶାନ୍ତ କୁମାର ପଣ୍ଡା ମହୋଦୟଙ୍କ ଆଗ୍ରହ କ୍ରମେ ପବିତ୍ର ଦୋଳପୂର୍ଣ୍ଣିମା ଅବସରରେ ଆୟୋଜିତ ଗୀତା ଯଜ୍ଞ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବାକୁ ଯାଇଥାଏ। ଐତିହ୍ୟ ପରମ୍ପରା ତଥା ସଂସ୍କୃତିକୁ ଉଜ୍ଜୀବିତ ରଖିବା ପାଇଁ ଏକ ଅଦମ୍ୟ ପ୍ରୟାସ। ବହୁତ ଭଲ ଲାଗିଲା କାର୍ଯ୍ୟକ୍ରମ ଠାରେ ଜଣେ ବୟସ୍କ ମଜ୍‌ବୁତ ବପୁ ବିଶିଷ୍ଟ ବ୍ୟକ୍ତି ବିଶେଷ ଅତିଥି ଗୃହକୁ ଆମନ୍ତ୍ରଣ କଲେ। ସ୍ୱଳ୍ପ ସମୟର କଥାବାର୍ତ୍ତା। କାର୍ଯ୍ୟକ୍ରମ ଶେଷ ପରେ ଘରକୁ ବାହୁଡ଼ିବାର ବ୍ୟସ୍ତତା। ତଥାପି ପ୍ରସାଦ ସେବନ ପରବର୍ତ୍ତୀ ସ୍ୱଳ୍ପକାଳୀନ ବିଶ୍ରାମ ଅବକାଶର ସମୁଚ୍ଚୟ ଉପଯୋଗ ହୋଇଥିଲା ସେହି ମହାତ୍ମାଙ୍କ ସହ। ମହାଶୟଙ୍କର ପ୍ରତ୍ୟେକଟି ଶବ୍ଦ ଥିଲା ପ୍ରେରଣାଦାୟୀ, ଯାହା ଏବେ ବି କର୍ଣ୍ଣ ଗହ୍ୱରରେ ଗୁଞ୍ଜରିତ ହୁଏ। ସବିନୟେ ଉପଦେଶାତ୍ମକ ବାର୍ତ୍ତାଗୁଡ଼ିକୁ ଗ୍ରହଣ କରି ସମ୍ମାନ ପୂର୍ବକ ବିଦାୟ ନେବାପାଇଁ ଅନୁମତି ଚାହିଁଲି। ଫେରିବା ସମୟରେ ସାର୍‌ଙ୍କ ମୁହଁରୁ ମହାଶୟଙ୍କ ବିଷୟରେ ସବୁ ଶୁଣିଲି।



Digitized by PPRACHIN, SOA

ସତରେ ମଣିଷ ପରି ମଣିଷଟିଏ। ମଠାଧୀଶ ଶିଶିର କୁମାର ଭାରତୀ ଗୋସ୍ୱାମୀ। କୋମଳ ହୃଦୟ ବାଣୀ ଅମୃତମୟ। ପିତା ନିତ୍ୟାନନ୍ଦ ଭାରତୀ ମାତା ମାଧବୀ ଭାରତୀଙ୍କ ସୁପୁତ୍ର। ସଦ୍ୟ ସ୍ୱାଧୀନ ଭାରତବର୍ଷରେ ୧୯୫୨ ମସିହା ମେ ମାସ ୧୦ ତାରିଖରେ ଧରାବତରଣ କରିଥିଲେ ମହାତ୍ମା ଶିଶିର ଭାରତୀ ମହୋଦୟ। ପୁଲକିତ ହୋଇଉଠିଥିଲା ରସୁଲପୁର ବ୍ଲକ ଅନ୍ତର୍ଗତ ଜଳସରପୁର ମାଟି। ପ୍ରାରମ୍ଭିକ ଜୀବନରେ ବିଭିନ୍ନ ଶିକ୍ଷାନୁଷ୍ଠାନ ଶିକ୍ଷାପ୍ରାପ୍ତି କରି ନିଜକୁ ଜଣେ ଆଦର୍ଶ ଶିକ୍ଷକ ଭାବେ ଗଢ଼ି ତୋଳିପାରିଥିଲେ ମହନ୍ତ ମହୋଦୟ। ୧୯୭୬ ମସିହାରେ ମଧୁବନ ହାଇସ୍କୁଲରେ, ୧୯୭୨ ମସିହାରୁ ୨୦୦୪ ମସିହା ପର୍ଯ୍ୟନ୍ତ ଦୀର୍ଘ ୨୭ ବର୍ଷ ଅଧ୍ୟାପନା କରିବା ପରେ କ୍ଷେତ୍ରପାଳ ହାଇସ୍କୁଲରୁ ସ୍ଥାନାନ୍ତରିତ ହୋଇଥିଲେ ସରକାରଙ୍କ ନିର୍ଦ୍ଦେଶରେ। ପରେ ଦୀର୍ଘ ୬ ବର୍ଷ କାଳ (୨୦୦୪ ମସିହାରୁ ୨୦୧୦ ମସିହା ଯାଏ) ପ୍ରଧାନ ଶିକ୍ଷକ ଭାବେ ଦାୟିତ୍ୱ ନିର୍ବାହ କରି କର୍ମକ୍ଷେତ୍ରରୁ ଅବସର ଗ୍ରହଣ କରିଥିଲେ ନିଜ ଅଂଚଳର ସୁନାମ ଧନ୍ୟ ଶିକ୍ଷାନୁଷ୍ଠାନ ଖଣ୍ଡିତର ଉଚ୍ଚ ବିଦ୍ୟାଳୟରୁ।

ଜଣେ ସେବାବ୍ରତୀ ଶିକ୍ଷକ ଭାବରେ ଅବସ୍ଥାପିତ ଥିବା ସମୟରୁ ହିଁ ସେ ଶ୍ରୀ ଶ୍ରୀ ମଦନ ମୋହନ ମଠର ମଠାଧୀଶ ଭାବେ ଅଭିଷିକ୍ତ ହୋଇ ଦୈବୀ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ। ୧୯୯୧ ମସିହା ମାର୍ଚ୍ଚ ୮ ତାରିଖରୁ ମଠର ଦାୟିତ୍ୱ ଜୀବନର ଶେଷ ନିଃଶ୍ୱାସ ତ୍ୟାଗ କଲା ଯାଏ ଅତି ସୁନ୍ଦର ଭାବରେ ତ୍ୟାଗୀବ୍ରତ ସମର୍ପଣ ମନରେ ସଂପାଦନ କରିଛନ୍ତି। ଶିକ୍ଷକତା ତଥା ମଠାଧୀଶ ପରି ଗୁରୁ ଦାୟିତ୍ୱ ବହନ କରି ମଧ୍ୟ ଅନେକ ସାଂଗଠନିକ କାର୍ଯ୍ୟରେ ନିଜକୁ ଲିପ୍ତ କରିଥିଲେ ମହନ୍ତ ଗୋସ୍ୱାମୀ। ବିଭିନ୍ନ ମନ୍ଦିରର ମୁଖ୍ୟ କର୍ମକର୍ତ୍ତା, ତତ୍ତ୍ୱାବଧାରକ ଭାବେ ଦାୟିତ୍ୱ ନିର୍ବାହ କରିଥିଲେ ମହାଶୟ। ଦୋଳ ଉତ୍ସବ, ରଥଯାତ୍ରା ପରିଚାଳନା, ସତ୍ୟସାଇ ସେବା ସଂଗଠନରେ ନିଜକୁ ଜଡ଼ିତ ରଖିବା ପରେ ମଧ୍ୟ ଯୁବ ସମାଜ ପାଇଁ ପ୍ରେରଣା ପ୍ରଦୀପ ସାଜିଥିଲେ ଯାଜପୁର କବାଡ଼ି ଆସୋସିଏସନର ଦାୟିତ୍ୱ ନେଇ। ଦଶନାମୀ ଗୋସ୍ୱାମୀ ବ୍ରାହ୍ମଣଙ୍କ ଉପନୟନ ସମୟରେ ଦୀକ୍ଷାକରଣ କାର୍ଯ୍ୟ ଉତ୍ତମ ଭାବେ ସଂପାଦନା କରୁଥିଲେ ମହନ୍ତ ମହାତ୍ମା। 'ଶ୍ରୀ ଶ୍ରୀ ମଦନ ମୋହନ ଜୀଉ ମଠ, ଖଣ୍ଡିତର ଐତିହ୍ୟ ଓ ସଂସ୍କୃତି' ପୁସ୍ତକର ପ୍ରକାଶକ ଅଟନ୍ତି ମହାଶୟ। ବିଶେଷ କରି ୨୦୧୦ମସିହାରୁ ମଠ ପରିସରରେ ସେ



Digitized by PPRACHIN, SOA

ଆରମ୍ଭ କରିଥିବା ଗୀତାଯଜ୍ଞ ସହ ନିଜକୁ ସାମିଲ କରିପାରିଥିବାରୁ ମହାତ୍ମାଙ୍କର ଦିବ୍ୟ ଚୁମ୍ବକୀୟ ସ୍ପର୍ଶ ପ୍ରାପ୍ତ କରିପାରିଥିବାରୁ ମୁଁ ନିଜକୁ ଧନ୍ୟ ମନେ କରେ। ଦ୍ୱାଦଶ ବର୍ଷ ପୂର୍ତ୍ତି ଅବସରରେ ଗୀତାପ୍ରେମୀମାନଙ୍କୁ ସମ୍ମାନିତ କରାଯାଇଥିଲା। ସେ ସମୟରେ ମହନ୍ତ ମହାତ୍ମାଙ୍କର ଅନୁପସ୍ଥିତ ଅନୁଭବ ହୋଇଥିଲା। ଯଦି ସେ ଥାଆନ୍ତେ କେତେ ଖୁସି ନ ହୋଇଥାନ୍ତେ ସତେ ! ତାଙ୍କର ଏହି ଦିବ୍ୟ କାର୍ଯ୍ୟ ଗୀତା ମାତାଙ୍କର ପୂଜା ଅର୍ଚ୍ଚନା ସହିତ ସମାଜରେ କିପରି ଭାବେ ସୁଦୂରପ୍ରସାରୀ ହେବ, ସାଧାରଣ ମଣିଷଟିଏ ଗୀତାମାତାଙ୍କ ଆଶିଷକୁ ହୃଦୟରେ ବହନ କରି ନିଜ ଜୀବନକୁ ସାର୍ଥକ କରିବା ସହିତ ସମାଜକୁ ପରିପୁଷ୍ଟ କରିବ ଏହା ଥିଲା ମହନ୍ତ ଶିଶିର ଭାରତୀ ଗୋସ୍ୱାମୀଙ୍କର ମନୋବାଞ୍ଛା। କ୍ରାନ୍ତିର ମାସ ଅଗଷ୍ଟ ମାସ। ବାର ତାରିଖ, ୨୦୨୨ ମସିହା। ସମାଜରେ ଆଧ୍ୟାତ୍ମ ପରିବେଶର କ୍ରାନ୍ତି ସୃଷ୍ଟିକାରୀ, ସମାଜର ଜଣେ ସଂକ୍ରାନ୍ତି ପୁରୁଷ ଚିରଦିନ ପାଇଁ ଇହଲୀଳା ସମ୍ବରଣ କରିଥିଲେ। ଏଭଳି ଜୀବନ, ଏଭଳି ବ୍ୟକ୍ତିତ୍ୱ ବିରଳ ନିଶ୍ଚୟ। ଏହି ଦିବ୍ୟାତ୍ମାଙ୍କ ଚୁମ୍ବକୀୟ ସ୍ପର୍ଶ ନିଶ୍ଚିତ ଭାବେ ଉଦ୍‌ବୁଦ୍ଧ କରିବ ସମାଜର ସବୁ ଶ୍ରେଣୀର ବ୍ୟକ୍ତିମାନସକୁ। ତାଙ୍କର ପ୍ରଚେଷ୍ଟାସୃତ ସମସ୍ତ ଦିବ୍ୟକାର୍ଯ୍ୟ ପୂର୍ବବତ୍ ଚାଲୁ ରହୁ। ସମାଜରେ ଆଧ୍ୟାତ୍ମିକ ପରିବେଶରେ ଶାନ୍ତି ସୃଷ୍ଟି କରିବା ପାଇଁ ଯୁବପିଢ଼ି ଆଗେଇ ଆସନ୍ତୁ। ଗୀତାମାତାଙ୍କ ଦିବ୍ୟାମୃତ ପାନ କରି ସମାଜ ବଳିଷ୍ଠ ହେଉ, ଏହି ଦିବ୍ୟେଚ୍ଛା ପୋଷଣ କରି ବ୍ରହ୍ମଲୀନ ମହନ୍ତ ଶିଶିର ଭାରତୀ ଗୋସ୍ୱାମୀଙ୍କ ଉଦ୍ଦେଶ୍ୟରେ ଭକ୍ତି ସୁମନ ଅର୍ପଣ କରି ଦିବ୍ୟାତ୍ମାଙ୍କ ପୁନଃପୁନଃ ପ୍ରକଟ ନିମନ୍ତେ ପୁରୁଷୋତ୍ତମ ପ୍ରଭୁ ଶ୍ରୀ ଲୀଳାମୟଙ୍କ ଚରଣ ତଳେ ବିନୀତ ନିବେଦନ କରୁଛି।

*ସିଂହାପୁର*
*ଧର୍ମଶାଳା, ଯାଜପୁର*





Digitized by PPRACHIN, SOA

# ସଫଳ ସଂଗ୍ରାମୀ

ସୁନନ୍ଦ କୁମାର ରାଉତ

ଚାର୍ଲସ ଡାରଉଇନ୍‌ଙ୍କ ବିବର୍ତ୍ତନ ବାଦ କୁହେ "Struggle for existence and survival of the fittest." ଜୀବନଟା ଗୋଟେ ସଂଗ୍ରାମ। ପ୍ରତ୍ୟେକ ସଜୀବ ପ୍ରାଣୀ ବା ଉଦ୍ଭିଦ ବଂଚିବା ପାଇଁ ଓ ନିଜ ସ୍ଥିତାବସ୍ଥାକୁ ବଜାୟ ରଖିବା ପାଇଁ ପ୍ରତି ମୁହୂର୍ତ୍ତରେ ପ୍ରତିଯୋଗିତାର ସାମ୍ନା କରିଥାନ୍ତି। ସଫଳତା ସେହିମାନଙ୍କ ପାଖକୁ ଆସେ, ଯେଉଁମାନେ ପ୍ରତିବନ୍ଧକକୁ ଏଡ଼େଇ ଆଗକୁ ଅଗ୍ରସର ହୁଅନ୍ତି ଓ ଯେଉଁମାନେ ଅନ୍ୟର ନିନ୍ଦାରେ ବିବ୍ରତ ହୁଅନ୍ତି ନାହିଁ କିମ୍ବା ଅନ୍ୟର ପ୍ରଶଂସାରେ ଆହ୍ଲାଦିତ ହୁଅନ୍ତି ନାହିଁ। ପ୍ରତ୍ୟେକ ମଣିଷ ସ୍ୱକୀୟ ଢାଞ୍ଚାରେ ଜୀବନଚର୍ଯ୍ୟା କରିବାକୁ ଚାହିଁଲା ବେଳେ ନିଜର ତତ୍ତ୍ୱ ସହ ସମସ୍ତେ ଏକମତ ହୋଇ ପାରନ୍ତି ନାହିଁ। ସେହିଠାରୁ ଆରମ୍ଭ ହୁଏ ଅସହିଷ୍ଣୁତା, ଶତ୍ରୁତା, ମତଭେଦ, ମନୋମାଳିନ, ଦ୍ୱନ୍ଦ୍ୱ ଇତ୍ୟାଦ........। କିନ୍ତୁ ଯିଏ ନିଜ ନିଷ୍ପତ୍ତିରେ ଅଚଳ, ଅଟଳ ସେ ସଫଳତା ପାହଚ ଅତିକ୍ରମ କରିଚାଲେ। ଶ୍ରୀଯୁକ୍ତ ଶିଶିର କୁମାର ଭାରତୀ ସେମାନଙ୍କ ମଧ୍ୟରୁ ଜଣେ।

ନିଜର ଶିକ୍ଷା ସମାପ୍ତ ପରେ ଚାହିଁଥିଲେ ମଠର ମହନ୍ତ ଭାବରେ ଐଶ୍ୱର୍ଯ୍ୟ ଭୋଗ କରିପାରିଥାନ୍ତେ, କିନ୍ତୁ ନିଜେ କିଛି କରିବାର ଆକାଂକ୍ଷା ତାଙ୍କୁ ଟାଣି ନେଇଥିଲା ଶିକ୍ଷକତା ବୃତ୍ତି ପ୍ରତି। ଚାକିରି ଆରମ୍ଭ କରନ୍ତି ମଧୁବନ ଉଚ୍ଚବିଦ୍ୟାଳୟରୁ। ନିଜର ପଦବୀକୁ ନେଇ ଖୁସି ରହି ପାରିଲେ ନାହିଁ ବେଶିଦିନ। ଉଚ୍ଚ ଅଭିଳାଷତାକୁ ଆକର୍ଷିତ କଲା କ୍ଷେତ୍ରପାଳ ଉଚ୍ଚ ବିଦ୍ୟାଳୟରେ ପ୍ରଧାନଶିକ୍ଷକ ପଦ ମଣ୍ଡନ କରିବା ପାଇଁ। ପରିଚାଳନା କମିଟି, ଶିକ୍ଷା ବିଭାଗ, ସରକାର, ଗ୍ରାମବାସୀ, ଶିକ୍ଷକ ଓ କର୍ମଚାରୀ ତଥା ଛାତ୍ରଛାତ୍ରୀ ଓ ଅବିଭାବକମାନଙ୍କ ମଧ୍ୟରେ ଉତ୍ତମ ସମନ୍ୱୟ ରକ୍ଷା କରି ଏକ ଅଣ ଅନୁଦାନ ପ୍ରାପ୍ତ ବିଦ୍ୟାଳୟକୁ ଅନୁଦାନ ପ୍ରାପ୍ତ କରାଇବା ଓ ପରବର୍ତ୍ତୀ ସମୟରେ ସରକାରୀ ବିଦ୍ୟାଳୟରେ ରୂପାନ୍ତରିତ ହେବା ଯେ କେତେ ସଂଗ୍ରାମର ଗାଥା ବହନ କରୁଛି ତାହା ଅନୁଭବୀ ହିଁ କହିପାରେ।

ଭୀମ ଭୋଇଙ୍କର ସେହି ଆପ୍ତବାଣୀ "ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ



Digitized by PPRACHIN, SOA

ଦେଖୁ ଦେଖୁ କେବା ସହୁ। ମୋ' ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ।" ନୀଳକଣ୍ଠ ପରି ସମସ୍ତ ଗରଳ ପାନ କରି। ଅନ୍ୟମାନଙ୍କ ମୁହଁରେ ସେ ହସ ଫୁଟାଇ ପାରିଛନ୍ତି। ଚାକିରିର ଶେଷ କେତେ ବର୍ଷ ଖଣ୍ଡିତର ସରକାରୀ ଉଚ୍ଚ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଭାବେ କାର୍ଯ୍ୟ କରି ନିଜ ମାଟି ମାଆର ସେବା କରିବାର ସୌଭାଗ୍ୟ ବହୁ କମ୍ ଲୋକଙ୍କ ଭାଗ୍ୟରେ ମିଳିଥାଏ। ତାଙ୍କର ସ୍ପର୍ଶ ପାଇଥିବା ୩ ଗୋଟି ଉଚ୍ଚ ବିଦ୍ୟାଳୟ ଆମ ଅଂଚଳରେ ଖ୍ୟାତି ଲାଭ କରି ସେମାନଙ୍କର ବିଜୟର ଧ୍ୱଜା ଉଡ଼ାଇ ପାରିଛନ୍ତି।

ସଂଗ୍ରାମର ଅନ୍ତ ନାହିଁ। ବୃତ୍ତିଗତ ଜୀବନ ବ୍ୟତୀତ ତାଙ୍କର ଆଉ ଏକ ସ୍ୱତନ୍ତ୍ର ପରିଚୟ ଥିଲା ମଦନ ମୋହନ ଜୀଉଙ୍କ ମଠାଧୀଶ ଭାବରେ। ମଦନ ମୋହନଙ୍କ ସେ ଥିଲେ ଆଦ୍ୟ ସେବକ ଓ ଉତ୍ତରାଧିକାରୀ ସୂତ୍ରରେ ପାଇଥିଲେ ମହନ୍ତ (ମଠାଧୀଶ) ପଦ। ବୃତ୍ତି ଓ ପ୍ରବୃତ୍ତି ଦୁଇଟିକୁ ଏକକାଳୀନ ସଂଚାଳନ କରିବା ଦୁରୁହ ବ୍ୟାପାର। ସଂଗ୍ରାମୀ କେବେ ହାରେ ନାହିଁ। ସଫଳତାର ସହିତ ଧର୍ମ କାର୍ଯ୍ୟ, ରାଜକାର୍ଯ୍ୟ ଓ ପିତୃକାର୍ଯ୍ୟକୁ ସଂପାଦନ କରିଥିଲେ ସେ। ମଦନମୋହନଙ୍କ ଅଚଳାଚଳ ଭୂସଂପତ୍ତିର ଉତ୍ତରାଧିକାରୀ ଭାବରେ କ୍ଷମତା ଓ ପଦର ଅପବ୍ୟବହାର ନକରି ସମସ୍ତଙ୍କ ସହିତ ଉତ୍ତମ ସଂପର୍କ ରଖି ଜଣେ ପ୍ରଜାବତ୍ସଳ ଜମିଦାରର କାର୍ଯ୍ୟ ସଂପାଦନ କରି ପ୍ରଜାମାନଙ୍କ ହୃଦୟରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲେ।

ଖଣ୍ଡିତର ଗ୍ରାମର ଅଧିଷ୍ଠାତ୍ରୀ ମାଆ ଘାଟମଂଗଳାର ସେ ଥିଲେ ସେବକ। ଗ୍ରାମବାସୀମାନେ ସହଯୋଗ, ଆର୍ଥିକ ସାହାଯ୍ୟ ତଥା ସରକାରୀ ଅନୁଦାନ ହାସଲ କରିବାର ସେ ଥିଲେ ସିଦ୍ଧହସ୍ତ। ମା'ଙ୍କ ପାଇଁ ଆଜି ଏକ ଭବ୍ୟ ଓ ସୁରମ୍ୟ ମନ୍ଦିର ନିର୍ମିତ ହୋଇଛି। କିନ୍ତୁ ମନ୍ଦିର କାର୍ଯ୍ୟ ସଂପୂର୍ଣ୍ଣ ପୂର୍ବରୁ ସେ ଆମ୍ଭମାନଙ୍କୁ ଛାଡ଼ି ଚାଲିଗଲେ। ଦୀର୍ଘଦିନର ସଂଗ୍ରାମରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା। ତାଙ୍କର ଉତ୍ତରପିଢ଼ି ପାଇଁ ସେ ହୋଇ ଯାଇଛନ୍ତି ପ୍ରେରଣାର ଉତ୍ସ। ଗତାନୁଗତିକ ଧାରାରୁ ନିଜକୁ ମୁକ୍ତ କରି ନିଜ ପାଇଁ ସେ ଏକ ନିଆରା ପରିଚୟ ସୃଷ୍ଟି କରିଥିଲେ। ସେଥିପାଇଁ ମୁଁ କହିବି ସେ ଜଣେ ସଫଳ ସଂଗ୍ରାମୀ।

*ପ୍ରଧାନ ଶିକ୍ଷକ*
*ଖଣ୍ଡିତର ସରକାରୀ ଉଚ୍ଚ ବିଦ୍ୟାଳୟ*





Digitized by PPRACHIN, SOA

# ଶିଶିର କୁମାର ଭାରତୀ ଗୋସ୍ୱାମୀଙ୍କ ସଂପର୍କରେ



ବୃନ୍ଦାବନ ପାଣି

ଶ୍ରୀ ଶ୍ରୀ ମଦନମୋହନ ଜୀଉଙ୍କ ମଠ ସମ୍ଭବତଃ ସପ୍ତଦଶ ଶତାବ୍ଦୀରେ ଖରସ୍ରୋତା ନଦୀ ତୀରସ୍ଥ କେଉଟ ଲଗୁଁଆ ଗ୍ରାମ ସୀମାରେ ସ୍ଥାପିତ ହୋଇଥିଲା। ଏହା ଜଗନ୍ନାଥ ସଡ଼କ ଧାରରେ ଅବସ୍ଥିତ। ଉତ୍ତର ଭାରତ, ବଂଗପ୍ରଦେଶ ତଥା ଉତ୍କଳର ପଦଚାରୀ ସାଧୁମାନେ ଶ୍ରୀ କ୍ଷେତ୍ରକୁ ଯିବାବେଳେ ମା' ଘାଟମଂଗଳାଙ୍କ ସମୀପରେ ଥିବା ନଦୀ ଘାଟରେ ଡଂଗା ପାର ହୋଇ ଏହି ମଠରେ ସନ୍ଧ୍ୟା ଆହ୍ନିକ ସମାପନ କରି ରାତ୍ରି ଯାପନ କରୁଥିଲେ। ନଦୀକୂଳରେ ମଠ ଥିବାରୁ ସ୍ନାନ ତର୍ପଣାଦିର ଅସୁବିଧା ନଥିଲା। ସେହି ବୈଷ୍ଣବ ସାଧୁମାନଙ୍କ ପ୍ରଚେଷ୍ଟାରେ ଏଠାରେ ଶ୍ରୀ ଶ୍ରୀ ମଦନମୋନ ଜୀଉଙ୍କ ବିଗ୍ରହ ସ୍ଥାପନ ଓ ପୂଜା ବିଧି ସେବେଠାରୁ ପ୍ରଚଳିତ ହୋଇ ଆସୁଛି। ପରବର୍ତ୍ତୀ କାଳରେ ରାଜା- ଜମିଦାର ଓ ବଦାନ୍ୟ ବ୍ୟକ୍ତିଙ୍କ ଦାନରେ ଶ୍ରୀ ଜୀଉଙ୍କ ନାମରେ ଅନେକ ଭୂସଂପତ୍ତି ଖଞ୍ଜା ଯାଇଛି। ଯାହାର ଆୟରେ ମଠରେ ଅନେକ ଉନ୍ନତିମୂଳକ କାର୍ଯ୍ୟ ହୋଇପାରୁଥିଲା। କିନ୍ତୁ ଏ ବ୍ୟୟବହୁଳ ସମୟରେ ତାହାର ରକ୍ଷଣାବେକ୍ଷଣ ଓ ପରିଚାଳନା ଅତ୍ୟନ୍ତ କଷ୍ଟସାଧ ବୋଲି ଶିଶିରବାବୁ କହୁଥିଲେ। ତେବେ ତାଙ୍କ ଅବର୍ତ୍ତମାନରେ ତାଙ୍କ ସମ୍ବନ୍ଧରେ ଜଣାଥିବା କିଛି କଥା ଉଲ୍ଲେଖ କରୁଛି।

ପିତା ନିତ୍ୟାନନ୍ଦ ଭାରତୀ ଗୋସ୍ୱାମୀ ଓ ମାତା ମାଧବୀ ଭାରତୀଙ୍କ କୋଳମଣ୍ଡନ କରି ତା- ୧୦-୦୫-୧୯୫୨ ମସିହାରେ ଶିଶିର ବାବୁ ଜନ୍ମଗ୍ରହଣ କରିଥିଲେ। ୧୯୪୦ ମସିହାରୁ ନିତ୍ୟାନନ୍ଦ ଭାରତୀଙ୍କ ବଡ଼ଭାଇ ନବକିଶୋର



Digitized by PPRACHIN, SOA

ଭାରତୀ ଗୋସ୍ୱାମୀ ମଠର ମହନ୍ତ ପଦରେ ଅଧିଷ୍ଠିତ ହୋଇ ମଠର ଦାୟିତ୍ୱ ବହନ କରିଥିଲେ। ଜଳସରପୁର, ସାନତ୍ରିଲୋଚନପୁର ଓ ସୁଆଁସାହି ଗ୍ରାମର କିଛି ଅଂଶକୁ ନେଇ ଖଣ୍ଡିତର ମୁଳକ ବୁଝାଯାଏ। ସେ ସମୟରେ ମଠର ମହନ୍ତ ମହାରାଜଙ୍କୁ ସମସ୍ତେ ଏ ଅଂଚଳର ମୁରବି ବୋଲି ମାନୁଥିଲେ। ତାଙ୍କ ସଭାପତିତ୍ୱରେ ୧୯୬୫ ମସିହାରେ ଖଣ୍ଡିତର ସରକାରୀ ଉଚ୍ଚବିଦ୍ୟାଳୟ ସ୍ଥାପନ କରାଯାଇଥିଲା। ତାଙ୍କ ଆଦର ଯତ୍ନରେ ଶିଶିର ବାବୁଙ୍କ ବାଲ୍ୟ ଶିକ୍ଷା ରାଧାଗୋବିନ୍ଦ ପ୍ରାଥମିକ ବିଦ୍ୟାଳୟ, ଜଳସରପୁରରେ ଆରମ୍ଭ ହୋଇଥିଲା। ପରେ ହାଡ଼ିବନ୍ଧୁ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ସପ୍ତମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଖଣ୍ଡିତର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଅଷ୍ଟମରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରି ଉତ୍ତମ ଛାତ୍ର ରୂପେ ସମସ୍ତଙ୍କର ପ୍ରିୟଭାଜନ ହୋଇପାରିଥିଲେ। ବୋର୍ଡ଼ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ଯାଜପୁର N.C Collage ରେ I.A. ଓ B. A. ପାଠପଢ଼ା ସମାପ୍ତ କରିଥିଲେ। ତାହାପରେ କଟକସ୍ଥିତ R.N.Tରେ B.Ed କୋର୍ସ ଶେଷ କରିଥିଲେ। ସେ ସମୟରେ ଏତିକି ଯୋଗ୍ୟତା ଅର୍ଜନ କରିଥିବା ଛାତ୍ର ଗ୍ରାମାଞ୍ଚଳରେ ଖୁବ୍ ବିରଳ।

ଅଳ୍ପ ସମୟ ବ୍ୟବଧାନରେ ମଧୁବନ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଶିଶିରବାବୁ Section postରେ ଶିକ୍ଷକ ରୂପେ ୧୯୭୬ ମସିହାରେ ଯୋଗ ଦେଇଥିଲେ। ମଧୁବନ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ୰ନାରାୟଣ ଚନ୍ଦ୍ର ମଲ୍ଲିକଙ୍କ ପରି ଅନୁଶାସନନିଷ୍ଠ ବ୍ୟକ୍ତିଙ୍କ ଅଧୀନରେ କାର୍ଯ୍ୟ କରିବାରୁ ଶିକ୍ଷା ସମ୍ବନ୍ଧୀୟ ଅନେକ ନୀତିନିୟମ ତାଙ୍କୁ ଭଲ ରୂପେ ଜଣାଥିଲା।

ଶିକ୍ଷକମାନଙ୍କ ସମୟାନୁବର୍ତ୍ତିତାର ଅନେକ ଉଦାହରଣ ସେ ଦେଉଥିଲେ। ଥରେ ନିଜ ବିଷୟରେ କହିଥିଲେ- 'ପାଣି ବାବୁ! ନାରାୟଣ ସାର୍ ମୁଁ ସ୍କୁଲ ଛୁଟିପରେ ଘରକୁ ଫେରିଲୁ। ସେ ଇଚ୍ଛାପୁର ଜଗନ୍ନାଥ ମନ୍ଦିର ପାଖରେ ଘରଭଡ଼ା ନେଇ ରହୁଥିଲେ। ମୁଁ ଖଣ୍ଡିତର ଆସିଲି। ତହିଁ ଆରଦିନ ସ୍କୁଲରେ ଖେଳଛୁଟି ସମୟରେ ସେ ମୋତେ କହିଲେ- ଭାରତୀ ବାବୁ! କାଲି ଆପଣ କେତେବେଳେ ଅଫିସ ଛାଡ଼ିଲେ ମୁଁ ଜାଣିପାରିଲି ନାହିଁ। ମୁଁ ସେ ମହାଶୟଙ୍କର ଏପରି କହିବାର କାରଣ କ'ଣ ବୋଲି ପଚାରିବାରୁ ଶିଶିର ବାବୁ କହିଲେ- ମଲ୍ଲିକ ସାର୍‌ଙ୍କ ଆଗରେ ଶିକ୍ଷକ ଉପସ୍ଥାନ ପୁସ୍ତିକାରେ ସମସ୍ତେ ପ୍ରବେଶ ବେଳେ ଓ ପ୍ରସ୍ଥାନ ବେଳେ



Digitized by PPRACHIN, SOA

ଦସ୍ତଖତ ଓ ସମୟ ଲେଖନ୍ତି। ସେ ଦିନ ପ୍ରସ୍ଥାନ ସମୟ ଲେଖିବାକୁ ମୁଁ ଭୁଲି ଯାଇଥିଲି। ଏଥିରୁ ସେ ସମୟର ଶିକ୍ଷକଙ୍କ କର୍ତ୍ତବ୍ୟପରାୟଣତା ବିଷୟରେ ଜାଣିହୁଏ। ପରବର୍ଷ ମଧୁବନ ହାଇସ୍କୁଲରେ Section ଭାଂଗିଯିବାରୁ ଶିଶିରବାବୁ ଚାକିରି ହରାଇଲେ।

ସେହି ବର୍ଷ କୋଳଥଳଠାରେ ବେଣୁଧର ମହାନ୍ତିଙ୍କ ସଂପାଦକତ୍ୱରେ ନୂତନ ଭାବେ ଏକ ହାଇସ୍କୁଲ ସ୍ଥାପନ କରାଗଲା। ଯାହାର ପ୍ରଥମ ପ୍ରଧାନ ଶିକ୍ଷକ ଭାବରେ ୧୯୭୭ ମସିହାରେ ଶିଶିରବାବୁ ନିଯୁକ୍ତି ପାଇଲେ। ସଂପାଦକ ମହାଶୟ ପ୍ରଧାନଶିକ୍ଷକଙ୍କ ଉପରେ ଅନେକ ଦାୟିତ୍ୱ ନ୍ୟସ୍ତ କରିଥିଲେ। ନୂତନ ବିଦ୍ୟାଳୟର ପରିଚାଳନା କମିଟି ଗଠନ, ଶିକ୍ଷକ ନିଯୁକ୍ତି, ଛାତ୍ରାଭିଭାବକ ସଂପର୍କ, ଗୃହ ନିର୍ମାଣ ଆଦି ଅନେକ କାମରେ ପ୍ରଧାନ ଶିକ୍ଷକଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା। ତାହା ଶିଶିର ବାବୁ ଉତ୍ତମ ରୂପେ ସଂପାଦନ କରିଥିଲେ। ତାଂକ ହାତରେ ଗଢ଼ା କ୍ଷେତ୍ରପାଳ ସରକାରୀ ଉଚ୍ଚ ବିଦ୍ୟାଳୟ ଆଜି ଆମ ବ୍ଲକ୍‌ରେ ଏକ ଅଗ୍ରଣୀ ଶିକ୍ଷାନୁଷ୍ଠାନର ଭୂମିକା ଗ୍ରହଣ କରିଛି।

ଶିଶିର ବାବୁ ପ୍ରଧାନ ଶିକ୍ଷକ ଥିବା ସମୟରେ ସରକାରଙ୍କ ଏକ ଅଧ୍ୟାଦେଶ ବଳରେ ତାଙ୍କ ସହିତ ଓଡ଼ିଶାର ଅନେକ ପ୍ରଧାନ ଶିକ୍ଷକ ନିଜ ପଦବୀ ହରାଇ ଉଚ୍ଚନ୍ୟାୟାଳୟର ଆଶ୍ରୟ ନେଲେ। ନ୍ୟାୟାଳୟରେ ନ୍ୟାୟ ପାଇବାରେ ସଫଳହୋଇ ପୁନର୍ବାର ପ୍ରଧାନ ଶିକ୍ଷକ ପଦରେ କ୍ଷେତ୍ରପାଳ ହାଇସ୍କୁଲକୁ ନ ଫେରି ଖଣ୍ଡିତର ହାଇସ୍କୁଲରେ ଖାଲିଥିବା ପ୍ରଧାନ ଶିକ୍ଷକ ପଦରେ ୨୦୦୪ ମସିହାରେ ଅବସ୍ଥାପିତ ହେଲେ।

ସେତେବେଳେ ମୁଁ ଖଣ୍ଡିତର ହାଇସ୍କୁଲରେ ସଂସ୍କୃତ ଭାଷା- ଶିକ୍ଷକ ଭାବେ କାର୍ଯ୍ୟରତ ଥିଲି। ପ୍ରଧାନଶିକ୍ଷକ ଦାୟିତ୍ୱରେ ଥାଇ ଶିଶିର ବାବୁ ସହକର୍ମୀ ତଥା ଛାତ୍ରଛାତ୍ରୀମାନଙ୍କୁ ଖୁବ୍ ଆଦର କରୁଥିଲେ। ସହକର୍ମୀମାନଙ୍କ ପ୍ରତ୍ୟେକ କଥା ସେ ନିଜେ ଗୁରୁତ୍ୱ ଦେଇ ବୁଝୁଥିଲେ। ନିଜ ଗ୍ରାମର ପିଲାମାନେ କିପରି ଭଲ ପାଠ ପଢ଼ିବେ, ପରୀକ୍ଷାରେ ଦକ୍ଷତା ସହ ଅଧିକ ନମ୍ବର ରଖି ପାଶ୍ କରିବେ, ଖେଳରେ କିମ୍ବା ଅନ୍ୟ କଳାକୃତିରେ କିପରି ସୁନାମ ଅର୍ଜିବେ ସେଥିପାଇଁ ସେ ଯତ୍ନବାନ ଥିଲେ। କୌଣସି ଛାତ୍ର ଦୁଷ୍ଟାମି କଲେ ତାକୁ ଆଦରରେ ବୁଝାଇ ଅଫିସରୁ ବିଦା କରୁଥିଲେ। କାହାକୁ ଦଣ୍ଡ ଦେଉନଥିଲେ। କୌଣସି ସହକର୍ମୀଙ୍କର



Digitized by PPRACHIN, SOA

ଅହିତ ଚିନ୍ତା କରୁନଥିଲେ। ପରିବାରର ମୁଖ୍ୟ ପରି ଅନୁଷ୍ଠାନର ସମସ୍ତ ଶିକ୍ଷକ-ଶିକ୍ଷୟିତ୍ରୀ- ଶିକ୍ଷାକର୍ମୀଙ୍କୁ ଆଦର କରୁଥିଲେ। ତାଙ୍କ ବିଦ୍ୟାଳୟର ସାମଗ୍ରିକ ଉନ୍ନତି ତାଙ୍କର ଧ୍ୟେୟ ଥିଲା। ନିଜେ ପାଠ ପଢ଼ିଥିବା ଶିକ୍ଷାନୁଷ୍ଠାନର ଋଣ ପରିଶୋଧ ପାଇଁ ସେ ଏଠାରେ ପ୍ରଧାନ ଶିକ୍ଷକ ପଦବୀ ଗ୍ରହଣ କରିବାକୁ ଆଗ୍ରହ ପ୍ରକାଶ କରିଥିଲେ ବୋଲି କଥା ପ୍ରସଂଗରେ ମୋତେ କହିଥିଲେ। ତାଂକ ପ୍ରଧାନଶିକ୍ଷକତାରେ ତାହା ସେ ଅନେକାଂଶରେ ପୂରଣ କରିପାରିଛନ୍ତି। ତାଂକ ସମୟରେ ବିଦ୍ୟାଳୟର ନୂତନ ସୌଧ ନିର୍ମାଣ କରାଯାଇଥିଲା। ବିଦ୍ୟାଳୟ ପାଚେରି ଗଢ଼ା ଯାଇଥିଲା। ଖେଳରେ ପ୍ରାଦେଶିକ ସ୍ତରରେ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ଛାତ୍ର-ଛାତ୍ରୀ ବିଦ୍ୟାଳୟର ସୁନାମ ବଢ଼ାଇଥିଲେ। ପରୀକ୍ଷାରେ ଉତ୍ତୀର୍ଣ୍ଣ ହାର ବେଶ୍ ଉତ୍ତମ ଥିଲା। ପାଠଗାରରେ ନୂତନ ବହିମାନ କିଣି ତା'ର କଳେବର ବୃଦ୍ଧି କରିଥିଲେ। ବିଜ୍ଞାନଗାରର ପରୀକ୍ଷା ଉପକରଣମାନ କିଣି ଓ ସଂଗ୍ରହ କରି ରଖିଥିଲେ। ଜଣେ ଆଦର୍ଶ ପ୍ରଧାନ ଶିକ୍ଷକ ଭାବରେ ତା- ୩୦.୦୫.୨୦୧୦ରେ ତାଙ୍କର କାର୍ଯ୍ୟକାଳ ସମାପ୍ତ ହୋଇଥିଲା। ଜଣେ ସରଳ ନିଷ୍ଠାପର ଧର୍ମପ୍ରାଣ ଦରଦୀ ବ୍ୟକ୍ତି ରୂପେ ଏ ଅଂଚଳରେ ସେ ଜଣାଶୁଣା ଥିଲେ।

ଅବସର ସମୟ ପରେ ଶିଶିର ବାବୁ ନିଜର ଆରାଧ୍ୟ ଶ୍ରୀ ଶ୍ରୀ ମଦନମୋହନ ଜୀଉଙ୍କ ନୀତିକାନ୍ତି ସୂଚାରୁରୂପେ ପରିଚାଳନାରେ ଅଧିକ ଧ୍ୟାନ ଦେଲେ। ମଠରେ ପକ୍କାଘରମାନ ତୋଳାଇଲେ। ନିଜ ମଠ ବ୍ୟତୀତ ସେ ମହାଶୟ ଅନେକ ଦେବାଳୟ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ଜଡ଼ିତ ହୋଇ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱମାନ ନିର୍ବାହ କରିଥିଲେ। ମା' ଘାଟ ମଂଗଳା ପରିଚାଳନା କମିଟିର ମୁଖ୍ୟ ଥିଲେ। ଯଜ୍ଞେଶ୍ୱର ମହାଦେବଙ୍କ ମୁଖ୍ୟ କର୍ମକର୍ତ୍ତା ଥିଲେ। ସାନ ତ୍ରିଲୋଚନପୁରର ବ୍ରହ୍ମେଶ୍ୱର ମହାଦେବଙ୍କ ପରିଚାଳନା କମିଟିର ସଦସ୍ୟ ଥିଲେ। ଜଳସରପୁରର ମା' ଜଂଜାଳୀ ଦେବୀ ମନ୍ଦିର, ଖାଙ୍କଡ଼େଶ୍ୱର ମହାଦେବ ତଥା ଓଟିନ୍ଦାର ଜଗଦୀଶ୍ୱର ମହାଦେବଙ୍କ ତତ୍ତ୍ୱାବଧାରକ ଥିଲେ। ଖଣ୍ଡିତରର ଯାଜପୁର କବାଡ଼ି ଅନୁଷ୍ଠାନ, ସତ୍ୟସାଇ ସେବା ସଂଗଠନ ଓ ରଥଯାତ୍ରା ପରିଚାଳନା କମିଟିର ସଦସ୍ୟ ଥିଲେ। ଦୋଳ ମେଳଣ ପରିଚାଳନା କମିଟି ଓ ମା' ମଂଗଳା ମନ୍ଦିର ସମ୍ମୁଖରେ ଅନୁଷ୍ଠିତ ଯଜ୍ଞର ମୁଖ୍ୟ କର୍ମକର୍ତ୍ତା ଥିଲେ। ଶ୍ରୀ ଶ୍ରୀ ମଦନମୋହନ ଜୀଉ, ଖଣ୍ଡିତରର ଐତିହ୍ୟ ଓ ସଂସ୍କୃତି ପୁସ୍ତକର ପ୍ରକାଶକ ଥିଲେ।



Digitized by PPRACHIN, SOA

ଏହିପରି ଭାବରେ ଅନେକ ଅନୁଷ୍ଠାନର ଦାୟିତ୍ୱରେ ଥାଇ ଶ୍ରୀ ଶ୍ରୀ ମଦନମୋହନ ଜୀଉଙ୍କ ମଠର ମହନ୍ତ ଭାବରେ ତା- ୦୮.୦୩.୧୯୯୧ରୁ ସଫଳ ଦାୟିତ୍ୱ ବହନ କରି ଶାରୀରିକ ଅସୁସ୍ଥତା ବଶତଃ ତା- ୧୨.୦୮.୨୦୨୨ରିଖରେ ତାଙ୍କ ଆତ୍ମାର ବ୍ରହ୍ମଲୀନ ଘଟିଥିଲା।

ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ କହିଛନ୍ତି-

"ଦେହିନୋଽସ୍ମିନ୍ ଯଥା ଦେହେ କୌମାର ଯୌବନଂ ଜରା।

ତଥା ଦେହାନ୍ତର ପ୍ରାପ୍ତି ଧୀରସ୍ତତ୍ର ନ ମୁହ୍ୟତି।"

ଆତ୍ମାର କୌମାର, ଯୌବନ ଓ ବାର୍ଦ୍ଧକ୍ୟ ପରି ଦେହାନ୍ତର ଅନ୍ୟ ଏକ ଅବସ୍ଥା। ଏଥିରେ ଜ୍ଞାନୀମାନେ ମ୍ରିୟମାଣ ହୁଅନ୍ତି ନାହିଁ। ତାଙ୍କ ଆତ୍ମାର ବ୍ରହ୍ମଲୀନରେ ଭଗବାନ୍ ତାଙ୍କ ପରିବାର ଓ ଦାୟାଦମାନଙ୍କୁ ଧୈର୍ଯ୍ୟ ଦିଅନ୍ତୁ। ମଠର ଉତ୍ତରୋତ୍ତର ଉନ୍ନତ ହେଉ।

*ସେବା ନିବୃତ୍ତ, ସଂସ୍କୃତ ଶିକ୍ଷକ*
*ଖଣ୍ଡିତର ସରକାରୀ ଉଚ୍ଚ ବିଦ୍ୟାଳୟ*








Digitized by PPRACHIN, SOA

# ଭାରତୀ ପାଇଁ ଭାରତୀ

## ମନମୋହନ ମଲ୍ଲିକ

ବ୍ରାହ୍ମଣୀ ଓ ଖରସ୍ରୋତାର ମଧ୍ୟବର୍ତ୍ତୀ ସ୍ଥାନ କୁଆଖିଆ। ଜାତୀୟ ରାଜପଥ ନମ୍ବର ୧୬ ସ୍ଥାନୀୟ କୁଆଖିଆ ବଜାରକୁ ଦୁଇ ଭାଗ କରି ଉଭୟ ଆଡ଼କୁ ଅର୍ଥାତ୍ ଉତ୍ତର ଦିଗକୁ ଓ ଦକ୍ଷିଣ ଦିଗକୁ ଲମ୍ବ ଲମ୍ବି ଯାଏ କାହିଁ କେଉଁ ସୀମାରେଖାର ସସୀମ କ୍ଷେତ୍ରକୁ। ବଜାରଠାରୁ ଅନ୍ତତଃ ପକ୍ଷେ ୩/୪କି.ମି ଉତ୍ତର ଦିଗକୁ ରାଜପଥ ଦେଇ ଗଲେ ଉତ୍ତର ପଶ୍ଚିମ କୋଣ ଦେଇ ଏକ ବ୍ରିଟିଶ ଗ୍ରାମୀଣ ସଡ଼କ ପଥ ସାମ୍ନାକୁ ଆସେ। ଯେଉଁ ରାସ୍ତାର ଠିକଣା ଖଣ୍ଡିତର ଗ୍ରାମର ମଂଗଳାଘାଟ, ଯାହା କି ଖରସ୍ରୋତା ନଦୀର କୂଳରେ ଅବସ୍ଥିତ। ଏହି ଘାଟ ଦେଇ ଲୋକ ଏ କୂଳ ସେ କୂଳ ହୋଇଥାନ୍ତି। ବ୍ରିଟିଶ ଘାଟ ମାସୁଲ ଆଦାୟ କରିବାକୁ ସେଠାରେ ଜଣେ ବ୍ରିଟିଶ ସାହେବକୁ ନିଯୁକ୍ତ କରିଥିଲେ। ସାହେବ ଏକ ତରାଜ ବଂଶକୁ ଘାଟ ଭଡ଼ାର ପାର ପାଇଁ ସର୍ବଦା ରଖାଇଥିଲେ।

ଯାହା ହେଉନା କାହିଁକି ଆଜି ମୋର ଭାଗ୍ୟ ଯେ ସେହି ବ୍ରିଟିଶ ପୋଲ ଉପରେ ମଟର ସାଇକେଲ ଧରି ଦଣ୍ଡାୟମାନ ହୋଇଛନ୍ତି ବାବୁ ଶିଶିର ଭାରତୀ। ନମସ୍କାଟିଏ ପକାଇ ଛିଡ଼ା ହୋଇଗଲି। ପ୍ରତି ନମସ୍କାରଟିଏ ଜଣାଇ ମୋତେ କହିଲେ ପଳାଇଯିବେ କି ? ମୁଁ ଆପଣଙ୍କ ଉଦ୍ଦେଶ୍ୟରେ ଦୁଇପଦ କଥା ପାଇଁ ଅପେକ୍ଷାରେ ଅଛି। ଉତ୍ତରରେ କହିଲି- ହଉ ତେବେ କ'ଣ କହିବାର କୁହନ୍ତୁ। ଶ୍ଲୋକଟିଏ କହିଲେ-

"ଉଦ୍ଧରେ ଦାତ୍ମନାତ୍ମାନଂ ନାତ୍ମାନ ମବସାଦୟେତ୍
ଆତ୍ମୈବ ହ୍ୟାମେନୋ ବନ୍ଧୁରାତ୍ମୈବ ରିପୁରାତ୍ମନଃ ॥"(ଗୀତା-୬-୫)



Digitized by PPRACHIN, SOA

ଶ୍ଲୋକଟି ଆବୃତ୍ତି ପରେ କହିଲେ ଏ ବିଷୟରେ କିଛି ଆପଣ ଜାଣନ୍ତି ? ଜବାବ ରଖି କହିଲି ଯାହା ଜାଣିଛି ତାହା କହିବି। ନିୟତାତ୍ମାର ଅମୋଘ ବାଣୀ ପବିତ୍ର ଗ୍ରନ୍ଥ ଗୀତାର ବାଣୀ ଓ ପ୍ରଭୁଙ୍କ ମୁଖ ନିଃସୃତ ଅମୃତ ଓ ଅମୂର୍ତ୍ତ ବାଣୀ ସୁହୃଦ। ପ୍ରିୟ- ସଖା, ପ୍ରିୟ ବନ୍ଧୁ, ପ୍ରିୟ ଭଗ୍ନୀପତି ଓ ପ୍ରିୟ ରଥାଙ୍ଗପାଣିଙ୍କ ଉକ୍ତି କୁରୁ ଗୌରବ କୁରୁ ଶ୍ରେଷ୍ଠ ତୃତୀୟ ପାଣ୍ଡବ ଅର୍ଜୁନଙ୍କ ଉଦ୍ଦେଶ୍ୟରେ। ନିଜେ ନିଜ ସଂସାର ସମୁଦ୍ରରୁ ନିଜକୁ ଉଦ୍ଧାର କରିବା ଓ ଅଧୋଗତି ମଧ୍ୟକୁ ନିଜକୁ ନିକ୍ଷେପ ନ କରିବା। କାରଣ ଏ ମନୁଷ୍ୟ ନିଜେ ନିଜର ମିତ୍ର ବା ବନ୍ଧୁ ଅଟେ ଏବଂ ଆପେ ଆପଣାର ଶତ୍ରୁ ଅଟେ।

'ମୋର ମୋର' ଭାବର ଦୁନିଆ। ଠିକ୍ ଭାବରେ ବୁଝି ଏ ଦୁନିଆ 'ମୋର ମୋର'ର ନୁହେଁ। ଏ ଦୁନିଆ ସର୍ବ ନିୟନ୍ତାର। ପ୍ରକୃତରେ ଜଳ, ସ୍ଥଳ, ପାଣି, ପବନ ଓ ଆଲୋକର ଦୁନିଆ। ବାପା, ମାଆର ନୁହେଁ କି ପୁଅ ଝିଅର ନୁହେଁ। ଉଡ଼ନ୍ତା ବୁଡ଼ନ୍ତାର ନୁହେଁ କି ଛାୟା-ଛତ୍ର ଦଣ୍ଡଧରର ନୁହେଁ। ବା ଚାରି 'ପାନି'ର ନୁହେଁ କେତେ ଦିନର ରହଣି। ମୁସାଫିର ଖାନା। ଏଠାକୁ କାହା ଇଂଗିତରେ କ'ଣ ପାଇଁ ଆସିଛନ୍ତି। ପୁନରାୟ ଏଠାରୁ ଚାଲିଯିବା। ଆସିବା-ଯିବାର ସନ୍ଧିସ୍ଥଳ, ସଂଗମ ସ୍ଥାନ। ଟିକିଏ ବିଶ୍ରାମର ପେଣ୍ଠ। ଟିକିଏ ବିଶ୍ରାମ ନେବା ସ୍ଥାନରେ ମୋହ- ମାୟାରୂପୀ ଆକର୍ଷଣ ଭିତରକୁ ଟାଣି ହେବା କାହିଁକି ? ସେଥିରେ ବା କ'ଣ ଅଛି ? ଯାହା ଅଛି ବା ଯାହା ଦେଖୁଛ ତାହା କ୍ଷଣିକ ସୁଖ ପ୍ରାଚୁର୍ଯ୍ୟ ବା ସରସ ସୁନ୍ଦର ମନଭୁଲାଣିଆ ଚମତ୍କାରିତା।

ଏହି ସମୟରେ ଶିଶିର ବାବୁ କହି ଉଠିଲେ, ସେତିକି ଥାଉ ଆଜ୍ଞା, ମୁଁ ଯେଉଁ କଳ୍ପନାରେ ଉବୁଟୁବୁ ହେଉଛି ତାହା କ'ଣ ମୋ' ହସ୍ତଗତ ହେବ ? ମୁଁ ତାଙ୍କ କଥା ରଖି କହିଲି, ଆପଣ ଜଣେ ସାଧାରଣ ବ୍ୟକ୍ତି ନୁହଁନ୍ତି। ଆପଣ ସମାଜର ଜଣେ ଆଦର୍ଶ ବ୍ୟକ୍ତିତ୍ୱ। ଆର୍ଦଶ ଶିକ୍ଷକ, ଆଦର୍ଶ ପ୍ରଧାନ ଶିକ୍ଷକ, ମଦନମୋହନ ଜୀଉଙ୍କ ଯଥାତଥା ସେବକ। ମନଛୁଆଁ ଗୁହାରିଆ। ଶୟନେ ସ୍ୱପନେ ଅଥବା ଜାଗରଣେ କଥା କଥାରେ ଦେଖନ୍ତି ମଦନମୋହନ ଜୀଉଙ୍କୁ। ତାଙ୍କ ଚାର ଉପଚାରରେ ଭେଟି ଦିଅନ୍ତି ଫୁଲ, ଚନ୍ଦନ, ସୁବାସିତ ଜଳ ଓ ଆତ୍ମ ବିଭୋର ଦୁଇ ହସ୍ତଯୋଡ଼ା ନମସ୍କାର। କେତେ ଅନୁନୟ ବିନୟର ଆତ୍ମନିବେଦନ ଜଣାଣ। ତା' ସହିତ ସୁଲୀଳାୟିତ ଚାମର ଚାଳନା। ଗ୍ରାମଦେବତୀ, ମା'



Digitized by PPRACHIN, SOA

ଘାଟମଂଗଳାଙ୍କର ମଂଗଳ ଦାୟାଦ। ପୂଜ୍ୟ ପୂଜାର ଆସ୍ଥାନ ମଣ୍ଡିତ ଗ୍ରାମ ମୁଖିଆ। ପୁନଶ୍ଚ ସତ୍ୟସାଇ ସେବା ସଦନର ପଟପୁରୋଧା। ଏତେ ପରେ ଆପଣ ପୁଣି ମୋତେ ପ୍ରଶ୍ନ କରୁଛନ୍ତି।

ଆପଣ ଯେଉଁ ସତ୍ୟମ୍, ଶିବମ୍ ଓ ସୁନ୍ଦରମ୍‌ଙ୍କୁ ଆଧାର କରି ଦୁନିଆ ବକ୍ଷରେ ଅଛନ୍ତି, ସେହି ମୂଳଧାରା ହିଁ ଆପଣଙ୍କର ମୋର ଓ ଆମ ସମସ୍ତଙ୍କର ହୋଇ ରୁହନ୍ତୁ। ଏତିକି କହିବି। ଆଉ ସେ ଗୋଷ୍ଠୀ ଦେଖି କ'ଣ କହିବି। ଦୁଃଖ ନା ସୁଖ, ନା ଟ୍ରାନସ୍‌ଫର ନା, ପ୍ରମୋସନ। ଆପଣ ପ୍ରଧାନ ଶିକ୍ଷକ ଭାବେ ଆମ ପାଖକୁ ବଦଳି ହୋଇ ଆସିଲେ ଅନେକ କଥାବାର୍ତ୍ତା ହେବା। ବର୍ତ୍ତମାନ ଆଗକୁ ଆଉ କୌଣସି ପ୍ରଶ୍ନ ଜାଣନ୍ତୁ ନାହିଁ, ଘରକୁ ଯିବା। ତାହା ହିଁ ହେଲା, ଉଭୟେ ଘରମୁହାଁ ହେଲୁ।

ଦିନ ଆସିଲା, ଶିଶିରବାବୁ ପ୍ରଧାନ ଶିକ୍ଷକ ଭାବେ ଆମ ସ୍କୁଲକୁ ଆସିଲେ। ଉଭୟେ ସହର୍ଷ ବଦନରେ ଟିକେ କୋଳାକୋଳି ହେଲୁ। ଉଭୟେ ଉଭୟଙ୍କ ନିକଟବର୍ତ୍ତୀ ହେଲୁ। ଏକ ଏକ କରି ଅନେକ ପ୍ରଶ୍ନ ଶୁଣିବାକୁ ହେଉଥିଲା। ପାରୁ ପର୍ଯ୍ୟନ୍ତ ଚେଷ୍ଟା କରୁଥିଲି ତାଙ୍କ ପ୍ରଶ୍ନର ଜବାବ ରଖିବାକୁ। ପାଠପଢ଼ା, ଖୁସି ଗପ ଓ ବଗିଚା ଭ୍ରମଣ ସହିତ ଜ୍ୟୋତିଷ ଚର୍ଚ୍ଚା, ବାସ୍ତୁ ଚର୍ଚ୍ଚା ଓ ହସ୍ତରେଖା ବିଚାର ଆଦି। କେତେବେଳେ ଅଫିସ ମଧ୍ୟରେ ତ କେତେବେଳେ ପୁଷ୍ପବାଟିକାରେ, କେତେବେଳେ ଖୋଲା କୋଠରି ମଧ୍ୟରେ ବସି ଆଲୋଚନା କରୁଥିଲୁ। ପ୍ରାର୍ଥନା ସମୟରେ ପିଲାମାନେ ମୋ' ପାଦ ଛୁଇଁ ନମନ କରିବାକୁ ସେ ଭାରି ପସନ୍ଦ କରନ୍ତି ଏବଂ କୁହନ୍ତି ମୁଁ କାଳେ ବଡ଼ ଭାଗ୍ୟଶାଳୀ ଲୋକ ବୋଲି। ଖେଳ ପଡ଼ିଆରେ ପ୍ରିୟ ସାମଲ ବାବୁଙ୍କୁ ମୁଁ ବେଳେବେଳେ ସାହାଯ୍ୟ କରେ ବୋଲି ସେ ଭାରି ପ୍ରଶଂସା କରନ୍ତି। ମୋର ସବୁ ଶିକ୍ଷକ ଓ ଶିକ୍ଷା କର୍ମଚାରୀ ସହ ଉତ୍ତମ ବୁଝାମଣାକୁ ବି ସେ ଖୁବ୍ ଆଦର କରନ୍ତି।

ଦିନେ ମଦନମୋହନ ଜୀଉଙ୍କୁ ଦର୍ଶନ କରିବା ପାଇଁ ନିମନ୍ତ୍ରଣ କଲେ। ଭାଗିରଥୀ ବାବୁ ଓ ସୁନନ୍ଦ ବାବୁ ସାଥି ହୋଇ ମନ୍ଦିର ଗଲୁ। ସେଠାରେ ଠାକୁରଙ୍କ ପ୍ରସାଦ ଖାଇ ଖୁସିରେ ଫେରିଲୁ। ପୁନରାୟ କେବେ ମନ୍ଦିର ଯିବାପାଇଁ ମଧ୍ୟ ଅନୁରୋଧ କରିଥିଲେ, ହେଲେ ସେ ସୁଯୋଗ ଆଉ ଜୀବନରେ ଆସିନଥିଲା। ତାଙ୍କ ଚାଲି, ହସ ଓ ପିଠି ଥାପୁଡ଼ାଇବା ଆଜି ମୋର ମନେପଡ଼େ। ମନେ



Digitized by PPRACHIN, SOA

ପଢ଼ିଲେ ତାଂକ ଉଦ୍ଦେଶ୍ୟରେ ମୁଣ୍ଡ ମୋର ନଇଁଯାଏ। ହସ ଖୁସିରେ ମଉଜ ମଜ୍‌ଲିସରେ ତାଙ୍କ ସହ ମୋର କେତୋଟି ଦିନ ଧୀରେଧୀରେ ବଢ଼ିବାକୁ ଲାଗିଲା।

ଆସିଲା ସେହିଦିନ, ଯେଉଁଦିନ କି ମୋ' କାନ ଶୁଣିଲା ନିକଟ ଭବିଷ୍ୟତରେ ମୁଁ ବନ୍ଧୁ ଓ ଛାତ୍ର- ଛାତ୍ରୀମାନଙ୍କ ଗ୍ରହଣରୁ ବିଦାୟ ନେବି। ମନରେ ଟିକେ ଦୁଃଖ ଆସିଲା। ଶିଶିର ବାବୁ ମୋର ମନୋଭାବ ଠଉରାଇ ମୋ' ପାଖକୁ ଯାଇ ଭଲ ଭଲ କଥା କହୁଥିଲେ। ଆଉ ଉଦ୍ୟାନ ବା ଖେଳପଡ଼ିଆ ଆଡ଼କୁ ସାଥିରେ ଧରି ବୁଲାଇ ନିଅନ୍ତି। ବେଳେବେଳେ କହନ୍ତି ଆମେ ଆପଣଙ୍କୁ ଭୁଲିଯାଇପାରୁ, ହେଲେ ପିଲାମାନେ ଆପଣଙ୍କୁ ଭୁଲିପାରିବେନି। ପୁନରାୟ ପ୍ରଶ୍ନ କରନ୍ତି ଅନେକ, ଅନେକ ବିଦ୍ୟାଳୟ ପଠନ, ପାଠପଢ଼ା ଓ ଗେଟ ବିଷୟରେ। ମୁଁ କହିରଖେ ବିଦ୍ୟାଳୟର ଶ୍ରୀବୃଦ୍ଧି ନିଶ୍ଚିତ ଘଟିବ। ପୁରୁଣା ବିଦ୍ୟାଳୟ, ଆଂଚଳିକ ବିଦ୍ୟାଳୟ ଏବଂ ମା'ଙ୍କ ବିଦ୍ୟାଳୟ, ନିଶ୍ଚୟ ତା'ର ଅଭିବୃଦ୍ଧି ଘଟିବ। ଅଂଚଳ ଦେଖିବ ପିଲାମାନେ ନଥିବେ ଆଉ ଆପଣମାନେ ବି ଦେଖିବେ।

ମନକୁ ଭୁଲାଇବାର ଦିନ ଆଜି ବାବୁଙ୍କ ମନକୁ ଦୋହଲାଇ ନେଇଛି। କାରଣ ଆଜି ବିଦ୍ୟାଳୟରେ ଶେଷଦିନ ମୋର। ସମୟ ଚାରିଟା ବାଜି ଯାଇଛି। ହେଲେ ପାଦ ଆଗକୁ ଯାଉନି କି ପଛକୁ ଯାଉନାହିଁ। ସମସ୍ତେ ସମସ୍ତଙ୍କୁ ଛାଡ଼ିବାରେ ବ୍ୟସ୍ତ। ଶିଶିର ବାବୁଙ୍କ ଆଖିରେ ଲୁହ ଥିଲା ମୋତେ କହିଲେ, ହଉ ଆପଣ ଚାଲନ୍ତୁ, ଆପଣଙ୍କୁ ଡକାଇ ବିଦାୟ ସଭାର ବ୍ୟବସ୍ଥା କରିବି। ଯାହା ହେଉ ବିଦ୍ୟାଳୟ ମାଟି ଟିକେ ମଥାରେ ମାରି ଆଗକୁ ପଛକୁ ଚାହିଁ ଗୃହ ଅଭିମୁଖେ ଚାଲିଲି।

ଶିଶିରବାବୁ ଖାଲି ମୋର ପ୍ରଧାନ ଶିକ୍ଷକ ନୁହଁନ୍ତି ମୋର ଜଣେ ଘନିଷ୍ଠ ବନ୍ଧୁ ଥିଲେ। ସେ ଦୁନିଆରୁ ବିଦାୟ ନେବା ମୁଁ ଜାଣିନଥିଲି। ଦୀର୍ଘଦିନ ପରେ ଶୁଣିବାକୁ ପାଇ ବଡ଼ ଦୁଃଖ ଅନୁଭବ କଲି। ଶେଷରେ ସୁଶାନ୍ତ ବାବୁଙ୍କ କହିବା ଅନୁଯାୟୀ ତାଙ୍କ ବିଷୟରେ ପଦେ ଲେଖୁଛି।

ସତେ ଭାରତୀ ! ଭାରତୀ ରଥେ ହେଉ ସାରଥି
ମୁକତି ପଥେ ମଥା ଲଗାଇ ଲଭ ମୁକତି।
ସତେ ଭାରତୀ ମୋହନ ରଥେ ହେଲ ସାରଥି
ଚାମର ଚାଳି ମହାତ୍ମ୍ୟ ମୁଖେ ଖେଳିଲେ ହୋଲି।
ସତେ ଭାରତୀ ! ମରଣ ପଥେ ଧରିଣ ଛତି



Digitized by PPRACHIN, SOA

ବିଦାୟ ନେଇ ବିଦାୟୀ ପଣେ ପାଇ ମୁକତି ।
ସତ୍ୟାର୍ଥୀ ରୂପେ ସ୍ଥାନିତ ହୋଇ ହେ ସତ୍ୟାଶ୍ରୟୀ
ସହାସ୍ୟ ମୁଖେ ଭାରତୀ ରଥେ ସାଜ ବିଦାୟୀ ।
ସତେ ଭାରତୀ ସରଗ ପଥେ ନିଅ ଆରତି
ପ୍ରଭୁ ଚରଣେ ମଥା ନୁଆଁଇ କରେ ମିନତି ॥

*ଅବସର ପ୍ରାପ୍ତ ଶିକ୍ଷକ*
*ଖଣ୍ଡିତର ହାଇସ୍କୁଲ, ଖଣ୍ଡିତର, ଯାଜପୁର*





Digitized by PPRACHIN, SOA

# ଅନେକ ମୁହୂର୍ତ୍ତର ସ୍ୱାକ୍ଷର- ଶିଶିର

ବିଜୟ କୁମାର ନାୟକ



ଜନ୍ମ ଥିଲେ ମୃତ୍ୟୁ ହୁଏ, ଏହା ଜୀବନ ଧାରାର ଏକ ଚିରନ୍ତନ ସତ୍ୟ। ତେଣୁ ଭାଗବତରେ ଜଗନ୍ନାଥ ଦାଶ ଲେଖିଛନ୍ତି:

ମର୍ତ୍ତ୍ୟମଣ୍ଡଳେ ଦେହ ବହି।
ଦେବତା ହେଲେ ବି ମରଇ ॥

ଅତଏବ ଜନ୍ମ- ମୃତ୍ୟୁ ଚକ୍ରର ଏକ ଅବିରତ ଧାରା। ଏହା କିନ୍ତୁ ମୃତ୍ୟୁ ନୁହେଁ, ମହତ ଜୀବନ ଧାରାରୁ ରୂପାନ୍ତରିତ ମାତ୍ର। ଜୀବନର ଏକ ଲକ୍ଷ୍ୟ ନିଜେ ନିଜକୁ ଉଦ୍ଧାର କରିବା। ଜୀବାତ୍ମା ମନ ଓ ଇନ୍ଦ୍ରିୟକୁ ଜୟ କରି ପ୍ରଥମ ସୋପାନରେ ଭଲ ମଣିଷ, ଦ୍ୱିତୀୟ ସୋପାନରେ ଦିବ୍ୟ ଦେହଧାରୀ ହୋଇ ଜନ୍ମ ସଂସ୍କାରକୁ ନେଇ ସାଧୁ ଅଥବା ଶିକ୍ଷାବିତ୍ ବା ଜ୍ଞାନୀ ଭାବରେ ପରିଚିତ ହୋଇଥାଏ।

ସେ ନିତ୍ୟାନନ୍ଦ ଭାରତୀ (ପିତା) ଓ ମାଧବୀ ଦେବୀ (ମାତା)ଙ୍କ ଜ୍ୟେଷ୍ଠ ତଥା ସୁଯୋଗ୍ୟ ପୁତ୍ର ଭାବରେ ୧୯୫୧ ମସିହାରେ ଜନ୍ମ ଗ୍ରହଣ କରିଥିଲେ। ତାଙ୍କ ଜନ୍ମସ୍ଥାନ ଜଳସରପୁର, ଖଣ୍ଡିତର। ତାଙ୍କ ଜନ୍ମସ୍ଥାନରୁ ମୋ' ଜନ୍ମସ୍ଥାନ କେତେ ଗଜର ପ୍ରାର୍ଥକ୍ୟ ମାତ୍ର। ଆମ୍ଭେମାନେ ଚାଟଶାଳୀଠାରୁ ସ୍ନାତକ



Digitized by PPRACHIN, SOA

ପର୍ଯ୍ୟନ୍ତ ଏକା ସଂଗରେ ଅଧ୍ୟୟନ କରିଥିଲୁ। ସେ କଳାରେ N.C. Collage ଯାଜପୁରରେ ୧୯୭୪ ମସିହା ପାଶ୍ କରିଥିଲେ। ୧୯୭୭ ମସିହାରେ ତାଙ୍କର ଧର୍ମପତ୍ନୀ ଭାବରେ ସର୍ବଗୁଣସଂପନ୍ନା ଶ୍ରୀମତୀ ବାସନ୍ତି ଭାରତୀଙ୍କ ପାଣି ଗ୍ରହଣ କରିଥିଲେ। ସେ B.Ed. ପାଶ୍ କଲାପରେ ମଧୁବନ ହାଇସ୍କୁଲରେ ଏକବର୍ଷ ଶିକ୍ଷକତ୍ୱା କରିଥିଲେ। ତା'ପରେ କୋଳଥଳ ଗ୍ରାମର କ୍ଷେତ୍ରପାଳ ହାଇସ୍କୁଲ ପ୍ରଧାନଶିକ୍ଷକ ପଦରେ ରହିଥିଲେ। ଶେଷ ପର୍ଯ୍ୟାୟରେ ଖଣ୍ଡିତର ହାଇସ୍କୁଲରେ ପ୍ରଧାନ ଶିକ୍ଷକତା କରି ୨୦୧୦ ମସିହା ଅବସର ଗ୍ରହଣ କରିଥିଲେ।

ଶିକ୍ଷାକ୍ଷେତ୍ର କାର୍ଯ୍ୟରତ ସମୟରେ ୧୯୯୧ ମସିହାରେ ପୂର୍ବତନ ମଠାଧୀଶ ନବକିଶୋର ଭାରତୀଙ୍କ ଦେହାନ୍ତ ପରେ ପରମ୍ପରାନୁଯାୟୀ ମଠାଧୀଶ ଭାବେ ଅଧିଷ୍ଠିତ ହୋଇଥିଲେ। ପୂର୍ବଜନ୍ମର ସଂସ୍କାର ନଥିଲେ କେହି ଜଣେ ସାଧୁ ବା ମଠାଧୀଶ ହୋଇ ନଥାଏ। ସେ ଏକାଧାରରେ ଜଣେ ଉତ୍ତମ ଶିକ୍ଷାବିତ୍ ଓ ମଠାଧୀଶ ଥିଲେ। ପବିତ୍ର ଶିକ୍ଷାଦାନ ସହିତ ଖଣ୍ଡିତର ମଦନମୋହନ ଜୀଉ ମଠାଧୀଶ ଭାବରେ ସୁପରିଚାଳନା କରୁଥିଲେ।

ସେ ମୋର ଜଣେ ସହପାଠୀ ସହିତ ଉତ୍ତମ ବନ୍ଧୁ ଥିଲେ। ବନ୍ଧୁତ୍ୱ ଥିଲେ ମଧ୍ୟ ମନ ଭିତରେ ମାନ ଓ ଅଭିମାନ ଏବଂ ମତାନ୍ତର ଏବଂ ମନାନ୍ତର ରହିଥାଏ। ତାଙ୍କ ସହିତ ମୋର ଶେଷ କଥାବାର୍ତ୍ତା ତା- ୩୦/୦୪/୨୦୨୨ରେ ମା' ଘାଟ ମଂଗଳାଙ୍କ ଯଜ୍ଞ ସମୟରେ ଦୀର୍ଘ ଏକ ଘଣ୍ଟା ହୋଇଥିଲା। ମଠ, ଯଜ୍ଞ ଓ ମନ୍ଦିର ବିଷୟରେ ଆଲୋଚନା କରିଥିଲୁ। ମାନ- ଅଭିମାନ ଏବଂ ମତାନ୍ତର- ମନାନ୍ତରର ଲୁଚକାଳି ସବୁଦିନ ପାଇଁ ଲୁଚିଗଲା। ଚନ୍ଦ୍ରମା ହଜିଗଲା ଗହ୍ମାପୂର୍ଣ୍ଣିମା ତିଥିରେ ଅର୍ଥାତ ଗତ ୨୦୨୨ ମସିହା ଅଗଷ୍ଟ ମାସ ୧୨ ତାରିଖରେ.......। ମଠରେ ଗୀତାଯଜ୍ଞ ଚାଲିଥିବା ସମୟରେ ତାଙ୍କର ଜୀବନ ପ୍ରଦୀପ ଲିଭିଗଲା ସବୁଦିନ ପାଇଁ। ଆଜି ତାଙ୍କର ପ୍ରଥମ ବାର୍ଷିକ ଶ୍ରାଦ୍ଧ ଦିବସରେ ଈଶ୍ୱର ତାଙ୍କର ଆତ୍ମାର ସଦ୍‌ଗତି କରନ୍ତୁ, ଏହା ହିଁ ମୋର ପ୍ରାର୍ଥନା।

*ଅବସରପ୍ରାପ୍ତ ଶିକ୍ଷକ*
*କଳସରପୁର, ଖଣ୍ଡିତର*





Digitized by PPRACHIN, SOA

# ମଦନ ମୋହନ ମଠରେ
# ଗୀତା ପାରାୟଣ

ଶ୍ରୀଯୁକ୍ତ ସମରଜିତ୍ ପ୍ରଧାନ



ଶ୍ରୀମଦ୍ ଭଗବଦ୍ ଗୀତା, ଅତି ସଂକ୍ଷେପରେ ମାନବ ଜୀବନର ଗତି ଏବଂ ପରମଗତି ନିର୍ଦ୍ଧାରଣ କରିଅଛନ୍ତି । ଅତଏବ ଜଂଜାଳଗ୍ରସ୍ତ ତଥା ଉଦ୍‌ବେଳିତ ବ୍ୟକ୍ତିମାନଙ୍କ ପକ୍ଷେ ଅପାର ଶାସ୍ତ୍ର ଅଧ୍ୟୟନ କରି ତହିଁରେ ନିଜର କଲ୍ୟାଣ କାମନା କରିବା ଅତ୍ୟନ୍ତ କଠିନ । ଭଗବତ୍ ଗୀତା ପ୍ରତି କୌଣସି ଉପାୟରେ ଶ୍ରଦ୍ଧା, ଭକ୍ତି, ସୃଷ୍ଟି ହେଲେ ଏବଂ ଅନୁକୂଳ ପରିବେଶ ମିଳିଲେ କେବଳ ପଠନ ପାଠନରେ ସୀମିତ ନ ରହି ପୂର୍ବାଚାର୍ଯ୍ୟମାନଙ୍କର ଭାଷ୍ୟ, ଟୀକା, ତର୍ଜମା ଇତ୍ୟାଦି ମାଧ୍ୟମରେ ତାହାର ମର୍ମାର୍ଥ ଅବବୋଧ କରାଯାଇଥାଏ । ପରବର୍ତ୍ତୀ ଅବସ୍ଥାରେ ଜୀବନ ଯାତ୍ରା ପଥରେ ତାହାର ଉପଯୋଗ ଦ୍ୱାରା ମନୁଷ୍ୟ ଜୀବନର ଯଥାର୍ଥତା, ସାର୍ଥକତା ପ୍ରତିପାଦିତ ହୋଇଥାଏ । ଜଗତ୍‌ଗୁରୁ ଶଙ୍କରାଚାର୍ଯ୍ୟ 'ଗେୟ ଗୀତା ନାମ ସହସ୍ରଂ', 'ଭଗବତ୍ ଗୀତା କିଞ୍ଚିଦ୍ଧିତା' ପ୍ରଭୃତି ଗୀତାର ପ୍ରଶଂସା କରିଅଛନ୍ତି ।

ବ୍ୟକ୍ତିଗତ ଭାବରେ ମୋର ଭଗବତ୍ ଗୀତା ପ୍ରତି ଶ୍ରଦ୍ଧା, ଆନ୍ତରିକତା, ସୃଷ୍ଟି ହେବାରୁ, ସେ ଦିଗରେ ଅଗ୍ରସର ହେବାପାଇଁ ଅବ୍ୟାହତ ଚେଷ୍ଟା ହୋଇ ଚାଲିଛି । ଦୈନିକ ପଠନ, ପାଠନ, ସାପ୍ତାହିକ ସତ୍‌ସଂଗ ଏବଂ ବିଭିନ୍ନ ଧର୍ମାନୁଷ୍ଠାନମାନଙ୍କରେ ଅନୁଷ୍ଠିତ ହେଉଥିବା ଭଗବତ ଗୀତା ପାରାୟଣ, ଯଜ୍ଞ ତଥା ପ୍ରବଚନ ହେଉଥିବା କ୍ଷେତ୍ରରେ ଉପସ୍ଥିତ ହେତୁ ସେଥି ପ୍ରତି ଶ୍ରଦ୍ଧା, ବିଶ୍ୱାସ, ତଥା ଉଦ୍ୟମ ଆନନ୍ଦର କାରକ ହୋଇଛି ।

ସେହି କ୍ରମରେ ଖଣ୍ଡିତର ମଦନମୋହନ ମଠରେ ଦୀର୍ଘଦିନ ଧରି ସଂଚାଳିତ ହେଉଥିବା ପ୍ରତି ପୂର୍ଣ୍ଣିମା ତିଥିରେ ଭଗବତ୍ ଗୀତା ପାରାୟଣ କାର୍ଯ୍ୟକ୍ରମରେ ସୁଶାନ୍ତ ସାରଙ୍କ ସୂଚନା କ୍ରମେ ବହୁବାର ଯୋଗଦେବାର ସୁଯୋଗ ପ୍ରାପ୍ତ ହୋଇଛି । ମଠର ମହନ୍ତ ଶିଶିର କୁମାର ଭାରତୀ ସେହିଦିନମାନଙ୍କରେ ନିମନ୍ତ୍ରିତ ପାରାୟଣୀ ତଥା ଭକ୍ତମାନଙ୍କୁ ଚାହିଁ ବସିଥାଆନ୍ତି । ଆଦର ସମ୍ଭାଷଣ



Digitized by PPRACHIN, SOA

ସହିତ ଆତିଥିୟତା ପ୍ରଦାନ କରନ୍ତି। କାର୍ଯ୍ୟକ୍ରମ ସମାପ୍ତି ପରେ ପ୍ରସାଦ ସେବନ ପାଇଁ ଅନୁରୋଧ ମଧ୍ୟ କରନ୍ତି। 'ମଠର ଐତିହ୍ୟ ଓ ସଂସ୍କୃତି' ପୁସ୍ତକର ପ୍ରକାଶନ ଉତ୍ସବରେ ବହୁ ବିଦ୍ୱାନ ମଣ୍ଡଳୀ ସମାବିଷ୍ଟ ଥିଲେ ଏବଂ ଭଗବତ୍ ଗୀତାର ପ୍ରଚାର ପ୍ରସାର ପାଇଁ ଶ୍ରଦ୍ଧାଳୁ ଛାତ୍ରଛାତ୍ରୀ ଯୁବକମାନଙ୍କୁ ମହାନ ବ୍ୟକ୍ତିଙ୍କ ହସ୍ତରେ ଭଗବତ୍ ଗୀତା ପ୍ରଦାନ କରାଇଥିଲେ।

ପୂର୍ବରୁ ଭଗବତ୍ ଗୀତା ପାରାୟଣୀମାନେ ମଠରେ ଦୀର୍ଘ ୧୨ ବର୍ଷ ଧରି କାର୍ଯ୍ୟକ୍ରମ ସମ୍ଭାଳି ଆସିଥିଲେ। ବୟସାଧିକ୍ୟ କାରଣରୁ କିମ୍ବା ଶ୍ରୀ ଭାରତୀଙ୍କ ବିୟୋଗ ହେତୁ ସେମାନଙ୍କର ମଠରେ ପୂର୍ଣ୍ଣିମା ତିଥିରେ ଉପସ୍ଥିତି ଦେଖାଯାଉ ନାହିଁ। ଉକ୍ତ ତିଥିରେ, ସ୍ଥାନୀୟ ଶ୍ରଦ୍ଧାଳୁମାନଙ୍କ ସହିତ ଆମ୍ଭମାନଙ୍କର ଯୋଗଦାନ ସେହି କାର୍ଯ୍ୟକ୍ରମକୁ ଏ ଯାବତ୍ ଅତୁଟ ରଖିଛି। ଗତ ଫାଲଗୁନ ପୂର୍ଣ୍ଣିମା ଦ୍ୱାଦଶ ବର୍ଷ ପୂର୍ତ୍ତି ଅବକାଶରେ ୧୨ ଜଣ ପ୍ରବୀଣ, ନବୀନ ଗୀତା ପ୍ରେମୀଙ୍କୁ ମଠ ପକ୍ଷରୁ ସମ୍ବର୍ଦ୍ଧିତ କରାଯାଇଥିଲା। ଆଗାମୀ ତାଙ୍କ ପ୍ରଥମ ବାର୍ଷିକ ଶ୍ରାଦ୍ଧ ଉତ୍ସବରେ ଅନ୍ୟାନ୍ୟ କାର୍ଯ୍ୟକ୍ରମ ସହିତ ଶ୍ରୀମଦ୍ ଭଗବତ୍ ଗୀତା ଯଜ୍ଞ ଅନୁଷ୍ଠିତ ହେବାକୁ ସ୍ଥିରୀକୃତ ହୋଇଛି। ଏହା ମଠର ଆଧ୍ୟାତ୍ମିକ ପରଂପରାର ଧାରକ ହେବା ସହିତ ଭକ୍ତମାନଙ୍କର ଯେ ଅଶେଷ କଲ୍ୟାଣ ସାଧନ କରିବ ଏଥିରେ ସଂଦେହ ନାହିଁ।

*ଫୁଲାଡ଼ି*
*ମୋ- ୯୪୩୯୮୭୦୫୮୧*





Digitized by PPRACHIN, SOA

# ପ୍ରିୟବନ୍ଧୁଙ୍କ ସ୍ମୃତି ଉଦ୍ଦେଶ୍ୟରେ

ଶ୍ରୀ ପ୍ରମୋଦ କୁମାର ଦାଶ

ତ୍ରିବିଧା ଭବତି ଶ୍ରଦ୍ଧା ଦେହିନାଂ ସା ସ୍ୱଭାବଜା।
ସାତ୍ତ୍ୱିକୀ ରାଜସୀ ଚୈବ ତାମସୀ ଚେତି ତାଂ ଶୃଣୁ। ୨।
(ଗୀତା- ୧୭/୨)

ଭଗବାନ ଶ୍ରୀକୃଷ୍ଣ ସମଗ୍ର ମାନବ ସମାଜର କଲ୍ୟାଣ ପାଇଁ ମହାଭାରତ ଯୁଦ୍ଧରେ ସଖା ଅର୍ଜୁନଙ୍କୁ ଗୀତା ଉପଦେଶ ପ୍ରଦାନ କରିଛନ୍ତି। ଜୀବ ଅନନ୍ତ ଜନ୍ମର ସାଧନା ଶେଷରେ ଦିବ୍ୟମାନବ ଜୀବନ ଲାଭ କରେ, ମୃତ୍ୟୁପରେ ସ୍ଥୂଳ ଶରୀର ମାଟିରେ ମିଶିଯାଏ କିନ୍ତୁ ସୂକ୍ଷ୍ମ ଶରୀର ପୂର୍ବଜନ୍ମର ଶ୍ରଦ୍ଧା ରହିଥାଏ। ନୂତନ ଜୀବ ଲାଭ କଲେ ପୂର୍ବଜନ୍ମର ସ୍ୱଭାବ ପ୍ରକାଶ ଲାଭ କରେ।

ବଂଧୁ ଶିଶିରବାବୁ ଜଣେ ଅମାୟିକ ବ୍ୟକ୍ତିତ୍ୱ। ତାଙ୍କ ସହିତ ମୋର ଆତ୍ମୀୟତା ବହୁ ନିବିଡ଼। ଠିକ୍ ସୁଦାମ ଓ ମଧୁମଂଗଳ ପରି। ନିଃସ୍ୱାର୍ଥ ପର, ମଧୁର ସଂପର୍କ ବର୍ତ୍ତମାନର ଶିକ୍ଷକ ଓ ୪୦ ବର୍ଷ ତଳର ଶିକ୍ଷକ ମଧ୍ୟରେ ନିଶ୍ଚୟ କିଛିଟା ତାରତମ୍ୟତା ରହିଛି। ତା'ପରେ ମୋର ଭଗବଦ୍ ଗୀତା ଅଧ୍ୟୟନ କେନ୍ଦ୍ର ସହିତ ତାଙ୍କର ସହଯୋଗ ମଧ୍ୟ ଥିଲା। ସବୁବେଳେ କହନ୍ତି ପ୍ରମୋଦ ବାବୁ, ଭାଂଗି ପଡ଼ିବେନି। ପଛକୁ ଫେରିବେନି। ବର୍ତ୍ତମାନ ସମାଜରେ ଭୌତିକ ସୁଖ ପାଇଁ ସମସ୍ତେ ମତୁଆଲା। ଆପଣଙ୍କୁ ଲୋକ ସମାଲୋଚନା କରିବେ, କରନ୍ତୁ, ତଥାପି ଆପଣ ମୋର ଲକ୍ଷ୍ୟ ଏକ। ବାଆକୁ ବତା ପରି ଆମର କର୍ତ୍ତବ୍ୟ ଆମେ କରିଯିବା।

୰ଶିଶିର କୁମାର ଭାରତୀ, ମୋ' ସ୍ୱାମୀଙ୍କର ଜନ୍ମ କେଉଟ ଲଗୁଆଁ ଖଣ୍ଡିତର ଗ୍ରାମରେ। ତା- ୧୦/୦୫/୧୯୫୨ରେ (ପିତା) ସ୍ୱର୍ଗତ ନିତ୍ୟାନନ୍ଦ ଭାରତୀ (ମାତା) ମାଧବୀ ଭାରତୀରଙ୍କର କୋଳମଣ୍ଡନ କରିଥିଲେ। ତୁଳସୀ ଦୁଇ ପତ୍ରରୁ ବାସିଲା ପରି ବାଲ୍ୟକାଳରୁ ଭଜନ, ପ୍ରାର୍ଥନା ଓ ଭଗବତ୍ ସେବା ପାଇଁ ସମୟ ଦେଉଥିଲେ। ରାଧା ଗୋବିନ୍ଦ ପ୍ରାଥମିକ ବିଦ୍ୟାଳରେ ପ୍ରାଥମିକ ଶିକ୍ଷା



Digitized by PPRACHIN, SOA

ଲାଭ କଲାପରେ ୧୯୬୬/୬୭ ଦୁଇବର୍ଷ ହାଡ଼ିବନ୍ଧୁ ବିଦ୍ୟାପୀଠରେ ଅଧ୍ୟୟନ କଲେ। ତା'ପରେ ଖଣ୍ଡିତର ଉଚ୍ଚବିଦ୍ୟାଳୟରୁ ମାଟ୍ରିକ ପାଶ୍ କରି ୧୯୭୦/ ୧୯୭୪ ପର୍ଯ୍ୟନ୍ତ ନରସିଂହ ଚୌଧୁରୀ ମହାବିଦ୍ୟାଳୟରେ ଶିକ୍ଷା ଲାଭ କଲେ। କଲେଜ ଶିକ୍ଷା ଲାଭ ପରେ କଟକର ରାଧାନାଥ ଟ୍ରେନିଂ କଲେଜରେ ଟ୍ରେନିଂ ସଂପୂର୍ଣ୍ଣ କରିଥିଲେ। ୧୯୭୬ ମସିହାରେ ମଧୁବନ ହାଇସ୍କୁଲରେ ଶିକ୍ଷକତା ଆରମ୍ଭ କରିଥିଲେ। ୧୯୭୭ଠାରୁ କ୍ଷେତ୍ରପାଳ ଉଚ୍ଚବିଦ୍ୟାଳୟରେ ଶିକ୍ଷକତା କରି ୨୦୦୪ରେ ଖଣ୍ଡିତର ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା କଲେ। ଜଣେ ଆଦର୍ଶ ଶିକ୍ଷକ ପରି କର୍ତ୍ତବ୍ୟ ପାଳନ କରୁଥିଲେ। ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ନିଜ ଭାଇ ଭଉଣୀ ପରି ସ୍ନେହ କରୁଥିଲେ। ସମସ୍ୟା ଉପୁଜିଲେ ସହକର୍ମୀଙ୍କୁ ମଧୁର ଭାଷାରେ ବୁଝାଇ କାର୍ଯ୍ୟ ଆଗେଇ ନେଉଥିଲେ।

ପୂର୍ବ ଜନ୍ମର ଶ୍ରଦ୍ଧା ପାଇଁ ଭଗବତ୍ ଶ୍ରଦ୍ଧା ବଢ଼ି ବଢ଼ି ଚାଲିଲା। ଶ୍ରୀ ଶ୍ରୀ ମଦନ ମୋହନ ଜୀଉ ମଠର ମହନ୍ତ ନବକିଶୋର ଭାରତୀଙ୍କର ଅନ୍ତ ପରେ ତା- ୦୮.୦୩.୧୯୯୧ ମସିହାରେ ସ୍ୱର୍ଗତ ଶିଶିରବାବୁ ମଠାଧୀଶ ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ ୧୯୯୧ରୁ ୧୨.୦୮.୨୦୨୨ ପର୍ଯ୍ୟନ୍ତ ପ୍ରାୟ ୩୦ ବର୍ଷ ମଠର ଦାୟିତ୍ୱ ବୁଝିଥିଲେ ଏତଦ୍‌ବ୍ୟତୀତ ମା' ଘାଟମଂଗଳା ମନ୍ଦିର, ଖାଙ୍କଡ଼େଶ୍ୱର ମନ୍ଦିର, ଖଣ୍ଡିତର କବାଡ଼ି ଆସୋସିଏସନ୍, ଖଣ୍ଡିତର ମେଳଣ କମିଟି, ସତ୍ୟସାଇ ସେବା ସଂଗଠନର ଦାୟିତ୍ୱ ବହନ କରି ନିଃସ୍ୱାର୍ଥପର ସେବା ଯୋଗାଇଥିଲେ।

ମୁଁ ୧୯୮୦ ମସିହାରେ ମୁଗପାଳ ସରକାରୀ ଉଚ୍ଚବିଦ୍ୟାଳୟରେ ଶିକ୍ଷକତା ଆରମ୍ଭ କଲି। ମଧୁବନ, କ୍ଷେତ୍ରପାଳ ଓ ଖଣ୍ଡିତର ଉଚ୍ଚ ବିଦ୍ୟାଳୟର ବିଭିନ୍ନ ଉତ୍ସବରେ ମୋତେ ନିମନ୍ତ୍ରଣ କରନ୍ତି। ପ୍ରାୟ ଖଣ୍ଡିତର ୫୦ ବର୍ଷ ଜୁବୁଲି, ମଧୁବନ ଜୁବୁଲି ପରେ ଆଉ ଯାଇ ପାରୁନି। ବୟସ ଓ ସ୍ୱାସ୍ଥ୍ୟଗତ କାରଣରୁ ମୋର ସେବା ବନ୍ଦ କରିଛି। ସେଣ୍ଟର ସ୍କୁଲ ଭାବରେ ବହୁ ସମୟରେ ଅନ୍ୟ ଶିକ୍ଷକମାନେ ପିଲାମାନଙ୍କ ଦାୟିତ୍ୱରେ ଆସନ୍ତି। ସେ କିନ୍ତୁ ମଝିରେ ଆସି ପିଲାମାନଙ୍କ କଥା ବୁଝିଯାଆନ୍ତି। ଶିକ୍ଷକତା, ସମାଜସେବା ଓ ଭଗବତ୍ ଶ୍ରଦ୍ଧା ପାଇଁ ସବୁଦିନେ ସଭିଙ୍କର ହୃଦୟରେ ବଂଚି ରହିବେ ॥

**ଜୟ ଜଗନ୍ନାଥ**

*ମୁଗପାଳ, ଯାଜପୁର*





Digitized by PPRACHIN, SOA

# ମହନ୍ତ ମହାରାଜ

## ସିଦ୍ଧାର୍ଥ କୁମାର କର

ବହୁ ପୁରାତନ ଶ୍ରୀ ମଦନମୋହନ ମଠର ମଠାଧୀଶ ତଥା ଆମ୍ଭ ଗ୍ରାମ ଉଚ୍ଚବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀ ଶିଶିର କୁମାର ଭାରତୀ ଗୋସ୍ୱାମୀଙ୍କ ପରଲୋକରେ ଗୋଟେ ସ୍ମରଣିକା ହେବ ଏବଂ କିଛି ଲେଖିବି ଏକଥା ନିଜକୁ ବହୁତ କଷ୍ଟ ଦେଉଛି। ଲେଖିଲାବେଳେ ଆଖିରୁ ଲୁହ ବାହାରୁଛି। କାରଣ ତାଙ୍କ କଥା ମନେପକାଇଲେ ଯାଇ କିଛି ଲେଖି ହେବ। ହଁ ବିଶ୍ୱାସ ନ ହେଲେ ବି ସତ ଯେ ସେ ଚାଲିଯାଇଛନ୍ତି। ସେ ଛାଡ଼ି ଯାଇଛନ୍ତି ବହୁ କୀର୍ତ୍ତି। ପୁରାତନ ମଠକୁ ନୂତନ ଭାବରେ ସ୍ଥାପନ କରିଛନ୍ତି। ମଠର ପୁରୁଣା ଘରଗୁଡ଼ିକୁ ଭାଂଗି ମଠକୁ ସୁନ୍ଦରକରି ଗଢ଼ିଛନ୍ତି। ମଠର ଜମିକୁ ବିଭିନ୍ନ ମୌଜାରୁ ପୁନଃଉଦ୍ଧାର କରିଛନ୍ତି। ଗ୍ରାମର ମା' ଘାଟ ମଂଗଳାଙ୍କ ମନ୍ଦିରକୁ ନୂତନ ଭାବରେ ତିଆରି କରିବାରେ ସେ ଥିଲେ ମୁଖ୍ୟ। ତାଙ୍କ ନେତୃତ୍ୱରେ ମନ୍ଦିର ଏକ ବିରାଟ ମନ୍ଦିର ହୋଇଛି। ଖଣ୍ଡିତର ହାଇସ୍କୁଲ ଓ କୋଳଥଳ ହାଇସ୍କୁଲରେ ପ୍ରଧାନ ଶିକ୍ଷକ ହୋଇ ବହୁ ଛାତ୍ରଛାତ୍ରୀଙ୍କୁ ନିଜ ହାତରେ ମଣିଷ କରି ଯାଇଛନ୍ତି। ଏକାଧାରରେ ଜଣେ ସନ୍ନ୍ୟାସୀ ଓ ପ୍ରଧାନ ଶିକ୍ଷକ ଓ ସମାଜ ସେବକ ସେ ଥିଲେ। ମନେପଡ଼େ ସେ ବହୁ ଦିନ ଧରି ସତ୍ୟସାଇ ସେବା ଅନୁଷ୍ଠାନର ଜଣେ ମୁଖ୍ୟ ବ୍ୟକ୍ତି ହୋଇ ବହୁ କାର୍ଯ୍ୟ କରିଛନ୍ତି। କଥାରେ ଅଛି ରାଜା ହେବ ନଚେତ୍ ମହାରାଜ ହେବ। ସେ ରାଜାର ଚେହେରାରେ ଜଣେ ମାହାରାଜ ଥିଲେ। ଖଣ୍ଡିତର ମେଳଣର ମୁଖ୍ୟ ସେ। ରୀତିରେ ଶ୍ରୀ ମଦନମୋହନ ଦେବଙ୍କ ଚଳନ୍ତି ପ୍ରତିମା ବିମାନରେ ବସି ମେଳଣ ପଡ଼ିଆକୁ ବିଜେ କଲାବେଳେ ସେ ତାଙ୍କ ପ୍ରଭୁଙ୍କ ପାଖେ ପାଖେ ଥାଇ ଆସୁଥିବେ ଆଉ ଅଗଣିତ ଭକ୍ତ ଓ ଗ୍ରାମବାସୀ ତାଙ୍କୁ ଅଭିରରେ ପୋତି ପକାଉଥିବେ। ଆଜି ସେ ଦୃଶ୍ୟ ମନେପଡୁଛି।



Digitized by PPRACHIN, SOA

ଜଣେ ସ୍ୱାଭିମାନୀ ମିଷ୍ଟଭାଷୀ ଓ ପରଉପକାରୀ ସନ୍ନ୍ୟାସୀ ହୋଇ ସେ ତାଙ୍କ ଜନ୍ମକୁ ସାର୍ଥକ କରି ଯାଇଛନ୍ତି ଏ ବିଶ୍ୱରେ। କଥାରେ ଅଛି ମଠକୁ ନେଇ ବାବାଜୀ ନା ବାବାଜୀଙ୍କୁ ନେଇ ମଠ। ହଁ ମୋ: ମତରେ ମଠ ଚଳଚଂଚଳ ହୋଇଥିଲା ବହୁ ପିଢ଼ି ପରେ ଏ ମହନ୍ତଙ୍କ ଗାଦି ଆରୋହଣରେ। ବହୁ ମହନ୍ତ ଯାଇଛନ୍ତି କିନ୍ତୁ ଶିଶିରବାବୁଙ୍କ ମହନ୍ତ ସମୟରେ ଜନସାଧାରଣ ଆଉ ମହନ୍ତଙ୍କ ମଧ୍ୟରେ ଗୋଟେ ଆବିଳତା ଓ ସ୍ନେହର ସଂପର୍କ ହୋଇଥିଲା ଯାହା ଆଉ ଦେଖା ଦେବନି ଏ ଯୁଗରେ। ଭକ୍ତ ଓ ଗ୍ରାମବାସୀଙ୍କର ମଠ ପ୍ରତି ମମତା ଥିଲା ଓ ରହିବ କିନ୍ତୁ ମହନ୍ତ ମହାରାଜ ଗୋଟେ ଶୂନ୍ୟସ୍ଥାନ ଛାଡ଼ି ଚାଲିଗଲେ ଯାହାକୁ ପୂରଣ କରିବାକୁ ଅନ୍ୟ ମହନ୍ତ ମହାରାଜମାନଙ୍କୁ କେତେ ସୁଖ ଲାଗିବ ତାହା ପ୍ରଭୁ ମଦନମୋହନ ହିଁ ଜାଣିଥିବେ। ଖଣ୍ଡିତର କହିଲେ ମଠକୁ ବୁଝାଏ ଆଉ ମଠ କହିଲେ ଖଣ୍ଡିତର ଗ୍ରାମକୁ ବୁଝାଏ।

ପ୍ରଭୁ ମଦନମୋହନ ଦେବ ଏ ଗ୍ରାମର ଜମିଦାର। କ'ଣ ଆଉ ଲେଖିବି ମହାରାଜଙ୍କ ବିଷୟରେ। ସମୁଦ୍ର ଉପରେ ଗୋଟେ ଛୋଟ ଜାହାଜର ନାବିକ କ'ଣ ବା ଲେଖିବ ସମୁଦ୍ର ବିଷୟରେ। ଭୁବନେଶ୍ୱରରୁ ଫେରିଲେ ଆମ କଳଘରେ ଦେଖୁ ଦେଖୁ ପାଟିରୁ ବାହାରି ପଡ଼େ ମହନ୍ତ ମହାରାଜ ପ୍ରଣାମ। ମହାରାଜ ବହୁତ ଭଲପାନ୍ତି ମୋତେ ଓ ମୋ' ପିଇସି ପୁଅ ଶଙ୍କରା ନନାଙ୍କୁ। ସଂଧ୍ୟାରେ ମଠରୁ କେବେ କେବେ ଚାଲିଆସନ୍ତି ଗାଁ' ଛକ କଳ ଘରକୁ। ଗାଁ'ର ଗଜିଆନନା ଓ ଶଙ୍କରାନନାଙ୍କ ପାଖରେ ବସି ବହୁ କଥା ବିଚାର କରନ୍ତି। ବହୁ ଆଲୋଚନା କରନ୍ତି। ସଦାବେଳେ ମନରେ ଚିନ୍ତା ତାଙ୍କ ପ୍ରଭୁଙ୍କ ମଠର ଉନ୍ନତି କେମିତି ହେବ ଓ ମା' ଘାଟମଂଗଳାଙ୍କ ମନ୍ଦିର କେମିତି ହେବ ଓ ମେଲଣରେ ତାଙ୍କ ପ୍ରଭୁ କେମିତି ସୁରୁଖୁରୁରେ ଯାଇ ପହଞ୍ଚିବେ।

କଥାରେ ଅଛି ସନ୍ନ୍ୟାସୀ ହୋଇଗଲେ ମୁକ୍ତି ହୋଇଯାଏ, ନିଜର ମୁକ୍ତି ସହ ବଂଶ ବୁନିୟାଦିର ବି ମୁକ୍ତି ହୋଇଯାଏ। ଶ୍ରୀ ମଦନମୋହନ ଦେବଙ୍କୁ ପ୍ରାର୍ଥନା କରୁଛି ମହାରାଜଙ୍କ ଆତ୍ମାର ସଦ୍‌ଗତି ହେଉ।

*ଓକିଲ*

*ଭୁବନେଶ୍ୱର/ ଖଣ୍ଡିତର*





Digitized by PPRACHIN, SOA

# ଶିଶିର ଭାରତୀ ଗୋସ୍ୱାମୀଙ୍କ ସ୍ମୃତିରେ

ଶ୍ରୀ ଶଙ୍କର୍ଷଣ ତିଆଡ଼ି



ଶିଶିର ବାବୁଙ୍କ ସହିତ ମୋର ଦୀର୍ଘଦିନର ସୁସଂପର୍କ ଥିଲା। ତାଙ୍କୁ ମୁଁ କକା ବୋଲି ଡାକିଥାଏ। ମୋ' ବାପାଙ୍କ ସହିତ ମଠର ପୁରୁଣା ସଂପର୍କ ଥିବାରୁ ମୁଁ ମଧ୍ୟ ମଠ ସହିତ ଜଡ଼ିତ। ସେ ଜଣେ ଶିକ୍ଷିତ ଏବଂ ନିଃସ୍ୱାର୍ଥପର ଓ ମଠର ଅଧିକାରୀ ହୋଇଥିବାରୁ, ସମସ୍ତଙ୍କ ସହିତ ବ୍ୟବହାର ଉତ୍ତମ ଅଟେ। ତେଣୁ ତାଙ୍କ ନିକଟରେ ଜଣେ ଅପରିଚିତ ଲୋକ ମଧ୍ୟ ନିଜର ହୋଇପାରୁଥିଲେ। ସେ ମଠକୁ ତାଙ୍କ ସମୟରେ ଠିକ୍ ଭାବେ ଚଳାଇ ପାରୁଥିଲେ। ତା' ସହିତ ସେ ହାଇସ୍କୁଲର ପ୍ରଧାନ ଶିକ୍ଷକ କାର୍ଯ୍ୟ କରୁଥିଲେ। ମଠର ଆରାଧ୍ୟ ଦେବତା ଶ୍ରୀ ମଦନମୋହନ ଜୀଉ ଅଟନ୍ତି। ସେଠାରେ ଦୁର୍ଗା, ରାଧାକୃଷ୍ଣ ଏବଂ ରଘୁନାଥ ପୂଜା ପାଇପାନ୍ତି। ତେଣୁ ମଠରେ ସକାଳ ବାଲଧୂପ, ମଧ୍ୟାହ୍ନରେ ଅନ୍ନ ନୀତି ଦିଆଯାଏ। ପ୍ରତିଦିନ ୨ କିଲୋ ଅରୁଆ ଅନ୍ନ ରନ୍ଧା ହୋଇଥାଏ। ଅତିଥି, ଅଭ୍ୟାଗତ ମଧ୍ୟ ପ୍ରସାଦ ସେବନ କରନ୍ତି। ସେଠାରେ ବାରମାସରେ ବିଭିନ୍ନ ପର୍ବପର୍ବାଣି କରାଯାଏ। ଦୋଳ ମେଳଣ ଓ ଝୁଲଣ ପ୍ରସିଦ୍ଧ। ଝୁଲଣ ୫ଦିନ ହୁଏ। ପ୍ରତିଦିନ ମଦନମୋହନ ଝୁଲଣ ମଣ୍ଡପକୁ ଆସିଥାନ୍ତି। କୀର୍ତ୍ତନ ଭଜନ ସହିତ ମଧ୍ୟ ରାତ୍ରିରେ ଠାକୁର ସିଂହାସନକୁ ବିଜେ କଲାପରେ ପ୍ରାୟ ୧୦୦/୧୫୦ ଲୋକ ଭୋଜନ କରନ୍ତି। ଗ୍ରାମବାସୀଙ୍କ ସହିତ ବାହାର ଲୋକ ମଧ୍ୟ ଝୁଲଣରେ ନିମନ୍ତ୍ରଣ କ୍ରମେ ଯୋଗ ଦିଅନ୍ତି।

ସେ ପ୍ରତିଦିନ ମଦନମୋହନଙ୍କ ନିକଟରେ ବିଷ୍ଣୁ ସହସ୍ର ନାମ ପାଠ କରନ୍ତି ଏବଂ ପ୍ରତ୍ୟେକ ପୂର୍ଣ୍ଣିମାରେ ୧୦୮ ତୁଳସୀ, ଗୀତା ଯଜ୍ଞ, ହୋମ ସହିତ ବ୍ରାହ୍ମଣ ସହିତ ଲୋକଙ୍କ ପାଇଁ ଭୋଜନ ବ୍ୟବସ୍ଥା କରିଥାନ୍ତି। ମୁଁ ପ୍ରତ୍ୟେକ ପର୍ବପର୍ବାଣିରେ ନିମନ୍ତ୍ରିତ ହୋଇ ମଠକୁ ଯାଇଥାଏ। ତାଙ୍କ ସମୟରେ ସେ



Digitized by PPRACHIN, SOA

ମଠରେ ବହୁତ କିଛି ଉନ୍ନତି କରିଅଛନ୍ତି। ପୁରୁଣା ମହନ୍ତ ସମୟର ଘରଗୁଡ଼ିକ ଚାଳ ଛପର ଥିବାରୁ ସେ ପକ୍କା ଘର ତିଆରି କରିଛନ୍ତି। ଯଜ୍ଞେଶ୍ୱର ମହାଦେବ ମନ୍ଦିର ମଧ୍ୟ ନୂତନ ଭାବେ କରିଛନ୍ତି। ତାଙ୍କ ସମୟରେ ପୁରୁଣା ମଂଗଳା ମନ୍ଦିରକୁ ମଧ୍ୟ ନୂତନ ଭାବରେ ଗଜିଆନନାଙ୍କ ସହଯୋଗରେ କରିଛନ୍ତି। ସେ ମଦନମୋହନଙ୍କ ପାଇଁ ଚିନ୍ତିତ ଥିଲେ। ମୋ' ପରେ ଠାକୁର କିପରି ପୂଜା ପାଇବେ କାରଣ ଏହା ବଂଶଗତ ମଠ ହୋଇଥିବାରୁ, ପରିବାର କେହି ମହନ୍ତ ହେବା ପାଇଁ ରାଜି ନୁହଁନ୍ତି। ତେଣୁ ସେ ମୃତ୍ୟୁ ପର୍ଯ୍ୟନ୍ତ ସେଥିପାଇଁ ବ୍ୟସ୍ତ ବିବ୍ରତ ଥିଲେ। ଚାକିରିରୁ ଅବସର ପରେ ପ୍ରାୟ ଅଧିକାଂଶ ସମୟ ଗଜିଆନନା ଏବଂ ମୋ' ସହିତ ଏକାଠି ବସି ବିଚାର କରୁଥିଲୁ। ତାଙ୍କ ସମୟରେ ମଂଗଳା ମନ୍ଦିର ପୂର୍ଣ୍ଣାଙ୍ଗ ହୋଇଥିବା ଏବଂ ଯଜ୍ଞ ମଣ୍ଡପ କାମ ସରି ନଥିବାରୁ ଚିନ୍ତିତ ହୋଇ ଗଜିଆନନାଙ୍କୁ କହିଥିଲେ, ଯେମିତି ହୋଉ ତାହା କରିବ।

ସେ ୧୨ ବର୍ଷ ପୂର୍ଣ୍ଣିମାରେ ଗୀତାଯଜ୍ଞ କିପରି ପୂରଣ ହେବ ତାହା ମଧ୍ୟ କହୁଥିଲେ। କିନ୍ତୁ ବିଧିର ବିଧାନ ଯୋଗୁ ୨୦୨୨ ମସିହା ଝୁଲଣ ପ୍ରଥମ ଦିନ ପ୍ରାୟ ୨ ଦିନଠାରୁ ଦେହ ଖରାପ ଯୋଗୁ କଟକ ମେଡ଼ିକାଲରେ ପଡ଼ିଲେ। ମୁଁ ସେଦିନ ସଂଧ୍ୟାରେ ଖବର ପାଇ ଗଲି। ୩ ଦିନ ଝୁଲଣ ଚାଲିଲା ପରେ ଶେଷ ଦିନ ସେ ଆରପାରିକୁ ଚାଲିଗଲେ ତାହା ଗହ୍ମାପୂର୍ଣ୍ଣିମା ଦିନ। ତାଙ୍କ ପୁତୁରା ଦେବାଶିଷ ଦାୟିତ୍ୱ ନେଇ ଦୋଳ ପୂର୍ଣ୍ଣିମା ପର୍ଯ୍ୟନ୍ତ ତାହା କରି ୧୨ ବର୍ଷର କର୍ମ ପୂରଣ କରିଲା। ମଦନମୋହନ ତାଙ୍କର ସବୁ କିଛି ଥିଲେ। ସେ କହୁଥିଲେ ମୁଁ ପଡ଼ିଗଲେ କିଏ ସେବା କରିବ। ତେଣୁ ମଦନମୋହନ ତାଙ୍କୁ ବିନା ସେବାରେ ଉଦ୍ଧାର କରିଦେଲେ। ଭାଇମାନେ ମଦନ ମୋହନ ସଂପତ୍ତି ଖାଉଥିଲେ ମଧ୍ୟ ସେବା ଠିକ୍ ଭାବେ କରି ନଥିବାରୁ ସେ ସବୁବେଳେ ଦୁଃଖ ପ୍ରକାଶ କରୁଥିଲେ। ଗ୍ରାମାଞ୍ଚଳରେ ବହୁତ ମଠ ମନ୍ଦିର ସବୁ ଅବକ୍ଷୟ ଅବସ୍ଥାରେ ଥିବାବେଳେ ମଦନମୋହନଙ୍କ ମଠ ଭଲ ଅବସ୍ଥା ଅଛି। ଏହା ମଧ୍ୟରେ ଗଜିଆନନା ଯାହା ହେଉ ଯେମିତି ହେଲେ ଯଜ୍ଞ ମଣ୍ଡପ ନିର୍ମାଣ କାମ ସାରିଛନ୍ତି। ଏଣୁ ମଦନମୋହନଙ୍କ ନିକଟରେ ପ୍ରାର୍ଥନା କରୁଅଛି, ତାଙ୍କ ଆତ୍ମାକୁ ଶାନ୍ତି ଦିଅନ୍ତୁ।

*ସାନ ତ୍ରିଲୋଚପୁର, ଖଣ୍ଡିତର*

*୨୨/୦୪/୨୦୨୩*





Digitized by PPRACHIN, SOA

# ଜାଜ୍ୱଲ୍ୟମାନ ସ୍ମୃତି ଦୀପାଳିରେ ମହନ୍ତ ମହାରାଜ ଶିଶିର ଭାରତୀ



ପ୍ରଫୁଲ କୁମାର ସାହୁ

"କେହି ରହି ନାହିଁ ରହିବେ ନାହିଁ ଏ
ଭବରଂଗ ଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ ॥"

ସତରେ ବାସ୍ତବ ସତ୍ୟକୁ କ'ଣ କେହି ଏଡ଼ାଇ ପାରିବ ! ନଦୀର ପ୍ରଖର ସ୍ରୋତରେ କାଠ କୁଟା ଭାସି ଗଲା ପରି ସମୟର ସ୍ରୋତରେ ଜୀବନ କାଠିଟିଏ ଭାସି ଭାସି ଯାଉଛି । ତା'ର ଅନ୍ତ କେବେ କେଉଁଠି କେତେବେଳେ ହୁଏ ତାହା ଈଶ୍ୱରଙ୍କୁ ହିଁ ଜଣା । ଜନ୍ମ ମୃତ୍ୟୁର ଦୁଇ ଦିନ ମଧ୍ୟରେ ପ୍ରାଣୀ ତା'ର ପ୍ରାରବ୍ଧ କର୍ମଭୋଗ କରେ ଏବଂ ସେ ନିଜ ପାଇଁ ହେଉ ବା ଈଶ୍ୱରଙ୍କ ପାଇଁ ହେଉ ଏ ଜୀବନ କାଳ ମଧ୍ୟରେ କର୍ମ କରି ଚାଲିଥାଏ । ଜୀବ ବହୁ ଯୋନି ଭ୍ରମଣ କରି ସାରିବା ପରେ ଯେତେବେଳେ ମନୁଷ୍ୟ ଜନ୍ମ ପାଏ, ଈଶ୍ୱର ତା'କୁ ନିଜର ମୁକ୍ତି ପାଇଁ ଏ ଦୁର୍ଲଭ ଜନ୍ମ ଦେଇଥାନ୍ତି । ସେଥିପାଇଁ ଭଗବାନ ବାସୁଦେବ ଶ୍ରୀକୃଷ୍ଣ କରୁଣା ବଶତଃ ଅର୍ଜୁନଙ୍କୁ ମାଧ୍ୟମ କରି ଅଷ୍ଟାଦଶ ଯୋଗ ମାଧ୍ୟମରେ ଗୀତାର ଅମୃତମୟ ବାଣୀ ପ୍ରଦାନ କରିଛନ୍ତି । ଯାହା ଦ୍ୱାରା ମନୁଷ୍ୟ ତାହା ପଠନ ଏବଂ ଆଚରଣ ଦ୍ୱାରା ଭଗବତ୍ ମାର୍ଗରେ ଗତି କରିପାରିବ । ଭଗବାନ ଏକଥା ମଧ୍ୟ କହିଛନ୍ତି ଏ ଗୀତା ଜ୍ଞାନ ମୋର କଣ୍ଠ ନିସୃତ ସତ୍ୟ ମୁଁ ମଧ୍ୟ ଏ ଗୀତାକୁ ଅନୁସରଣ କରେ । ଗୀତା ଅଭ୍ୟାସ କରୁଥିବା ଲୋକ ସ୍ୱୟଂ ନିଜର ତ୍ରାଣକର୍ତ୍ତା ହୋଇଯାନ୍ତି । ଯେଉଁଠି ଭଗବାନ ମୁକ୍ତିଦାତା ରୂପରେ ତାଙ୍କର ହୋଇଯାନ୍ତି । ସେଠାରେ ମୁକ୍ତି କଥା ଆଉ କ'ଣ କହିବା । ମୁକ୍ତି ତ ତାଙ୍କର ପାଦ ଧୂଳି ହୋଇଯାନ୍ତି । ସେ ମୁକ୍ତିର ଛତ୍ର ଖାଲି ଦିଅନ୍ତି । ଭଗବାନ ଏକଥା ମଧ୍ୟ କହିଛନ୍ତି ଗୀତା ହେଉଛି ମୋ'ଠାରୁ ଶ୍ରେଷ୍ଠ, ମୁଁ ଗୀତାର ପ୍ରତି ଶ୍ଳୋକରେ ବିଦ୍ୟମାନ ।



Digitized by PPRACHIN, SOA

ଗୀତା ଶୟେଽହଂ ତିଷ୍ଠାମି ଗୀତା ମେ ଚୋତ୍ତମ ଗୃହମ୍।
ଗୀତା ଜ୍ଞାନ ମୁପାଶ୍ରିତ୍ୟ ତ୍ରୀଁଲ୍ଲୋକାନ୍ ପାଳୟାମ୍ୟହମ୍।
(ବରାହ ପୁରାଣ)

ଅର୍ଥାତ୍, ମୁଁ ଗୀତା ଆଶ୍ରୟରେ ରହିଛି। ଗୀତା ମୋର ଶ୍ରେଷ୍ଠ ଗୃହ। ଗୀତା ଜ୍ଞାନର ଆଶ୍ରୟ ନେଇ ମୁଁ ତିନିଲୋକକୁ ପାଳନ କରୁଛି।

ଏକଥା ମଧ୍ୟ କହିଛନ୍ତି ଯେ, କେହି ମୋର ଗୀତା ରୂପକ ଆଜ୍ଞାକୁ ପାଳନ କରିବ, ସେ ନିଃସଂଦେହ ମୁକ୍ତ ହୋଇଯିବ।

(ଗୀତା- ୧୮/୭୦)

ଗୀତାରେ ଭଗବାନ ଅଷ୍ଟାଦଶ ଅଧ୍ୟାୟ ସତୁରି ଶ୍ଲୋକରେ କହିଛନ୍ତି ଯେଉଁ ପୁରୁଷ ଆମ ଦୁହିଁଙ୍କର ଏହି ଧର୍ମମୟ ସମ୍ବାଦ ରୂପକ ଗୀତା ଶାସ୍ତ୍ର ଅଧ୍ୟୟନ କରିବେ ତାଙ୍କ ଦ୍ୱାରା ମଧ୍ୟ ମୁଁ ଜ୍ଞାନ ଯଜ୍ଞରେ ପୂଜିତ ହେବି।

ସାର କଥା ହେଉଛି ଗୀତା ଜ୍ଞାନ ସାଧନାଗୁଡ଼ିକର ତଥା ପରମାତ୍ମା ତତ୍ତ୍ୱର ରହସ୍ୟ ଜାଣିବା ନିମନ୍ତେ ଶ୍ରଦ୍ଧା ଭକ୍ତି ପୂର୍ବକ ମହାପୁରୁଷମାନଙ୍କର ସଂଗ ଲାଭ କରିବାର ଚେଷ୍ଟାରେ ବ୍ରତୀ ହୋଇ ଭାବ ଓ ଅର୍ଥ ସହ 'ଗୀତା' ମନନ କରିବା ଏବଂ ତଦନୁସାରେ ନିଜର ଜୀବନ ଗଢ଼ିବା ନିମନ୍ତେ ଆପ୍ରାଣ ପ୍ରଯତ୍ନ କରିବା ଆବଶ୍ୟକ।

ଆମେମାନେ ଆସିଛନ୍ତି ପୁଣି ଚାଲିଯିବା। ଯେଉଁଠିକି ଯିବା ତାହାର ପ୍ରଶସ୍ତ ପଥ (ଭଗବତ୍ ମାର୍ଗ) ନିର୍ଣ୍ଣୟ କରି ସେହି ପଥରେ ଯିବାକୁ ବ୍ରତୀ ହେବା।

ଭଗବାନ ଶ୍ରୀକୃଷ୍ଣ ଶ୍ରୀମଦ୍‌ଭାଗବତମ୍ ମହାପୁରାଣରେ ଏକାଦଶ ସ୍କନ୍ଦ ୨୮/୧୮ ଶ୍ଳୋକରେ କହିଛନ୍ତି।

ଜ୍ଞାନଂ ବିବେକୋ ନିଗମସ୍ତପଶ୍ଚ
ପ୍ରତ୍ୟକ୍ଷ ମୈତିହ୍ୟମଥାନୁ ମାନମ୍
ଆଦ୍ୟନ୍ତୟୋରସ୍ୟ ଯଦେବ କେବଳଂ
କାଳଶ୍ଚ ହେତୁଶ୍ଚ ଯଦେବ ମଧ୍ୟେ। (୨୮/୧୮)

ଅର୍ଥାତ୍- ଆତ୍ମା ଓ ଅନାତ୍ମାର ସ୍ୱରୂପ ପୃଥକ୍ ପୃଥକ୍ ବୋଲି ବୁଝିବାର ନାମ ଜ୍ଞାନ। ଏହି ଜ୍ଞାନ ଉଦିତ ହୋଇଗଲେ ଦ୍ୱୈତର ଅସ୍ତିତ୍ୱ ଆଉ ରହେ ନାହିଁ।


Digitized by PPRACHIN, SOA

ଜ୍ଞାନ ଲାଭର ଉପାୟ ହେଲା ତପସ୍ୟା ଦ୍ୱାରା ହୃଦୟ ବିଶୋଧନ ଏବଂ ବେଦାଦି ଶାସ୍ତ୍ର ଶ୍ରବଣ ପ୍ରତ୍ୟକ୍ଷ ପ୍ରମାଣ। ମହାପୁରୁଷମାନଙ୍କର ଉପଦେଶ, ସ୍ୱାନୁଭୂତି, ତର୍କ ସଇନ୍ଧ, ଅନୁମାନ ଦ୍ୱାରା ସର୍ବତ୍ର ଆତ୍ମତତ୍ତ୍ୱ ଦର୍ଶନ। ଏପରି ବିବେକ ପୂର୍ଣ୍ଣ ବିଚାର କରି ଚାଲିଲେ ଏହି ଜ୍ଞାନ ଲାଭ ହେବ ଯେ, ଯାହା ସୃଷ୍ଟିର ଆଦ୍ୟରେ ଥିଲା ଓ ଅନ୍ତରେ ରହିବ, ତାହା ମଧ୍ୟ କାଳରେ ରହିଛି ଏବଂ ସେ ହିଁ ହେଉଛି ସୃଷ୍ଟିର କର୍ତ୍ତା ଓ କାରଣ ବ୍ରହ୍ମ।

ପୁଣି ପ୍ରଭୁ ଶ୍ରୀକୃଷ୍ଣ କହିଛନ୍ତି, ଆମ ସମସ୍ତଙ୍କୁ ଏ ଦେହ ତ୍ୟାଗ କରିବାକୁ ପଡ଼ିବ। ଏ ଦେହ ପ୍ରତି ମମତ୍ୱ ତ୍ୟାଗ କରି ପରମାତ୍ମାଙ୍କ ପ୍ରେମରେ ନିଜକୁ ହଜାଇ ଦେବା ଉଚିତ୍। ନିଜେ ସ୍ୱୟଂ ତନୁତ୍ୟାଗ କରିବା ସମୟରେ ବ୍ୟକ୍ତ କରିଛନ୍ତି ଶ୍ରୀମଦ୍ ଭାଗବତମ୍ ମହାପୁରାଣରେ,

ତିଷ୍ଠନ୍ତମାସୀନ ମୁତ ବ୍ରଜନ୍ତଂ
ଶୟାନ ମୁକ୍ଷନ୍ତ ମଦନ୍ତ ମନମ୍
ସ୍ୱଭାବ ମନ୍ୟତ୍ କିମପୀହମାନ
ମାତ୍ମାନ ମାତ୍ମସ୍ଥମତିର୍ନ ବେଦ। (୩୧/୨୮)

(ପଦରେ)

ଯିଏ ଆତ୍ମ ସ୍ୱରୂପକୁ ଉପଲବ୍ଧ କରି
ସାରିଛନ୍ତି ତାଙ୍କୁ ଜଣାହୁଏ ଏହିପରି ।
ଏ ଶରୀର ଠିଆ ହୋଇ ଅଛି ନା ବସିଛି
ଚାଲୁଛି ନା ଶୋଇଛି କି ଭୋଜନ କରୁଛି।
ମଳମୂତ୍ର ତ୍ୟାଗ ଅବା ଅନ୍ୟ ଆଉ କିଛି
ସ୍ୱାଭାବିକ କର୍ମମାନ ଅବା ସେ କରୁଛି।
ସେହି ବିଷୟରେ ସ୍ଥିର ହୋଇଯାଇ ଥାଏ
ଅର୍ଥାତ୍ ବ୍ରହ୍ମାକାରର ଯେ ସ୍ଥିତ ଅଟେ ସିଏ।

ଭଗବାନ ବାସୁଦେବ ଶ୍ରୀକୃଷ୍ଣଙ୍କୁ ଉପଦେଶ ଛଳରେ ଏହା ମଧ୍ୟ କହିଛନ୍ତି ଏବଂ ନିଜର ଦୃଷ୍ଟାନ୍ତ ଦେଇ ଆମକୁ ଏହା ପ୍ରଦାନ କରିଛନ୍ତି।

ଶ୍ରୀମଦ୍ ଭାଗବତ ମହାପୁରାଣମ୍ (୩୧/୧୩)
ତଥାପ୍ୟ ଶେଷ ସ୍ଥିତି ସମ୍ଭବାପ୍ୟଯେ



Digitized by PPRACHIN, SOA

ଶ୍ରୂନନ୍ୟ ହେତୁ ର୍ଯଦଶେଷ ଶକ୍ତି ଧୃକ୍
ନୈଚ୍ଛତ୍ ପ୍ରଣେତୁଂ ବପୁରତ୍ର ଶେଷିତଂ
ମର୍ତ୍ତେନ କିଂ ସ୍ୱସ୍ଥ ଗତିଂ ପ୍ରଦର୍ଶୟନ। (୩୧/୧୩)

(ପଦ୍ୟରେ)

ଭଗବାନ ଶ୍ରୀକୃଷ୍ଣ ଯେ ହେଉଛନ୍ତି ସ୍ୱୟଂ
ଜଗତର ଉତପତି ସ୍ଥିତି ଓ ପ୍ରଳୟ।
ସକଳ ଶକ୍ତି ରହିଛି ତାଙ୍କରି ପାଖରେ
ତଥାପି ସେ ନିଜ ଶରୀରକୁ ଏ ସଂସାରେ।
ରଖିବାକୁ ଇଚ୍ଛା କଲେ ନାହିଁ ଭଗବାନ
ଭାବିଲେ ନର ଦେହେ କି ଅବା ପ୍ରୟୋଜନ।
ତେଣୁ ବିଶାଳ ଦ୍ୱାରକା ଐଶ୍ୱର୍ଯ୍ୟ ପ୍ରତି
ନିଜ କୁଟୁମ୍ବକୁ ତେଜି ସ୍ୱଧାମରେ ଗତି।
ଏହାଦ୍ୱାରା ସେ ଦେଖାଇ ଦେଲେ ଭଗବାନ
ଯୋଗୀ ସିଦ୍ଧି ବଳେ ନିଜ ଶରୀର ରଖିଣ।
ସଂସାରରେ ଘରେ ପୁଣି କୁଟୁମ୍ବଙ୍କ ମେଳେ
ସୁଖ ଦୁଃଖ ଭୋଗ ଇଛା କର ନାହିଁ କ୍ଷଣେ।
ସିଏ ପୂର୍ଣ୍ଣ ଅନାସକ୍ତ ହୋଇଣ ନିଜର
ଦିବ୍ୟ ଧାମକୁ ସେ ଯାତ୍ରା କରନ୍ତୁ ନିକର।

ଭଗବାନ ଶ୍ରୀକୃଷ୍ଣ ଶେଷରେ କହିଥିଲେ, ଯେ ମୋର ସବୁ ଥାଇ ସର୍ବମୟ କ୍ଷମତା, ଶକ୍ତି, ଦକ୍ଷତା ଥିଲେ ମଧ ମୁଁ ତାଙ୍କୁ ଅସ୍ୱୀକାର କରି ମୋର କର୍ତ୍ତବ୍ୟ କର୍ମ ଶେଷ କରି ସ୍ୱଧାମକୁ ଫେରି ଯିବାକୁ ନିର୍ଣ୍ଣୟ ନେଲି। ତେଣୁ ହେ ମଣିଷ ଏସବୁ ଅଳୀକ ମମତ୍ୱରେ ଆସକ୍ତି ନହୋଇ ପ୍ରଭୁ ପରମେଶ୍ୱରଙ୍କ ପ୍ରେମ ରାଜ୍ୟକୁ ଫେରିଆସ।

ପରମ ପୂଜ୍ୟ ଶିଶିର ଭାରତୀ ମହାରାଜ। ସେ ପରମଧାମ ପ୍ରାପ୍ତ ହୋଇଛନ୍ତି। ଯାହା ତାଙ୍କ ଆଚରଣ, କର୍ତ୍ତବ୍ୟନିଷ୍ଠ ଭଗବତ ପ୍ରେମ, ଉଦାରତା, ସରଳ ପ୍ରାଣ, ମିଷ୍ଟଭାଷୀ, ସୁବକ୍ତା, ସୁଶିକ୍ଷକ, ସୁଲେଖକ ଭାବରେ ମହାନ ଗୁଣର ଅଧିକାରୀ। ମଦନମୋହନ ଜୀଉ ମଠର ମହନ୍ତ ଭାବରେ ସେ ସର୍ବ ପରିଚିତ।



Digitized by PPRACHIN, SOA

ଆମ୍ଭେ ଆଖଣ୍ଡଳମଣି ଗୀତା ଜ୍ଞାନ ପ୍ରଚାର ସଂଘ ତରଫରୁ ତାଙ୍କଦ୍ୱାରା ଆୟୋଜିତ ୧୦୮ ଗୀତା ପରାୟଣରେ କିଛି ଦିନ ଅଂଶ ଗ୍ରହଣ କରି ଗୀତା ପାଠ କରିବାର ସୁଯୋଗ ଲାଭ କରିଛୁ। ପ୍ରତି ପୂର୍ଣ୍ଣିମାରେ ନିୟମିତ ଗୀତା ପାରାୟଣ ଅନୁଷ୍ଠିତ ହେଉଥିଲା। ୧୦୫ ପୂର୍ଣ୍ଣିମା ଶେଷରେ ସେ ସ୍ୱର୍ଗଧାମ ଲାଭ କଲେ। ଆଉ ମାତ୍ର ତିନୋଟି ପୂର୍ଣ୍ଣିମାର ପାରାୟଣ ସେ ଦେଖିପାରିଲେ ନାହିଁ। ଯାହା ପ୍ରଭୁ ଶ୍ରୀ ମଦନମୋହନଙ୍କ ଇଚ୍ଛା ତାହା ଆମକୁ ସ୍ୱୀକାର କରିବାକୁ ହେବ। ଶରଣ ରକ୍ଷକ ଭକ୍ତ ଜନାଶ୍ରୟ ଭଗବାନ ମଦନମୋହନ ତାଙ୍କ ଆତ୍ମାର ପରମତୃପ୍ତି ପ୍ରଦାନ କରନ୍ତୁ, ଏତିକି ତାଂକ ଶ୍ରୀଚରଣେ ତଳେ ପ୍ରାର୍ଥନା।

ଓଁ ଶାନ୍ତି ଶାନ୍ତି ଶାନ୍ତି ॥

*ସଠିଆଟିକିରୀ*
*ନଖେଇ, ଦେବୀଦ୍ୱାର, ଯାଜପୁର*
*ମୋ.- ୯୭୭୭୮୮୬୧୩୭*





Digitized by PPRACHIN, SOA

# ମନେପଡ଼େ ତୁମ ସ୍ମୃତି

ନରୋତ୍ତମ ସାହୁ

ଏଇଠି ଏକ କବିତା ମୋର ପଢ଼ିବା ସହ ଆଖିରୁ ଲୁହଧାର ବହି ଆସେ ତୁମର ସେ ସ୍ମୃତିରେ।

"ଦିନ ସିନା ଚାଲିଯାଏ ସ୍ମୃତି ରହେ ଛାତିପରେ
ସେଇ ସ୍ମୃତି ଦିନରାତି କାନ୍ଦୁଥାଏ ନୀରବରେ।"

ଦିନ ସିନା ଚାଲିଯାଇଛି ହେଲେ ତୁମର ସେହି ଅଭୁଲା ସ୍ମୃତି ମୋର ମାନସପଟ୍ଟରେ ଉଙ୍କି ମାରିଉଠୁଛି। ସତରେ କାଲି ଭଳି ଲାଗୁଛି ତୁମ ସହ ଦେଖା, ସାହିତ୍ୟ କଥା, ଶିକ୍ଷାଦାନ ବିଷୟ ସର୍ବୋପରି ସାଇ ମନ୍ଦିର ତଥା ସାଇବାବାଙ୍କ କଥା ଓ ତୁମ ଗାଁ' ମନ୍ଦିର (ମଦନମୋହନ ଜୀଉ) କଥା ଆଲୋଚନା। ଦିନ ସବୁ କୁଆଡ଼େ ଚାଲିଯାଇଛି। ବିଦ୍ୟାଳୟରେ ବିଶେଷ କରି ମୋ' ଜାଣିବାରେ କୋଳଥଳ ତଥା ଖଣ୍ଡିତର ଉଚ୍ଚ ବିଦ୍ୟାଳୟର ଶିକ୍ଷାଦାନ- ପିଲାଙ୍କ ଚରିତ୍ର ଗଠନ। ତୁମର ଅମାୟିକ ବ୍ୟବହାର ମୋତେ ଏକା କାହିଁକି ସମସ୍ତଙ୍କୁ ଆନନ୍ଦ ଦେବା ସହ ଶିକ୍ଷକତାର କିଛି ଖୋରାକ ଯୋଗାଇ ଦେଇପାରିଛି। ସମସ୍ତଙ୍କୁ ମଣିଷ କରିବାରେ ତୁମର ପ୍ରୋତ୍ସାହନ ତୁମଠାରେ ଭଗବାନ ଶକ୍ତି ଦେଇଛନ୍ତି। ସତ୍ୟସାଇ ସେବାକେନ୍ଦ୍ରର ତୁମେ ଥିଲ ଜଣେ ସେବକ। ବାବାଙ୍କ ବାଣୀକୁ ଆଧାର କରି ଜୀବନରେ ସେହି ସେବା, ତ୍ୟାଗ ଗୁଣରେ ବିଭୂଷିତ ହୋଇ ଜୀବନକୁ ସେଇ ପଥରେ ଆଗେଇ ନେଇଥିଲେ। ତୁମ ନାମ ଅନୁସାରେ ଗୁଣ ଦେଖାଇ ସର୍ଭିଙ୍କର ପ୍ରିୟଭାଜନ ହୋଇପାରିଥିଲେ। ଶିକ୍ଷକ ବୋଲି ଯେଉଁ ତିନୋଟି ଅକ୍ଷର ତାକୁ ବିଷଦ ଭାବରେ ବର୍ଣ୍ଣନା ହେଲେ, ଶି- ଶିଷ୍ଟାଚାରଯୁକ୍ତ, କ୍ଷ- କ୍ଷମାଶୀଳଯୁକ୍ତ, କ- କର୍ତ୍ତବ୍ୟଶୀଳ ଯୁକ୍ତ, ଏହି ତିନି ଗୁଣ ତୁମଠାରେ ଭରି ରହିଥିଲା। ଏଇଠି ଗୋଟିଏ କବିତା ସେଇ ସାଇବାବାଙ୍କର ବାଣୀ-



Digitized by PPRACHIN, SOA

"ସେବାର ଛୁରୀକୁ ହାତରେ ଧରି
ଅହଂକାରୀ ପଥ ଦେ ତୁ ଚିରି।"

ତୁମର ଛାତ୍ର ବତ୍ସଳ ଭାବ, ମଣିଷଭାଇଙ୍କ ପାଇଁ ପ୍ରେମ, ସତ୍ୟ, ଶାନ୍ତି, ଦୟା, କ୍ଷମାର ଭାବ ନେଇ ଅବସର ପରେ ନିଜ ଗ୍ରାମର ମଦନମୋହନ ଜୀଉ ମଠର ଗୁରୁଦାୟିତ୍ୱ ବହନ ସୁରୁଖୁରୁରେ ତୁଲାଇଛ। ଆଧ୍ୟାତ୍ମିକ ମାର୍ଗର ଜଣେ ପଥଧାରା ହୋଇ ନିଜର କର୍ମ ସଂପାଦନ କରିଛ। ଜଣେ ଆଦର୍ଶ ଶିକ୍ଷକ ଆଧ୍ୟାତ୍ମିକବାଦୀ ହିସାବରେ ନିଜର କର୍ତ୍ତବ୍ୟ କରିଛ। ଜଣେ ପ୍ରକୃତ ମଣିଷ ପରିଚୟ ଦେଇପାରିଛ। ସଂସାର ରୂପକ କାରଖାନାରେ ଜଣେ କାରିଗର ସାଜି ଉତ୍ତମ କାରିଗରର ଯଥାର୍ଥତା ପ୍ରତିପାଦନ କରାଇପାରିଛ। ତୁମେ ତ ଆଉ ଆମ ଗହଣରେ ନାହିଁ, ମାତ୍ର ରଖି ଦେଇଯାଇଛ ତୁମର ସେହି ଅଭୁଲା ସ୍ମୃତି ସମସ୍ତଙ୍କ ନିମନ୍ତେ। ସେହି ଆଧ୍ୟାତ୍ମିକ ବାଣୀ ସଭିଁଙ୍କ ହୃଦୟକୁ ଜାଗ୍ରତ କରୁ। ଯାଜପୁର ଜିଲ୍ଲାର ଖଣ୍ଡିତର ଗ୍ରାମରେ ତୁମର ଜନ୍ମ (ଶିଶିର କୁମାର ଭାରତୀ)। ଏହି ସଂସାରରେ ଜନ୍ମ ମାତ୍ରେ ମରଣ ନିଶ୍ଚିତ। ଏହି ପରିପ୍ରେକ୍ଷୀରେ ତୁମେ ସେପୁରରେ ଥାଇ ଏପୁରରେ ଥିବା ସମସ୍ତ ଯୁବପିଢ଼ିଙ୍କୁ ମାନବିକତାର ପଥରେ ଆଗେଇବା ତଥା ସାଇବାବାଙ୍କର ସେହି ସେବା ଓ ତ୍ୟାଗ ଗୁଣକୁ ଆଦରି ନେଇ ଶାଶ୍ୱତ ପ୍ରେମର ସ୍ୱର୍ଣ୍ଣ ମମତାର ବେଳାଭୂଇଁଟିଏ ସୃଷ୍ଟି କରିବାକୁ ତୁମର ଆଶୀର୍ବାଦ ଓ ପ୍ରେରଣା ନିର୍ଝରିଣୀ ହୋଇ ବହୁଥାଉ, ଏତିକି ତୁମକୁ ମୋର ଅନୁରୋଧ। ପ୍ରଭୁଙ୍କ ନିକଟରେ ମୋର ମିନତି, ତୁମର ଅମର ଆତ୍ମାର ସଦ୍‌ଗତି ଲାଭ କରୁ। ଶେଷରେ ଏକ କବିତା କବିଙ୍କ ଲେଖନୀରୁ,

ଏକା ଯିବା ଚାଲି ସଂଗରେ ନ ଯିବେ କେହି ବଂଧୁ ପରିଜନ
ଏ ଧରା ଗାଇବ ମନରେ ପକାଇ ଆମ ସେବା, ତ୍ୟାଗ, ଗୁଣ।

*ମିର୍ଜାପୁର (କୁଆଖିଆ)*
*ମଧୁବନ ହାଟ, ଯାଜପୁର*





Digitized by PPRACHIN, SOA

# ଶ୍ରଦ୍ଧାର ସ୍ୱରୂପ

ହିମାଂଶୁ ଶେଖର ରାୟ

ଦେବ ସ୍ୱରୂପ ମନୁଷ୍ୟଙ୍କ ସଂସ୍ପର୍ଶରେ ଆସିବା ଏବଂ ତାଙ୍କର ସ୍ନେହ, ଶ୍ରଦ୍ଧା ଆଶୀର୍ବାଦ ଲାଭ କରିବା ସମସ୍ତଙ୍କ ଭାଗ୍ୟରେ ନଥାଏ। ମାତ୍ର ମୁଁ ନିଜକୁ ଭାଗ୍ୟବାନ ବୋଲି ମନେ କରେ ଦେବସ୍ୱରୂପ ଶିଶିର ସାର୍‌ଙ୍କୁ ପାଇ। ସେ ଖଣ୍ଡିତର ମଦନମୋହନ ମଠର ମହନ୍ତ ରୂପେ କାର୍ଯ୍ୟ କରି ଆସୁଥିଲେ ମଧ୍ୟ ନିଜର କିଛି ସମୟ ଯୁବପିଢ଼ିଙ୍କ ନୈତିକତା ବୃଦ୍ଧି କରିବାରେ ନିୟୋଜିତ କରିଥାନ୍ତି। ସେହି କାର୍ଯ୍ୟାବସରରେ ମୁଁ ତାଙ୍କ ନିକଟକୁ ଆସିବାର ସୁଯୋଗ ପାଇଥିଲି। ଶ୍ରଦ୍ଧାରେ ମୁଁ ତାଙ୍କୁ "ଶିଶିର ମଉସା" ସମ୍ବୋଧନ କରେ।

୨୦୦୮ ମସିହାରେ 'ବାବା'ଙ୍କ ଜନ୍ମ ଦିବସରେ ପୂଜାପାଠ, ଭଜନ କାର୍ଯ୍ୟକ୍ରମ ଚାଲିଥାଏ। ମୁଁ ମଧ୍ୟ ନିଜକୁ ଉକ୍ତ କାର୍ଯ୍ୟକ୍ରମରେ ସାମିଲ କରି ନିଜକୁ ଧନ୍ୟ ମନେ କରୁଥିଲି। ହଠାତ୍ ଏକ ଖବର ପାଇଲି ଯେ, ମୋର ଜଣେ ସଂପର୍କୀୟଙ୍କର ଦେହାନ୍ତ ହୋଇଗଲା। ଦୂର ସଂପର୍କୀୟଙ୍କ ନିକଟକୁ ଯାଇ ହେବ ନାହିଁ ଏତେ ଶୀଘ୍ର। ମାତ୍ର ସେଠାରେ ଚାଲିଥିବା କାର୍ଯ୍ୟକ୍ରମରେ ମୁଁ ଉପସ୍ଥିତ ରହିପାରିବି କି ନାହିଁ ଜାଣିପାରିଲି ନାହିଁ। ଶିଶିର ମଉସାଙ୍କୁ ପଚାରିଲି ମୁଁ ସେହି କାର୍ଯ୍ୟକ୍ରମରେ ଯୋଗଦାନ କରିପାରିବି କି ନାହିଁ। ସେ ମୋତେ ଶାନ୍ତ ଭାବେ ଆଶ୍ୱାସନା ଦେଲେ। କହିଲେ, "ଈଶ୍ୱରଙ୍କୁ ଆମେ ଯେଉଁ ସ୍ଥାନରେ ଥିଲେ ମଧ୍ୟ ହୃଦୟରୁ ଭକ୍ତିର ସହ ଡାକିପାରିବା। ତୁମେ କିଛି ସ୍ପର୍ଶ ନ କରି ମଧ୍ୟ ଅନ୍ତରରୁ ଆଧ୍ୟାତ୍ମିକ ପରିସରରେ ନିଜକୁ ସାମିଲ କରିପାରିବ। ତାଙ୍କର ସେହି ପଦିଏ କଥା ମୋ' ମନରେ ଆଲୋଡ଼ନ ସୃଷ୍ଟି କରିଥିଲା। ମୁଁ ସର୍ବଦା ସତ୍‌ଚେଷ୍ଟା କରେ ଅନ୍ତରରୁ ଭକ୍ତିର ସହ ଈଶ୍ୱରଙ୍କୁ ପ୍ରାର୍ଥନା କରିବା ପାଇଁ। ପ୍ରତିଟି ସତ୍‌ସଂଗରେ



Digitized by PPRACHIN, SOA

ତାଙ୍କର ଅଭିଭାଷଣରେ ଯେଉଁ ପ୍ରେରଣା ଶକ୍ତି ଥାଏ, ତାହା ଦ୍ୱାରା ମୁଁ ମୋ' ନିଜକୁ ସକ୍ରିୟ କରିପାରେ ଆଧ୍ୟାତ୍ମିକ ଦିଗରେ। ଯାହାଦ୍ୱାରା ମୁଁ ଅଗ୍ରଗାୟକ ଏବଂ ବେଦପାଠକ ହିସାବରେ ସଂଗଠନରେ ଗଣ୍ୟ ହୋଇପାରିଛି।

ପ୍ରତିଟି ସତ୍‌ସଂଗରେ ସେ ସର୍ବଦା ଯୁବପିଢ଼ିଙ୍କୁ ଉତ୍ସାହିତ କରନ୍ତି ଆଧ୍ୟାତ୍ମିକ ଦିଗରେ ନିଜର କିଛି ସମୟ ବିତାଇବା ପାଇଁ। ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରିବା ପାଇଁ। ତାଙ୍କର ଗୀତା, ଭାଗବତ, ପୁରାଣ, ବେଦ ଆଦିରେ ପ୍ରଗାଢ଼ ପାଣ୍ଡିତ୍ୟ ଥିଲା। ପ୍ରତିଟି ମୁହୂର୍ତ୍ତକୁ ସେ ସତ୍ୟ, ଧର୍ମ, ଶାନ୍ତି, ପ୍ରେମ ଆଧାରରେ ବିତାଉଥିଲେ। ତାଙ୍କର ସେହି ହସ ହସ ମୁଖ ଏବଂ ସ୍ଥୁଳ ଶରୀର ମୁଁ ଦେଖିବାକୁ ପାଉ ନାହିଁ। ମୋର ଅନ୍ତର ଆତ୍ମା କୋହଭରା ହୃଦୟରେ ଖୋଜି ବୁଲିଛି। ଆମକୁ ଛାଡ଼ି ସେ କେଉଁ ଦୁନିଆକୁ ଚାଲିଗଲେ ! ତାଙ୍କର ସେହି ଅଭୟ ହସ୍ତର ଆଶୀର୍ବାଦ, ମୋ' ଜୀବନକୁ ଧନ୍ୟ କରିଦେଇଛି। ଯେଉଁ ସ୍ଥାନରେ ଦେଖା ହେଲେ ସେ ପୁତ୍ରତୁଲ୍ୟ ଶ୍ରଦ୍ଧା କରି ମୋତେ ଆଲିଂଗନ କରିଥାଆନ୍ତି, ତାହା ଥିଲା ମୋ' ପାଇଁ ସବୁଠୁ ବଡ଼ ଆଶୀର୍ବାଦ।

ସେ କେବଳ ସତ୍ୟସାଇ ସଂଗଠନରେ ନୁହେଁ, ତାହା ବ୍ୟତୀତ ଅନ୍ୟାନ୍ୟ ଆଧ୍ୟାତ୍ମିକ ସଂଗଠନରେ ଜଡ଼ିତ ରହି ମୁଖ୍ୟ ପୁରୋଧା ରୂପେ କାର୍ଯ୍ୟ କରିଆସୁଥିଲେ। ସେ ଖଣ୍ଡିତରଠାରେ ସ୍ଥାପିତ ଶ୍ରୀ ଶ୍ରୀ ମଦନମୋହନ ମଠରେ ମହନ୍ତ ରୂପେ କାର୍ଯ୍ୟଭାର ନିର୍ବାହ କରୁଥିଲେ। ଅନେକ ସାଧୁ ସନ୍ନ୍ୟାସୀଙ୍କ ସହ ଆଧ୍ୟାତ୍ମିକ ପ୍ରେମର ସଂପର୍କ ଥିଲା ତାଙ୍କର। ମୁଁ ଯଦି ଆଜି ଜୀବିକା ଅର୍ଜନ ପାଇଁ ସକ୍ଷମ ହୋଇପାରିଛି ଏବଂ ନିଜକୁ ଯାଜପୁର ଜିଲ୍ଲା ସତ୍ୟସାଇ ସଂଗଠନର ବେଦ ସଂଯୋଜକ, ଅଗ୍ରଗାୟକ ଓ ସେବକ ରୂପେ ନିଜକୁ ନିୟୋଜିତ କରିପାରିଛି ତାହା କେବଳ ସେହି ଶିଶିର ସାର୍‌ଙ୍କ ଆଶୀର୍ବାଦରୁ। ସେ ଆଜି ସ୍ଥୁଳ ଶରୀରର ନାହାଁନ୍ତି ମାତ୍ର ସୂକ୍ଷ୍ମ ଶରୀରରେ ସଦା ସର୍ବଦା ଆମ ନିକଟରେ ରହିଛନ୍ତି। ଈଶ୍ୱରଙ୍କ ନିକଟରେ ଏତିକି ପ୍ରାର୍ଥନା ତାଙ୍କର ଆତ୍ମା ପରମାତ୍ମାଙ୍କ ସହ ଲୀନ ହୋଇଯାଉ।

*ଶ୍ରୀ ସତ୍ୟସାଇ ସଂଗଠନ*
*ଯାଜପୁର ଜିଲ୍ଲା ବେଦ ସଂଯୋଜକ*





Digitized by PPRACHIN, SOA

# ବ୍ରହ୍ମ ଲୋକକୁ ଯାତ୍ରା

ରଶ୍ମିକାନ୍ତ ସାହୁ

ଅଖଣ୍ଡ ବିଶ୍ୱ ବ୍ରହ୍ମାଣ୍ଡର ସର୍ଜନା ଅତ୍ୟନ୍ତ ରହସ୍ୟମୟ। ଏ ରହସ୍ୟକୁ ଭେଦ କରିବା ସାଧାରଣ ମନୁଷ୍ୟ ପକ୍ଷେ ଅସମ୍ଭବ। ନିୟତିର ନିୟମ ସତ୍ୟ ଓ ଧର୍ମ ଦ୍ୱାରା ପରିଚାଳିତ ଏ ସମଗ୍ର ଜଗତ। ସୂର୍ଯ୍ୟ ଓ ଚନ୍ଦ୍ର ପରି ଧ୍ରୁବ ସତ୍ୟ ହେଉଛି ମୃତ୍ୟୁ। ଜୀବ ମରଣଶୀଳ ହୋଇଥିବାରୁ ଏ ପୃଥିବୀର ଅନ୍ୟ ନାମ ମର୍ତ୍ତ୍ୟଲୋକ। ଏଠାରେ ଜନ୍ମ ଲାଭ କରିଥିବା ସମସ୍ତ ପ୍ରାଣୀମାନଙ୍କୁ ଦିନେ ନା ଦିନେ ମରଶରୀର ତ୍ୟାଗ କରିବାକୁ ପଡ଼ିବ। ପଂଚଭୂତରେ ଗଢ଼ା ଏ ରକ୍ତ, ମାଂସର ଶରୀର ଏ ସଂସାର ରୂପକ ସାଗରରୁ ନିଶ୍ଚିହ୍ନ ହୋଇଯିବ। ଜୀବରୂପୀ ଶରୀର ଶବରେ ପରିଣତ ହେବ, ଏହା ହିଁ ପରମ ସତ୍ୟ। ସେଥିପାଇଁ ଭାଗବତରେ ଅଛି,

"ମର୍ତ୍ତ୍ୟମଣ୍ଡଳେ ଦେହ ବହୀ
ଦେବତା ହୋଇଲେ ମରଇ।"

ଏ ନଶ୍ୱର ଦେହ ସିନା ମରିଯାଏ କିନ୍ତୁ ଦେହୀ ଯେ ଅମର। ଏହା କେବଳ ଘଟ ପରିବର୍ତ୍ତନ କରିଥାଏ। ଦେହରୂପୀ ଦେବାଳୟରେ ଆତ୍ମାରୂପୀ ଦେହୀ ଦେବତା ସ୍ୱରୂପ।

"ପଂଚତତ୍ତ୍ୱେ ଗଢ଼ା ମାନବ ଶରୀର
ପ୍ରାଣ ଛାଡ଼ିଗଲେ ମଢ଼ା,
ସୃଷ୍ଟି ନିୟନ୍ତାଙ୍କ ଅପୂର୍ବ ସର୍ଜନା
ଧନ୍ୟ ଅଟେ ତାଙ୍କ ଲୀଳା।"



Digitized by PPRACHIN, SOA

କାୟା ସହିତ ଛାୟାପରି ଜନ୍ମ ସହିତ ମୃତ୍ୟୁ ଆସିଥାଏ । ସଂସାରରେ ଏପରି କିଛି ବ୍ୟକ୍ତି ଜନ୍ମ ଲାଭ କରି ତାଙ୍କ ଜୀବନ କାଳ ମଧ୍ୟରେ ଦେବ ସୁଲଭ ଗୁଣକୁ ସମାଜରେ ପ୍ରତିଫଳିତ କରି ସାଧାରଣ ମନୁଷ୍ୟରୁ ମହାମନିଷୀରେ ପରିଣତ ହୋଇଯାଆନ୍ତି । ପରଲୋକରେ ସେମାନେ ବ୍ରହ୍ମଲୋକକୁ ଗମନ କରନ୍ତି । ଏପରି ଏକ ବ୍ୟକ୍ତି ବିଶେଷ ଥିଲେ ମହନ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ ମହୋଦୟ । ଯାହାଙ୍କର ଗତ ୨୦୨୨ ମସିହା ଅଗଷ୍ଟ ମାସ ୧୨ ତାରିଖରେ ବ୍ରହ୍ମଲୀନ ଘଟିଛି ।

"'ଛ' ଖଣ୍ଡ ବାଉଁଶ ଲୋଡ଼ା ହେବ ଖାଲି
ମହାଯାତ୍ରାର ଯେ ପଥେ,
ରାମ ନାମ ସତ୍ୟ, ହରିନାମ ସତ୍ୟ
ତୁଣ୍ଡେ ରହିଥିବ ସାଥେ ।"

ଯାଜପୁର ଜିଲ୍ଲା ରସୁଲପୁର ବ୍ଲକ୍ ଅନ୍ତର୍ଗତ ଜଳସରପୁର ଗ୍ରାମଟି ପୂର୍ଣ୍ଣତୋୟା ବ୍ରାହ୍ମଣୀ ନଦୀର ଶାଖା ନଦୀ ଖରସ୍ରୋତା ତଟରେ ଅବସ୍ଥିତ । ଏହି ଗ୍ରାମରେ ପିତା ସ୍ୱର୍ଗତ ନିତ୍ୟାନନ୍ଦ ଭାରତୀ ଓ ମାତା ସ୍ୱର୍ଗତା ମାଧବୀ ଭାରତୀଙ୍କ ଗର୍ଭରୁ ୧୯୫୨ ମସିହା ମେ ମାସ ୧୦ ତାରିଖରେ ଏକ ମଧ୍ୟବିତ୍ତ ଏକାନ୍ନବର୍ତ୍ତୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଜନ୍ମ ପରେ ନବଜାତ ଶିଶୁଟି ପିତୃ ମାତୃ ଦତ୍ତ ନାମ ଶିଶିର କୁମାର ଭାରତୀ ନାମରେ ପରିଚିତ ହୋଇଥିଲେ । ପରିବାର, ଜ୍ଞାତି କୁଟୁମ୍ବ, ବଂଧୁ ପରିଜନଙ୍କ ଗହଣରେ ପିଲା ଶଶିକଳା ପରି ବଢ଼ିବାକୁ ଲାଗିଲା । ଶୈଶବ ତ୍ୟାଗ କରି ବାଲ୍ୟବସ୍ଥାରେ ପଦାର୍ପଣ କଲା । ତୁଳସୀ ଦୁଇ ପତ୍ରରୁ ବାସିଲା ପରି ଏ ଶିଶୁପୁତ୍ରଟି ଭବିଷ୍ୟତରେ ଜଣେ ଭଲ ମଣିଷ ହେବ ତାହା ତା'ର କାର୍ଯ୍ୟକଳାପରୁ ପ୍ରତୀୟମାନ ହେଉଥିଲା । ଗ୍ରାମସ୍ଥ ରାଧା ଗୋବିନ୍ଦ ପ୍ରାଥମିକ ବିଦ୍ୟାଳୟରୁ ପ୍ରାଥମିକ ଶିକ୍ଷା ଆରମ୍ଭ କରି ପରବର୍ତ୍ତୀ ସମୟରେ ହାଡ଼ିବନ୍ଧୁ ବିଦ୍ୟାପୀଠ, ଖଣ୍ଡିତର ଓ ଖଣ୍ଡିତର ଉଚ୍ଚବିଦ୍ୟାଳୟରୁ ୧୯୭୦ ମସିହାରେ ଏକାଦଶ ଶ୍ରେଣୀ ଉତ୍ତୀର୍ଣ୍ଣ ହୋଇଥିଲେ । ଶିକ୍ଷା ପ୍ରତି ଅହେତୁକ ଆଗ୍ରହ ଯୋଗୁ ଉଚ୍ଚ ଶିକ୍ଷା ପାଇଁ ଯାଜପୁର ସ୍ଥିତ N.C. ମହାବିଦ୍ୟାଳୟରେ ଅଧ୍ୟୟନ କରି କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ । ଜୀବନ ଧାରଣ ପାଇଁ ଶିକ୍ଷକତା ଭଳି ଏକ ପବିତ୍ର କର୍ମକୁ ବୃତ୍ତି ରୂପରେ ଗ୍ରହଣ କରିଥିଲେ ସତ କିନ୍ତୁ ପ୍ରବୃତ୍ତିରେ ଥିଲେ ପରୋପକାରୀ ଓ



Digitized by PPRACHIN, SOA

ନ୍ୟାୟବନ୍ତ। ଅଧ୍ୟୟନ, ଅଧ୍ୟାପନା ବ୍ୟତୀତ ଈଶ୍ୱରଙ୍କ ଉପରେ ଥିଲା ତାଙ୍କର ପୂର୍ଣ୍ଣବିଶ୍ୱାସ।

"ପଥରେ ପଥିକ ବାଟ ଥାପୁଥାପୁ
ସରିସରି ଯାଏ ଦିନ,
ପଥ ଖୋଜେ ଯେଉଁ ପଥିକ ପାଦକୁ
ସେ ହୁଏ ସଂସାରେ ଧନ୍ୟ।"

୧୯୭୬ ମସିହାରେ ମଧୁବନ ହାଇସ୍କୁଲରୁ ଶିକ୍ଷକତା ଜୀବନ ଆରମ୍ଭ କରି ପରେ ୧୯୭୭ରେ କ୍ଷେତ୍ରପାଳ ହାଇସ୍କୁଲ ଓ ୨୦୦୪ରୁ ୨୦୧୦ ମଧ୍ୟରେ ଖଣ୍ଡତର ହାଇସ୍କୁଲରେ ପ୍ରଚଳିତ ଶିକ୍ଷା ସହିତ ମୂଲ୍ୟବୋଧ ଓ ସଂସ୍କାର ପ୍ରଦାନ କରି ପ୍ରତିଟି ଛାତ୍ରଛାତ୍ରୀମାନଙ୍କ ହୃଦୟରେ ସୃଷ୍ଟି କରିଥିଲେ ଏକ ସ୍ୱତନ୍ତ୍ର ପରିଚୟ।

ଜଣେ କର୍ତ୍ତବ୍ୟନିଷ୍ଠ, ଶୃଙ୍ଖଳିତ, ସମୟାନୁବର୍ତ୍ତୀ, ଛାତ୍ରବତ୍ସଳ, ଆଦର୍ଶ ଶିକ୍ଷକ ରୂପେ ସର୍ବାଦୃତ। ତାଙ୍କର ହୃଦୟ ଥିଲା ଲହୁଣି ପରି କୋମଳ ତ ମନ ଚନ୍ଦ୍ର ପରି ଶୀତଳ। ଭଗବତ୍ ପ୍ରେମୀ ହୋଇଥିବାରୁ "ସତ୍ୟଂ ବଦ, ଧର୍ମଂ ଚର" ନୀତିରେ ପରିଚାଳିତ ହୋଇ ଏକ ଦିବ୍ୟ ଜୀବନ ଲାଭ କରିବା ସହିତ ସୁଗନ୍ଧିତ ପୁଷ୍ପପରି ମହତ ଗୁଣର ସୁଗନ୍ଧକୁ ସମାଜରେ ବିତରଣ କରିଥିଲେ। ଯୁଗ ଅବତାର ଭଗବାନ ଶ୍ରୀ ସତ୍ୟସାଇ ବାବାଙ୍କ ଦିବ୍ୟ ସଂଦେହ ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କ ଚରଣରେ ନିଜକୁ ସମର୍ପି ଦେବା ସହିତ ସଂଗଠନର ଆଧ୍ୟାତ୍ମିକ ଓ ସେବାମୂଳକ କାର୍ଯ୍ୟରେ ଅଂଶ ଗ୍ରହଣ କରି ଏମ ଅମୃତମୟ ଜୀବନ ନିର୍ବାହ କରିଥିଲେ। ରାମାୟଣ, ମହାଭାରତ, ଭାଗବତର ଦିବ୍ୟ କଥାମୃତ ସହିତ ସତ୍ୟସାଇ ବାବାଙ୍କ ଦିବ୍ୟ ସଂଦେଶକୁ ସତ୍‌ସଂଗ ଜରିଆରେ ଜନମାନସରେ ପ୍ରଦାନ କରି ଜଣେ ସୁବକ୍ତା ରୂପେ ଖ୍ୟାତି ଅର୍ଜନ କରିଥିଲେ।

ସମଗ୍ର ଜୀବନରେ କନକ ମୃଗପରି ପଦାର୍ଥର ମୋହ ତାଙ୍କୁ ତିଳେମାତ୍ର ପ୍ରଭାବିତ କରିପାରିନଥିଲା। ଶ୍ରେୟମାର୍ଗ ଧନଠାରୁ ଧର୍ମକୁ ଆପଣାର କରିଥିଲେ। ଶିକ୍ଷକ ଜୀବନରୁ ଅବସର ନେବାପରେ ତାଙ୍କ ପୂର୍ବ ପୁରୁଷଙ୍କ ଦ୍ୱାରା ନିର୍ମିତ ଶ୍ରୀ ଶ୍ରୀ ମଦନମୋହନ ଜୀଉ ମଠ, ଖଣ୍ଡିତରର ମହନ୍ତ ରୂପେ ତା ୦୮.୦୩.୧୯୯୧ ମସିହାରୁ ୧୨.୦୮.୨୨ ମସିହା ପର୍ଯ୍ୟନ୍ତ ଦାୟିତ୍ୱ ଗ୍ରହଣ କରିଥିଲେ। କାୟ, ମନ ଓ ବାକ୍ୟରେ ଈଶ୍ୱରଙ୍କ ପ୍ରତି ସମର୍ପିତ ଥିଲେ ସେ। ଜୀବନ କାଳ ମଧ୍ୟରେ



Digitized by PPRACHIN, SOA

ତ୍ରିକରଣ (ଚିନ୍ତା, ବଚନ, ଓ କର୍ମ)ର ସମନ୍ୱୟ ରକ୍ଷା କରିଥିଲେ। ଆଚରଣ ଓ ଉଚ୍ଚାରଣରେ ପ୍ରଭେଦ ନଥିଲା ତାଙ୍କର। ଭକ୍ତି, ଜ୍ଞାନ ଓ ବୈରାଗ୍ୟର ସୌନ୍ଦର୍ଯ୍ୟରେ ଥିଲେ ଦୀପ୍ତିମନ୍ତ। ତ୍ୟାଗ, ଅହିଂସା ଓ ପ୍ରେମରେ ସେ ଥିଲେ ମୂର୍ତ୍ତିମନ୍ତ ପ୍ରତୀକ। ସ୍ପଷ୍ଟବାଦୀ, ନିର୍ଭୀକତା ଓ ବିନୟୀ ଭଳି ଉତ୍ତମ ଗୁଣରେ ଥିଲେ ବଳିୟାନ। ଜଣେ ସମଭାବାପନ୍ନ ବ୍ୟକ୍ତି ଭାବରେ ସୁପରିଚିତ ଥିଲେ। ଏତଦ୍‌ଭିନ୍ନ ଗ୍ରାମସ୍ଥ ବିଭିନ୍ନ ଆଧ୍ୟାତ୍ମିକ ଓ ସାମାଜିକ ଅନୁଷ୍ଠାନର ସେ ଥିଲେ ପୃଷ୍ଠପୋଷକ।

"ବାଳକେ ମୋର ବୋଲକର
ବେଳହୁଁ ଗୋବିନ୍ଦ ସୁମର।"

ଏହି ଉକ୍ତିଟିକୁ ମନେରଖି ସଦାସର୍ବଦା ବିଭୁ ନାମ ସ୍ମରଣରେ ଜୀବନକୁ ଆନନ୍ଦମୟ ଓ ପ୍ରେମମୟ କରିପାରିଥିଲେ। ଏଭଳି ଏକ ମହାନ୍ ବ୍ୟକ୍ତିଙ୍କର ବ୍ରହ୍ମଲୀନ ଏ ସମାଜ ପାଇଁ ଅପୂରଣୀୟ କ୍ଷତି ହୋଇ ରହିବ। ତାଙ୍କର ଦେହବସାନରେ ଏ ଅଂଚଳବାସୀ ଜଣେ ବିଜ୍ଞ, ସମାଜସେବୀ, ଧର୍ମପରାୟଣ ବ୍ୟକ୍ତିଙ୍କୁ ହରାଇଛି ଏହା ନିଃସଂଦେହ। ଆପଣଙ୍କ ପାର୍ଥିବ ଶରୀର ଆମକୁ ଛାଡ଼ିଯାଇଛି ସତ କିନ୍ତୁ ଆପଣଙ୍କ ତ୍ୟାଗ, ତିତିକ୍ଷା, ଏକନିଷ୍ଠତା, ସତ୍‌ଉପଦେଶ ଆମପାଇଁ ସାଜିଛି ପ୍ରେରଣାରେ ପୂର୍ଣ୍ଣତୋୟା। ଶେଷରେ ଦିବଂଗତ ଅମର ଆତ୍ମାର ସଦ୍‌ଗତି କାମନା କରି ଶ୍ରଦ୍ଧା ସୁମନ ଜ୍ଞାପନ କରୁଛି।

"ମାୟା ମରୀଚିକା ଏ ସାରା ସଂସାର
ସାଥେ ନ ଯିବେଟି କେହି
ପତ୍ନୀ ପୁତ୍ର ବଂଧୁ ଶ୍ମଶାନ ପର୍ଯ୍ୟନ୍ତ
କର୍ମ ଯିବ ସାଥି ହୋଇ ॥"

*ସାଇ ଚରଣାଶ୍ରିତ*
*ସତ୍ୟ ସାଇ ସେବା ସମିତି, କଳଣ, ଯାଜପୁର*
*ମୋ- ୯୦୯୦୧୪୮୧୨୩*





Digitized by PPRACHIN, SOA

# ଗୀତା ସତ୍‌ସଂଗରେ ଯୋଗଦାନ

ଅଶୋକ କୁମାର ସାହୁ



ବାରବାଟୀ ଭଗବତ୍ ଗୀତା ସତ୍‌ସଂଗ ଏବଂ ଆମ ଚହଟା ଭଗବତ୍ ଗୀତା ପରିବାର ସହିତ ମୋର ସଂପୃକ୍ତି ଫଳରେ ଭଗବତ୍ ଗୀତା ପ୍ରତି ମୋର ଅନୁରକ୍ତ ବୃଦ୍ଧି ପାଇଲା। ବିଭିନ୍ନ ଗ୍ରାମମାନଙ୍କର ଶ୍ରଦ୍ଧାଳୁ ଭକ୍ତମାନଙ୍କର ଅନୁରୋଧ କ୍ରମେ, ପ୍ରାୟ ପାଂଚ ସାତବର୍ଷ ହେବ ଗୀତା ପାରାୟଣ ଏବଂ ଚର୍ଚ୍ଚା ହୋଇ ଆସୁଛି। ସେହି କ୍ରମରେ ମୁଁ ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡାଙ୍କ ନିମନ୍ତ୍ରଣ କ୍ରମେ ମଦନ ମୋହନ ମଠ ଖଣ୍ଡିତର, ବହୁବାର ଯୋଗଦାନ କରିଅଛି। ମହନ୍ତ ଶିଶିର କୁମାର ଭାରତୀ ଉପସ୍ଥିତ ସତ୍‌ସଂଗୀମାନଙ୍କୁ ଆଦର ସତ୍କାର କରିଥାନ୍ତି। ଅନୁପସ୍ଥିତ ଭକ୍ତମାନଙ୍କର କାରଣ ମଧ୍ୟ ଅନୁସନ୍ଧାନ କରିଥାନ୍ତି। ନିଜେ ମଧ୍ୟ ହାରମୋନିୟମ ବଜାନ୍ତି, ଅନ୍ୟମାନଙ୍କୁ ଭଜନ ପରିବେଷଣ କରିବା ପାଇଁ ଅନୁପ୍ରେରିତ କରନ୍ତି। ମୁଁ ଜଣେ ବାଥ୍‌ରୁମ ଗାୟକ, କିନ୍ତୁ ସଂକୀର୍ତ୍ତନ ସହିତ ସଂପୃକ୍ତି ଥିବାରୁ କେତେକ ଭଜନ କଣ୍ଠସ୍ଥ ଅଛି। ମହନ୍ତ ମହାରାଜାଙ୍କ ଅନୁରୋଧ କ୍ରମେ ମୁଁ ଥରେ ଦୁଇଟି ଭଜନ ପରିବେଷଣ କରିଥିଲି। ମୋ' ଭଜନର ପ୍ରଶଂସା କରି ଅନ୍ୟମାନଙ୍କ ଆଗରେ କହୁଥିବାର ପରେ ମୁଁ ଶୁଣିବାକୁ ପାଇଲି। ସେହି ଘଟଣାରୁ ସେ ଜଣେ ଗୁଣଗ୍ରାହୀ ବ୍ୟକ୍ତି ଏବଂ ଉତ୍ସାହ ଦାତା ଭାବେ ଗ୍ରହଣ କରିନେଲି।

ତାଙ୍କ ଅବର୍ତ୍ତମାନରେ ଅଧ୍ୟାପକ ପଣ୍ଡାଙ୍କ ପରିଚାଳନାରେ ଦୀର୍ଘଦିନ ଧରି ମଠରେ ଗୀତା ସତ୍‌ସଂଗ ଚଳାଇ ଆସୁଥିବା ବରିଷ୍ଠ ସତ୍‌ସଂଗୀ ତଥା ଆମ ଭଳି 'ଅର୍ବାଚୀନ'ମାନଙ୍କୁ ବିଗତ ଦୋଳପୂର୍ଣ୍ଣିମାରେ ମଠ ପକ୍ଷରୁ 'ସମ୍ବର୍ଦ୍ଧିତ' କରାଯାଇଅଛି। ନାନା କାରଣରୁ ପ୍ରାଥମିକ ସ୍ତରର ସତ୍‌ସଂଗୀମାନେ ଏବେ ସେହି କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିପାରୁ ନାହାଁନ୍ତି। ଗଲା କିଛି ମାସ ଧରି ଆମ ସତ୍‌ସଂଗର ଭକ୍ତମାନେ ସେହି କାର୍ଯ୍ୟକ୍ରମକୁ ଅତୁଟ ରଖିବା ପାଇଁ ଯତ୍ନଶୀଳ ହୋଇଅଛୁ। ଏହି ମହତ କର୍ମରେ ମଦନମୋହନଙ୍କର ଶୁଭ ଆଶୀର୍ବାଦ କାମନା କରୁଅଛୁ। ଜୟ ମଦନମୋହନ।



*ଚହଟା, ଧର୍ମଶାଳା*



Digitized by PPRACHIN, SOA

# ମୋ' ସ୍ମୃତିରେ

ଅନିରୁଦ୍ଧ ଗିରି

ଏ ସଂସାର ଯେମିତି ବଡ଼ ବିଚିତ୍ର, ଠିକ୍ ସେମିତି ସାଂସାରିକ ଜୀବନ ଯାତ୍ରା ମଧ୍ୟ ବିଚିତ୍ର। ଜାଗତିକ ଜଂଜାଳରେ ଭିନ୍ନ ଭିନ୍ନ ପଥ ଦେଇ ଚାଲୁଥିବା ମଣିଷର ଯାତ୍ରା କେଉଁଠି ସରିଯାଏ ତାହା ଆକଳନ କରିବା ସମ୍ଭବ ନୁହେଁ। ପାର୍ଥିବ ମୋହ- ମାୟାରେ ଆଛନ୍ନ ସମସ୍ତ ମାନ, ଅଭିମାନ, ଗର୍ବ, ଦଂଭ, ଭଲ ପାଇବା ନିମିଷକରେ ପାଣି ଫୋଟକା ପରି ମିଳାଇ ଯାଏ। ଭିନ୍ନ ଭିନ୍ନ ସଂପର୍କରେ ସମ୍ବନ୍ଧିତ ମଣିଷର ପାର୍ଥିବ ଶରୀରରୁ ଆତ୍ମା ଚାଲିଗଲା ପରେ ଶିବ ପାଲଟି ଯାଏ ଶବ। ସେହି ମଣିଷଟିର ସମସ୍ତ କର୍ମ ପ୍ରବାହକୁ ଆଧାର କରି ଆରମ୍ଭ ହୁଏ ନାନା ସାମାଜିକ ଲୌକିକ ସଂସାର। ଶ୍ରଦ୍ଧାଞ୍ଜଳି, ସ୍ମୃତି ଚାରଣ ପରି କେତେ କାର୍ଯ୍ୟମାନ ସଂପାଦିତ ହୁଏ ମଣିଷର ଆବର୍ତ୍ତମାନରେ ଯାହାର ଜୀବନ କାଳ ଯେତେ ପ୍ରଭାବକାରୀ, ଆଦରଣୀୟ ଏବଂ ପରୋପକାର ଭାବନାରେ ପରିପୁଷ୍ଟ ସେହି ବ୍ୟକ୍ତିର ଅନୁପସ୍ଥିତି ସେତେ ଗରିମାମୟ ତଥା ଔଜ୍ଜଲ୍ୟତାରେ ପରିପୂର୍ଣ୍ଣ।

ଏହିପରି ଜଣେ ପରିପୂର୍ଣ୍ଣ ମଣିଷ ଭାବରେ ମୋର ପରମାତ୍ମିୟ ପୂଜ୍ୟ କକା ଦିବଂଗତ ଶିଶିର ଭାରତୀ ତା' ୧୦/୦୪/୧୯୫୨ରେ ପିତା ନିତ୍ୟାନନ୍ଦ ଭାରତୀ ଓ ମାତା ମାଧବୀ ଭାରତୀଙ୍କ କୋଳମଣ୍ଡନ କରିଥିଲେ। ସେ ଏ ଅଂଚଳରେ ସାର୍ଥକ ନିଃସ୍ୱାର୍ଥପର ବ୍ୟକ୍ତି, ବାଗ୍ମୀ ଶିକ୍ଷାବିତ୍, ସମାଜ ସଂଗଠକ, ଆଧାତ୍ମିକ ଚେତନାର ବାର୍ତ୍ତା ବାହକ ଭାବରେ ସୁପରିଚିତ। ତୁଳସୀ ଦୁଇ ପତ୍ରରୁ ବାସିଲା ପରି ପିଲାଦିନରୁ ତାଙ୍କର ସରଳତା, ମେଧାବୀ ଗୁଣ, ବାକ୍ ପଟୁତା ତଥା ବ୍ୟାବହାରରେ ଶାଳୀନତା ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତର ପ୍ରାକ୍ ସୂଚନା ପ୍ରଦାନ କରିଥିଲା। ଉଚ୍ଚ ଶିକ୍ଷା ଲାଭ କରି ସେ ୧୯୭୬ ମସିହାରେ ମଧୁବନ ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା ଆରମ୍ଭ କରି ଶେଷରେ ଖଣ୍ଡିତର ଉଚ୍ଚ ବିଦ୍ୟାଳୟରୁ ୨୦୧୦ରେ ଅବସର ନେଇଥିଲେ।



Digitized by PPRACHIN, SOA

ଦୀର୍ଘ ୩୪ ବର୍ଷର ଶିକ୍ଷକତା ତାଙ୍କୁ ଅନେକ ଜନାଦୃତି ଆଣି ଦେଇଥିଲା । ଛାତ୍ର ବତ୍ସଳ ଶିକ୍ଷକ, ସୁଦକ୍ଷ ସଂଗଠନ ଏବଂ ଅନୁଶାସନରେ ଦୃଢ଼ମନା ବ୍ୟକ୍ତି ଭାବରେ ସେ ଥିଲେ ଅନନ୍ୟ ଓ ଅସାଧାରଣ । ପର ଆପଣାର ଭେଦ ଭାବ ହୀନ ତାଙ୍କ ହୃଦୟ ବାର୍ତ୍ତା ନିରଳସ ଜୀବନର ବିରଳ ଦୃଷ୍ଟାନ୍ତ ଥିଲା । ସହଜରେ ଅନ୍ୟ ସହ ମିଶି ସାମାଜିକ କାର୍ଯ୍ୟ ସଂପାଦନା କରିବା ତାଙ୍କ ଜୀବନର ଅନ୍ୟ ଏକ ବଳିଷ୍ଠ ଦିଗ । ଶିକ୍ଷକତାରୁ ଅବସର ଗ୍ରହଣ କରିବା ପରେ ସାଂସାରିକ ଜଂଜାଳରୁ ନିଜକୁ କର୍ମମୁକ୍ତ କରି ଆଶ୍ରମ ଧର୍ମ ପାଳନ ପୂର୍ବକ ଶ୍ରୀ ଶ୍ରୀ ମଦନମୋହନଙ୍କ ମନ୍ଦିରରେ ମହନ୍ତ ମହାରାଜ ହୋଇଥିଲେ । ଧର୍ମ- ଅର୍ଥ- କାମ- ମୋକ୍ଷ ଏହି ଚତୁଃବର୍ଗ ଆଧାତ୍ମିକ ଚେତନା ତାଙ୍କ ଅବଶିଷ୍ଟ ଜୀବନର ଶ୍ରେଷ୍ଠ ମାର୍ଗ ଥିଲା । ଭୋଗବାଦକୁ ତ୍ୟାଗ କରି ତ୍ୟାଗ ମାର୍ଗରେ ସେ ନିଜ ଜୀବନକୁ ସମର୍ପିତ କରିଥିଲେ ଅକୁଣ୍ଠ ଚିତ୍ତରେ । ଶକ୍ତି ଆରାଧନା ସ୍ୱରୂପ ସେ ମଂଗଳା ମନ୍ଦିର ପ୍ରତିଷ୍ଠା କରିଥିଲେ । ଶିବ ମନ୍ଦିର, ଯଜ୍ଞେଶ୍ୱର ମନ୍ଦିର ଓ ଗ୍ରାମ ଦେବତୀ ମନ୍ଦିର ତାଙ୍କର ଧର୍ମୀୟ ଭାବନାର ସ୍ୱତନ୍ତ୍ର ପରିଚୟ ପ୍ରଦାନ କରେ । ସଦା ଚଳଚଂଚଳ ପିପାସୁ ଏହି ଧର୍ମଜ୍ଞ ପ୍ରଜ୍ଞାଦୀପ୍ତ ବ୍ୟକ୍ତିଙ୍କର ଜୀବନର ପ୍ରଦୀପ ୧୨/୦୮/୨୦୨୨ରେ ସଂସାରରୁ ସବୁଦିନ ପାଇଁ ଅପସାରିତ ହୋଇଗଲା । ପରିବାର, ପଡ଼ୋଶୀ, ଆତ୍ମୀୟସ୍ୱଜନ ତଥା ସାରା ଅଂଚଳରେ ଅବିସ୍ମରଣୀୟ ହୋଇ ରହିଗଲେ । ଜୀବନ ସରିଗଲା ସତ ମାତ୍ର ତାଙ୍କର ଦର୍ଶନ ଓ ନିରଳସ କର୍ମପାଇଁ ସେ ସବୁରି ହୃଦୟରେ କାଳକାଳ ପାଇଁ ରହିଥିବେ, ଏହା ଧ୍ରୁବ ସତ୍ୟ ।

"ସଂସାର କାନନେ ଫୁଟେ ଯେତେ ଫୁଲ
ସବୁ ନୁହେଁ ସୁବାସିତ,
ମହତ କରମ ମହତ ବିତରେ
କାଳ ବି ହେଲେ ଅତୀତ ।"

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ

*କାଦବରାଂଗ, ଭଦ୍ରକ*





Digitized by PPRACHIN, SOA



# ଶ୍ରଦ୍ଧାଞ୍ଜଳି

## ପ୍ରମୋଦ ପଣ୍ଡା

ଶ୍ରୀ ଘାଟମଂଗଳାୟୈ ନମଃ। ଶ୍ରୀ ଶ୍ରୀ ମଦନମୋହନ ଦେବାୟ ନମଃ।

ଖଣ୍ଡିତର ମଠ ଆଦିଶ୍ୱଦ୍ ଅଧିକାରୀ ଶ୍ରୀ ଶ୍ରୀ ଶିଶିର ଭାରତୀ ଗୋସ୍ୱାମୀ। ସେ ଜଣେ ଥିଲେ ହେଡ଼ମାଷ୍ଟର। ତାଙ୍କର ପରାମର୍ଶରେ ମଠ ଚାଲୁଥିଲା ଏବଂ ବ୍ରାହ୍ମଣ, ବାରିକ, ମାଳି, କମାର, କୁମ୍ଭାର ଏମାନେ ମଠର ସେବକ ତ ସେବାକାରୀ। ସେମାନେ ମଠ ସହିତ ଘାଟମଂଗଳା, ଯଜ୍ଞେଶ୍ୱର, ବ୍ରହ୍ମେଶ୍ୱର, ଯଜ୍ଞାଳି ଆଦି ଦେବଦେବୀଙ୍କୁ ପୂଜା କରୁଥିଲେ। ପୂଜକ ଶ୍ରୀ ପ୍ରମୋଦ ପଣ୍ଡାଙ୍କ ସହିତ ମିଶି ଗ୍ରାମବାସୀଙ୍କ ମନୋନୀତ ହିସାବରେ ମଂଗଳା ମନ୍ଦିର ଉନ୍ନୟନ କାର୍ଯ୍ୟକ୍ରମ ଚାଲୁଅଛି। ମଠର ଉନ୍ନୟନ କାର୍ଯ୍ୟ ସେ କରୁଥିଲେ। ତାଂକ କହିବା ହିସାବରେ କିଛି ବାକି ରହିଗଲା। ସେ ଜଣେ ସନାତନ ବୈଷ୍ଣବଧର୍ମର ଅଧିକାରୀ। ହଂସ ଦୀକ୍ଷା, ପରମହଂସ ଦୀକ୍ଷା ଦେବାର ଅଧିକାରୀ। ସେଥିପାଇଁ ପୁରଧା ବ୍ରାହ୍ମଣ, ବାରିକଙ୍କୁ ଧରି ପୁରୀ, ପଟାମୁଣ୍ଡେଇ, ମାର୍କୋଣା, କାଦବରାଙ୍ଗ, ଭଦ୍ରକ, ବାଲିଆପାଳ, ବରଦା, ରାମଚନ୍ଦ୍ରପୁର ଏବଂ ପାଖ ଅଂଚଳ ସୋଲପଟା, ପାଣିକୋଇଲି, ଓଟିନ୍ଦା, ବଡ଼ଚଣା ଆଦି ଅଂଚଳର ଲୋକଙ୍କୁ ବହୁତ ପରାମର୍ଶ ଶିକ୍ଷା ଦେଇଛନ୍ତି। କିନ୍ତୁ ସେ ଆଜି ଇହଧାମରେ ନାହାଁନ୍ତି। ସେ ସ୍ୱର୍ଗଧାମରେ ବାସ କରିଛନ୍ତି। ସେ ପରିବାର ଓ ସହଯୋଗୀଙ୍କୁ ଛାଡ଼ି ଚାଲି ଯାଇଅଛନ୍ତି। ତାଙ୍କର ବାର୍ଷିକ ଉତ୍ସବ ଆସନ୍ତା ଭ୍ରାଦବ ମାସ ୧୪ ଦିନ ଶ୍ରାବଣ ପୂର୍ଣ୍ଣିମା ବୁଧବାର ଅଗଷ୍ଟ ତା- ୩୧.୦୮.୨୦୨୩।

କ୍ଷଣଭଂଗୁର ଦୁନିଆରେ କ୍ଷଣକ ପାଇଁ ବୁଦ୍‌ବୁଦ୍ ପରି ଦେଖା ଦେଉଥିବା ଜୀବାତ୍ମା ମନୁଷ୍ୟରୂପୀ ଘଟରେ ଆବିର୍ଭାବ ଓ ତିରୋଭାବ ଏକ ଚିରନ୍ତନ ସତ୍ୟ। ଏହି ସତ୍ୟତା ଭିତରେ ପ୍ରକଟିତ ହୋଇଥାଏ। ମାନବିକତା, ମାନବିକତାର ତାତ୍ପର୍ଯ୍ୟ, ମନୁଷ୍ୟ ସମାଜରେ ମନୁଷ୍ୟ ପାଇଁ ଉତ୍ସର୍ଗୀକୃତ। ତ୍ୟାଗ, ସ୍ନେହ, ମମତା, ବିତରଣ କରି କୀର୍ତ୍ତି ସ୍ମୃତି ଛାଡ଼ି ଦେଇଯାଇଛନ୍ତି। ଜଗତ ଜନନୀ ମା' ଘାଟ ମଂଗଳାଙ୍କ ମହିମା କେଉଁ ଆଦିମ କାଳରୁ ଏ ଅଂଚଳରେ ପ୍ରକଟିତ ହୋଇଛି। ତାଙ୍କରି ଭକ୍ତ ଶିଶିର ବାବୁ ତାଙ୍କ ମନ୍ଦିର ନିର୍ମାଣ କାର୍ଯ୍ୟ କରିଥିଲେ। ସେ ଇହଲୀଳା ସମ୍ବରଣ କଲା ପରେ ମଂଗଳା ମନ୍ଦିର ମଦନମୋହନ ମଠ ଶୂନ୍ୟ ଶୂନ୍ୟ ଲାଗୁଛି। ମୁଁ ଏତିକି ପ୍ରାର୍ଥନା କରେ ତାଙ୍କ ଅମର ଆତ୍ମାର ସଦ୍‌ଗତି ହେଉ।

ଖଣ୍ଡିତର





Digitized by PPRACHIN, SOA

# ମଦନ ମୋହନ ମଠରେ ଭଗବତ୍‌ଗୀତା ପାରାୟଣ ଓ ତହିଁରେ ମୋର ସଂପୃକ୍ତି

ବିଚିତ୍ରା ନନ୍ଦ ରାଉତ



ମଦନ ମୋହନ ମଠ ଖଣ୍ଡିତରଠାରେ ପ୍ରତି ପୂର୍ଣ୍ଣିମାକୁ ଭଗବତ ଗୀତା ପାରାୟଣ ଅନୁଷ୍ଠିତ ହୋଇ ଆସୁଅଛି । ଗଲା କିଛି ବର୍ଷ ଧରି ଆମ ଗାଁ' ମାଣତିରରୁ ଭଗବତ୍ କାର୍ଯ୍ୟରେ ମୋର ସଂପୃକ୍ତି ବିଭିନ୍ନ ଉତ୍ସବାନୁଷ୍ଠାନମାନଙ୍କରେ ଯୋଗଦାନ ତଥା- ବାରବାଟୀ ଭଗବତ୍ ଗୀତା ସତ୍‌ସଂଗ ସହିତ ମୋର ସଂପୃକ୍ତି ହେତୁ ସେ ଦିଗକୁ ଆକୃଷ୍ଟ ହୋଇଥିଲି । ସୁଶାନ୍ତ ସାର୍‌ଙ୍କ ପ୍ରେରଣାରେ ତଥା ନିମନ୍ତ୍ରଣ କ୍ରମେ ମଦନ ମୋହନ ମଠରେ ଭଗବତ୍ ଗୀତା ପାରାୟଣରେ ବହୁବାର ଯୋଗଦାନ କରିଅଛି । ମହନ୍ତ ଶିଶିର କୁମାର ଭାରତୀଙ୍କର ସମସ୍ତ ସତ୍‌ସଂଗୀମାନଙ୍କୁ ଶ୍ରଦ୍ଧା ଆଦର ଆତିଥେୟତା ଦେବାରେ ମୁକ୍ତ ହସ୍ତତା ଅନୁଭବ କରିଛି । ସମାନ ସମୟରେ ମଧ୍ୟ ଭଗବତ୍‌ଗୀତା ଦୈନିକ ଅଧ୍ୟୟନ ଓ ସତ୍‌ସଂଗରେ ଏହାର ପଠନ, ପାଠନ, ଆଲୋଚନା, ବିଶ୍ଳେଷଣ ଚିନ୍ମୟ ମିଶନରୁ ଅନ୍‌ଲାଇନ୍‌ରେ ସ୍ୱାମୀଜୀମାନଙ୍କର ଭଗବତ୍‌ଗୀତା ବାଖ୍ୟା ମୋତେ ସେ ଦିଗରେ ଅନୁପ୍ରାଣିତ କରିଛି । ମହନ୍ତ ଶିଶିର କୁମାର ଭାରତୀ ଭଗବତ୍‌ଗୀତାକୁ ଯେପରି ଆଦର କରନ୍ତି ଅନୁରୂପ ଭାବରେ ଗୀତା ପ୍ରେମୀମାନଙ୍କୁ ମଧ୍ୟ ଶ୍ରଦ୍ଧା କରିଥାନ୍ତି । ପ୍ରତ୍ୟେକ ଭଗବତ୍ ପ୍ରେମୀଙ୍କୁ ନାମ ଧାମ ପ୍ରଭୃତି ଜିଜ୍ଞାସା କରିଥାନ୍ତି । ଭୋଜନ ସମୟରେ ମଧ୍ୟ କାହାର କ'ଣ ପ୍ରୟୋଜନ ପଚାରି ବୁଝନ୍ତି । ନିକଟ ଅତୀତରେ 'ମଦନ ମୋହନ ମଠ ଐତିହ୍ୟ ଓ ସଂସ୍କୃତି' ପୁସ୍ତକ ପ୍ରକାଶିତ ହୋଇଥିଲା । ସେହି ଅବସରରେ ଉପସ୍ଥିତ ସାଧୁ ମହନ୍ତ ବିଦ୍ୱାନମାନଙ୍କ ଦ୍ୱାରା ୪୦ରୁ ଅଧିକ ଗୀତାପ୍ରେମୀଙ୍କୁ ଭଗବତ୍‌ଗୀତା ପ୍ରଦାନ କରିଥିଲେ ।

ତାଙ୍କର ଆକସ୍ମିକ ବିୟୋଗ ଫଳରେ ମଠରେ ପାଳିତ ହେଉଥିବା ଭଗବତ୍‌ଗୀତା ସତ୍‌ସଂଗୀମାନେ ବୟସାଧିକ କାରଣରୁ ଯୋଗ ଦେଇପାରୁ ନାହାଁନ୍ତି । ବ୍ୟକ୍ତିଗତ ଭାବରେ ମୁଁ ଏବଂ ଆମ ସତ୍‌ସଂଗର ସଂଗୀମାନେ ବର୍ତ୍ତମାନ ଏହାକୁ ପରିଚାଳନା କରିବାର ଦାୟିତ୍ୱ ଗ୍ରହଣ କରିଛୁ । ପରିଣାମ ମଦନମୋହନଙ୍କ ହାତରେ ।

ମାଣତୀର





Digitized by PPRACHIN, SOA



# ଅଭୁଲା ସ୍ମୃତି

**ଭଗିରଥ ପାଣି**

ଶ୍ରୀ ମଦନମୋହନ ଜୀଉ ମଠଟି ବିରାଜକ୍ଷେତ୍ର ଯାଜପୁରର ରସୁଲପୁର ଅନ୍ତର୍ଗତ କେଉଟ ଲଗୁଆ ଖଣ୍ଡିତରରେ ଅବସ୍ଥିତ। ଏହି ପବିତ୍ର ମଠଟି ଖରସ୍ରୋତା ନଦୀର ତଟ ଦେଶରେ ଅବସ୍ଥାନ କରିଛି। ଶିଶିର କୁମାର ଭାରତୀ ଗୋସ୍ୱାମୀ ଏହି ମଠର ମଠାଧୀଶ ଥିଲେ। ତାଙ୍କ ମଠାଧୀଶ କାର୍ଯ୍ୟକାଳ ମଧ୍ୟରେ ଶ୍ରୀ ମଦନମୋହନ ଜୀଉଙ୍କର ମନ୍ଦିର, ସଦାଶିବ ମନ୍ଦିର, ବୈଠକଗୃହ, ଜୀଉଙ୍କର ଝୁଲଣ ଯାତ୍ରା ଗୃହ, ଶାଳଗ୍ରାମ ପୋଥି ଗାଦି ଗୃହ ପ୍ରଭୃତିର ଉନ୍ନତିକରଣ ହୋଇପାରିଛି। ବିଶେଷକରି ଶ୍ରୀ ମଦନମୋହନ ଜୀଉଙ୍କ ସୁଦୃଶ୍ୟ ମନ୍ଦିର ପୂର୍ଣ୍ଣାଙ୍ଗ ନିର୍ମାଣ କରିବାରେ ସକ୍ଷମ ହୋଇପାରିଛନ୍ତି। ମୋଟ ଉପରେ କହିବାକୁ ଗଲେ ଶିଶିର କୁମାର ଭାରତୀ ଗୋସ୍ୱାମୀ ଜଣେ ସୁଦକ୍ଷ ମଠାଧୀଶ ଥିଲେ। ଏଠାରେ ଥିବା ମଦନମୋହନ ମୁଗୁନି ପ୍ରସ୍ତର ନିର୍ମିତ ବିଗ୍ରହ ଷଡ଼ଭୁଜ ବିଷ୍ଣୁ ଏବଂ ଉତ୍ତରକୁ ମୁଖ କରି ବିଷ୍ଣୁ ପୂଜା ପାଇବା ଏଠାରେ ଏକ ନିଆରା ପରମ୍ପରା। ସେ ଚାରି ହସ୍ତରେ ଶଂଖ, ଚକ୍ର, ଗଦା, ପଦ୍ମ ଓ ଦୁଇ ହସ୍ତରେ ବଂଶୀ ବାଦନ କରିବାର ବିଗ୍ରହ ଓ ପାଦ ତଳେ ଗୋବତ୍ସା ରହିଅଛନ୍ତି, କିନ୍ତୁ ରାଧା ନାହାଁନ୍ତି। ଏକାକୀ କୃଷ୍ଣ ମୂର୍ତ୍ତି ଓ ବିଷ୍ଣୁ ମନ୍ତ୍ରରେ ପୂଜା ପାଆନ୍ତି।

ମଠରେ ଅନେକ ପର୍ବ ହୋଇ ଆସୁଛି। ବଡ଼ ବଡ଼ ପୂଜା ପାର୍ବଣରେ ଶିଶିର ସାର୍ ମୋତେ ମନେପକାଇ ଥାଆନ୍ତି ଓ ପୂଜାପାଇଁ ଡାକନ୍ତି। ପୂର୍ଣ୍ଣମୀରେ ଗୀତା ପାରାୟଣ, ବିଷ୍ଣୁ ସହସ୍ରନାମ ପାଠ, ଝୁଲଣ ଯାତ୍ରା, ଦୁର୍ଗାପୂଜା, ଉପଚାର ପୂଜା, ଅଭିଷେକ ପୂର୍ଣ୍ଣମୀ ଇତ୍ୟାଦିରେ ଦେବପୂଜାର ସୁଯୋଗ ଦେଉଥିଲେ। ତାଙ୍କ ଅନ୍ତେ ତାଙ୍କ ପତ୍ନୀ ବାସନ୍ତୀ ଦେବୀ ଓ ପୁଅ ଦେବାଶିଷ ମଧ୍ୟ ସେ ସୁଯୋଗ



Digitized by PPRACHIN, SOA

ମତେ ଦେଉଛନ୍ତି । ଶିଶିର ସାର୍ ତାଙ୍କ ଅବସର ସମୟରେ ମୋ' ସହିତ ଆଧ୍ୟାତ୍ମିକ ଆଲୋଚନା କରନ୍ତି । ସେ ସଦାବେଳେ କୁହନ୍ତି, ଭଗବାନଙ୍କ ପାଇଁ କାର୍ଯ୍ୟ ବ୍ୟସ୍ତତାରେ ଯଦି ସମୟ କାଢ଼ି ନ ପାରୁଛ, ତେବେ ତୁମେ ଯେଉଁ କାର୍ଯ୍ୟ କରୁଛ ତାଂକୁ ଭଗବାନଙ୍କୁ ସମର୍ପଣ କର । ତାଙ୍କୁ ଅନ୍ତରରେ ଟିକେ ସ୍ମରଣ କରୁଥାଅ । ଶିଶିର ସାର୍ ସର୍ବଦା ମୋତେ ସ୍ନେହ, ଆଦର କରୁଥିଲେ । ତାଙ୍କର ଏସବୁ ସ୍ମୃତି ମୋ' ପାଖରେ ଅଭୁଲା ହୋଇ ରହିବ । ଶିଶିର ସାର୍ ଥରେ କହିଥିଲେ, ମଦନମୋହନ ଯଦି ପଚାରିବେ ତୁମେ କେବେ ମରିବାକୁ ଚାହୁଁଛ । ତେବେ ମୁଁ କହିବି କି ପ୍ରଭୁ ମୋତେ ଝୁଲଣ ଯାତ୍ରାରେ ନେଇଯାଅ । ତାଙ୍କର ଏ ଅଭିଳାଷ ମଧ୍ୟ ମଦନମୋହନ ପୂର୍ଣ୍ଣ କରିଛନ୍ତି । ମୁଁ ମଧ୍ୟ ଭଗବାନଙ୍କ ପାଖରେ ପ୍ରାର୍ଥନା କରୁଛି ତାଂକ ଆତ୍ମାର ସଦ୍‌ଗତି ହେଉ । ମୁଁ କେବେ ଲେଖାଲେଖି କରେନି । ବାସନ୍ତି ଦେବୀ ବାଧ୍ୟ କରିବାରୁ କିଛି ଲେଖିଛି । ଯଦି କିଛି ଭୁଲ ଥାଏ କ୍ଷମା କରିବେ ।

*ଖଣ୍ଡିତର, ଯାଜପୁର*







Digitized by PPRACHIN, SOA

# ପରଂପରା ଓ ପୁରୋଦୃଷ୍ଟିରେ

# ମଦନମୋହନ ମଠ



ପ୍ରାଧାପକ ସୁଶାନ୍ତ କୁମାର ପଣ୍ଡା

ସଭ୍ୟତା ଜୟଯାତ୍ରାର ଆଦି କାଳରୁ ମନୁଷ୍ୟ ମନରେ ଅଦୃଶ୍ୟ ଶକ୍ତି ପ୍ରତି ଭୟ, ପ୍ରାପ୍ତି, କାମନା ପୂର୍ତ୍ତି ପ୍ରଭୃତି ଭାବ- ଭାବନା ବିଚାର ରହି ଆସିଛି। ହୁଏତ ଏହା ପୂର୍ବରୁ ମଧ୍ୟ। ବିଭିନ୍ନ ଗୋଷ୍ଠୀ, ଦେଶ- କାଳ ନେଇ ଏହାର ବିକାଶ ବିବିଧ ଦିଗରେ ସଂପ୍ରସାରିତ ହୋଇ ସାଂପ୍ରତିକ କାଳ ସ୍ଥିତିରେ ପହଂଚିଛି। ପଂଚ ଭୌତିକ ପ୍ରକୃତିର ପରିପ୍ରକାଶକୁ ବୈଦିକ ଋଷି ଯଜ୍ଞ ମାଧ୍ୟମରେ ଉପାସନା କରୁଥିବାର ଜଣାଯାଏ। ପ୍ରାକୃତିକ ବିପର୍ଯ୍ୟୟରୁ ନିଜକୁ ତଥା ସମାଜକୁ ସୁରକ୍ଷାର ଭାବନା ଏଥିରେ ନିହିତ।

ସମୟକ୍ରମେ ସାମାଜିକ ପରିବର୍ତ୍ତନ, ଚିନ୍ତନର ବିକାଶ ସହ ଈଶ୍ୱରୀୟ ଆରାଧନାର ବିବର୍ତ୍ତନ ପରିଲକ୍ଷିତ। ଶାସକ- ରାଜା ଆଦିଙ୍କ ବିଚାର ଏବଂ ତଦନୁଗତ ଶିକ୍ଷା ବ୍ୟବସ୍ଥା ସହ ଦେବାଳୟ, ମଠ, ମନ୍ଦିର ଆଦିର ସ୍ଥାପନ- ବିକାଶ ଲକ୍ଷିତ। ଜଗଦ୍‌ଗୁରୁ ଶଂକର ହିନ୍ଦୁଧର୍ମର ପୁନରୋତ୍‌ଥାନ ପର୍ଯ୍ୟାୟରେ ସମଗ୍ର ଭାରତ ପାଦରେ ପରିଭ୍ରମଣ ପୂର୍ବକ ଅଦ୍ୱୈତ ବେଦାନ୍ତ ସିଦ୍ଧାନ୍ତର ସ୍ଥାପନ ସହିତ ମଠ- ମନ୍ଦିର କେତେକର ପୁନର୍ବିନ୍ୟାସ କରିଥିଲେ।

ଭାରତର ଉତ୍ତରରେ ବଦ୍ରୀନାଥ, ଦକ୍ଷିଣରେ ରାମେଶ୍ୱର, ପଶ୍ଚିମରେ ଦ୍ୱାରିକାନାଥ ଏବଂ ପୂର୍ବରେ ଜଗନ୍ନାଥ ପ୍ରଭୃତି ପୀଠମାନଙ୍କରେ ମଠମାନ ସ୍ଥାପନ କରିଥିଲେ। ସମଗ୍ର ଭାରତ ବର୍ଷରେ ଆର୍ଯ୍ୟ ସଂସ୍କୃତି ବିଶେଷକରି ବେଦାନ୍ତ ଦର୍ଶନର ଆଧାରରେ ଜୀବନର ମହତ୍ତ୍ୱ ଉପଲବ୍ଧି ପୂର୍ବକ ଚତୁର୍ବର୍ଗ ପୁରୁଷାର୍ଥ ଲାଭର ରାଜମାର୍ଗ ନିର୍ମାଣ କରିଗଲେ। ସେହି ବିଧାନ ସଂରକ୍ଷଣ, ସଂବର୍ଦ୍ଧନ ତଥା ସଂଚାର ଆଦି ନିମନ୍ତେ ଦଶନାମୀ ସାଧୁ ସଂପ୍ରଦାୟ ସୃଷ୍ଟି କରି ଯାଇଥିଲେ। ଯଥା- (୧) ତୀର୍ଥ, (୨) ଆଶ୍ରମ, (୩) ବନ, (୪) ଅରଣ୍ୟ, (୫) ଗିରି, (୬) ପର୍ବତ, (୭) ସାଗର, (୮) ସରସ୍ୱତୀ, (୯) ଭାରତୀ, (୧୦) ପୁରୀ।



Digitized by PPRACHIN, SOA

ଭଗବତ୍ ଗୀତା, ବ୍ରହ୍ମସୂତ୍ର ଏବଂ ଉପନିଷଦ (ବେଦାନ୍ତ) ଯାହା ଜ୍ଞାନ ପ୍ରଧାନ ତଥା ଭାରତୀୟ ସଂସ୍କୃତିର ନିର୍ଯ୍ୟାସ। ଏହି ଜ୍ଞାନ ମାର୍ଗରେ ସାଧାରଣ ଜନତାଙ୍କ ମଧ୍ୟରେ ଈଶ୍ୱରୀୟ ସିଦ୍ଧାନ୍ତକୁ ଗ୍ରାହ୍ୟ କରାଇବା ଥିଲା ଶଂକରାଚାର୍ଯ୍ୟଙ୍କର ମୂଳ ଲକ୍ଷ୍ୟ। ସାଧାରଣ ଭାବେ ଲକ୍ଷ୍ୟ କଲେ ଅତି ସହଜରେ ଜାଣିହେବ ଯେ ପୂର୍ବକଥିତ ଦଶନାମୀ (ସାଧୁ) ସଂଜ୍ଞାଧାରୀମାନେ ସମଗ୍ର ଭାରତବର୍ଷର ସର୍ବତ୍ର ବିଦ୍ୟମାନ। ସାଂପ୍ରତିକ ସମାଜ ମୁଖ୍ୟତଃ ବୈଶ୍ୟ ବୃତ୍ତି (ବିଚାର)ରେ ସର୍ବତ୍ର ପରିଚାଳିତ। 'ଦେ-ନେ'ର ଗଭୀର ପ୍ରଭାବ ଯେ କେହି ସାଧାରଣ ପରୀକ୍ଷଣରୁ ପରିଜ୍ଞାତ ହୋଇପାରିବ। ପରିବର୍ତ୍ତନ ହେଉଛି ପ୍ରକୃତିର ଧର୍ମ ଏବଂ ତାହା ସ୍ୱାଗତଯୋଗ୍ୟ କିନ୍ତୁ ଅତଡ଼ା ଛିଡ଼ି ପଡ଼ିବା ପରି ପରିବର୍ତ୍ତନକୁ କେହି ହେଲେ ଗ୍ରହଣ କରିନପାରନ୍ତି। ପୌରାଣିକ କାଳର ଗ୍ରନ୍ଥମାନଙ୍କରେ ଅଧିକତର ସାତ୍ତ୍ୱିକ ବିଚାର, ଅନ୍ୟ ଭାଷାରେ କହିଲେ ଦୃଶ୍ୟ ଶକ୍ତି ଅପେକ୍ଷା ଅଦୃଶ୍ୟ ଶକ୍ତି ଉପରେ ସମଧିକ ପ୍ରାଧାନ୍ୟ ଥିଲା। ତଦନୁପାତରେ ସାଧାରଣ ଜନତା ମଧ୍ୟରେ ପାପ- ପୁଣ୍ୟ ଧାରଣା ହେତୁ ଜୀବନଯାତ୍ରାରେ ପ୍ରବଂଚନା, ପ୍ରତାରଣା, ଅସତ୍ୟ ଇତ୍ୟାଦି ଖୁବ୍ କମ୍ ପରିମାଣରେ ଲକ୍ଷିତ ହେଉଥିଲା। ପରବର୍ତ୍ତୀ କାଳରେ କ୍ଷତ୍ରିୟ ବୃତ୍ତି ଅର୍ଥାତ୍ ଜନସାଧାରଣଙ୍କୁ ଆଭ୍ୟନ୍ତରୀଣ, ବାହ୍ୟ ତଥା ପ୍ରକୃତି ପୀଡ଼ାରୁ ସୁରକ୍ଷା କରିବା ପ୍ରମୁଖ ରାଜଧର୍ମ ଭାବେ ବିବେଚିତ ହେଉଥିଲା। ସଂପ୍ରତି କେବଳ ବୈଶ୍ୟବୃତ୍ତି, ବାହାରକୁ ଜନ କଲ୍ୟାଣ ଦେଖାଯାଉଥିଲେ ମଧ୍ୟ ତହିଁରୁ ଲାଭ- କ୍ଷତିର ବିଚାର ସର୍ବାଦୌ କରାଯାଉଛି। ଅଧିକାଂଶ ସେବା ନାମରେ ଲାଭ ଲୋଭର ଗଂଧ ସ୍ପଷ୍ଟ ବାରି ହୋଇ ପଡୁଛି। ଭୋଜ୍ୟ ପଦାର୍ଥଠାରୁ ସୌଖୀନ ପଦାର୍ଥ ପର୍ଯ୍ୟନ୍ତ ସର୍ବତ୍ର କେବଳ ଅର୍ଥ- ଅର୍ଥ- ଅର୍ଥ ବିଚାର ଅବାରିତ ଚାଲୁଛି। ସନ୍ଥ କବି ଭୀମ ଭୋଇଙ୍କ ଭାଷାରେ- 'କିବା ରାଜପୁତ୍ର କିବା ସାଧୁ ସନ୍ଥ, ସର୍ବେ ହୋଇବେ ଦୁର୍ଜନା'।

ସୁତରାଂ ସାତ୍ତ୍ୱିକ ଆଦର୍ଶ- ଦର୍ଶନରେ ପ୍ରତିଷ୍ଠିତ ଦେବାଳୟ, ମଠ, ମନ୍ଦିର ଏବଂ ତତ୍ ସଂପୃକ୍ତ ବ୍ୟକ୍ତି ଭୂସଂପତ୍ତି ପ୍ରଭୃତିରେ ମଧ୍ୟ ଏବେ ବୈଶ୍ୟ ବୃତ୍ତି ଲକ୍ଷଣୀୟ। ଧର୍ମଭାବନା, ପାପ- ପୁଣ୍ୟବୋଧ ପରି ଅଦୃଶ୍ୟ ଶକ୍ତିର ପ୍ରଭାବ ନ୍ୟୂନ ହେଉଥିବାରୁ କୌଣସି ଧର୍ମାନୁଷ୍ଠାନରେ ଯଥାରୀତି, ପରଂପରା କ୍ରମେ ପ୍ରଚଳିତ ପଦ୍ଧତିର ସୁରକ୍ଷା କ୍ରମଶଃ କ୍ଷୀଣ ହେବାରେ ଲାଗିଛି। ସୁଦୃଢ଼ ଅନୁବନ୍ଧିତ ଶୃଂଖଳା ଦିନକୁ ଦିନ ଢିଲା ହେବାରେ ଲାଗିଛି।



Digitized by PPRACHIN, SOA

ଅନେକ ପ୍ରସିଦ୍ଧ ମଠର ଦୟନୀୟ ସ୍ଥିତି ଦର୍ଶକ, ଭକ୍ତଙ୍କୁ ମର୍ମାହତ କରୁଛି। ସରକାରଙ୍କର ଏ ସମ୍ବନ୍ଧରେ ସାମାନ୍ୟ ଧ୍ୟାନ ଥିବାର ଜଣା ଯାଉ ନାହିଁ। ନିର୍ବାଚନ ସମୟରେ ବିବିଧ ଦଳର ପ୍ରାର୍ଥୀ ନେତାମାନେ ପରାଜିତ ଭୟରେ ମଠକୁ ଯାଇ ପ୍ରଣାମ କରି କର୍ତ୍ତବ୍ୟ ସଂପାଦନ କରୁଅଛନ୍ତି।

ଯାହା ସୃଷ୍ଟି ହୋଇଛି ଅବଶ୍ୟ ବିନାଶ ହେବ। ତାହାର ସୁରକ୍ଷାର ଅନ୍ୟନାମ ଆମ ଐତିହ୍ୟ ପରଂପରା ପ୍ରତି ସମ୍ମାନବୋଧ ଆମ ପୂର୍ବସୂରୀ, ପୂର୍ବାଚାର୍ଯ୍ୟମାନଙ୍କ ପ୍ରତି ଉପଯୁକ୍ତ ଶ୍ରଦ୍ଧାଞ୍ଜଳି, ପୂଜ୍ୟ ପୂଜାର ଧାରାକୁ ଅବ୍ୟାହତ ରଖିବାର ମହାନ ବିଧି। ଏବେ ସାଧାରଣ ଜନତା ଯେ ଦେବ ବିମୁଖ ଏହା କୁହାଯାଇନପାରେ। ହିନ୍ଦୁ- ମୁସଲମାନ ନିର୍ବିଶେଷରେ ସଂପୃକ୍ତ ବିଖ୍ୟାତ ଦେବସ୍ଥାନମାନଙ୍କରେ ଦଳା-ଚକଟାରେ ପ୍ରତିବର୍ଷ କିଛି ଭକ୍ତଙ୍କ ପ୍ରାଣହାନି ଘଟୁଛି। ପ୍ରତିବର୍ଷ କିଛି କାଉଡ଼ିଆ ପାଣି ଭାର ନେଇଯିବା କ୍ରମରେ ମୃତ୍ୟୁମୁଖରେ ପଡୁଛନ୍ତି। କିନ୍ତୁ ଆମର କହିବା କଥା, ସାତ୍ତ୍ୱିକ ଭାବନା, ସାତ୍ତ୍ୱିକ ବିଚାର, 'ଅକର୍ତ୍ତା' ଭାବ ଯାହା ଈଶ୍ୱର ଆରାଧନା ପାଇଁ ମୂଳ ପୁଂଜି; ତାହାର ଘୋର ଅଭାବ। ଯାହା କିଛି ହେଉଛି ତହିଁରୁ ରଜସ୍ ପ୍ରଭାବ ଫୁଟି ଦେଖାଯାଉଛି। ଯେଉଁ କର୍ମ କଲେ କିମ୍ବା ଯେଉଁ ମୌଳିକ ଜ୍ଞାନ ଥାଇ ଯାବତୀୟ କାର୍ଯ୍ୟ କରାଗଲେ ମଧ୍ୟ 'ଅକର୍ତ୍ତା' ଭାବ ମନରେ ଉଦୟ ହେବ ତାହାର ଘୋର ଅଭାବ। ରାଜସିକ ଭାବର ଲକ୍ଷଣ ହେଲା କାର୍ଯ୍ୟ ମୁଖର ଏବଂ ତାହାର ଫଳ 'ରଜମସ୍ତୁ ଫଳଂ ଦୁଃଖଂ'। ଈଶ୍ୱରାଭିମୁଖୀ କରାଇବା ପରିବର୍ତ୍ତେ ଦୁଃଖଦାୟୀ ହେବ ହିଁ ହେବ। ଏ ଧାରଣା, ବିଚାର ଯଥାର୍ଥ ଜ୍ଞାନର ଅଭାବ। ବେଦାନ୍ତ ଭାଷାରେ 'ଅଜ୍ଞାନ'। ଅଜ୍ଞାନ ମାର୍ଗରେ କିପରି 'ଜ୍ଞାନ ସ୍ୱରୂପ' ପରମାତ୍ମାଙ୍କୁ ପ୍ରାପ୍ତ କରିପାରିବା ?

ଅନ୍ୟ ଏକ ସାଧାରଣ ଆଚରଣ ହେଉଛି ପୁରାତନ ଦେବାଳୟ, ଦେବସ୍ଥାନ ଆଦିକୁ ଛାଡ଼ି ନୂତନ ବାବା, ମାତାଙ୍କ ଶରଣକୁ ଯିବା, ନୂଆ ମନ୍ଦିର ସୃଷ୍ଟି କରିବା, ସେଠାରେ ପରିଚାଳନା ବୋର୍ଡ଼ ଇତ୍ୟାଦିରେ ବିଭିନ୍ନ ପଦ- ପଦବୀରେ ରହି ଉଲ୍ଲସିତ ହେଉଥିବା, ଏବେ ଅଧିକାଂଶ ଅବସର ବ୍ୟକ୍ତିଙ୍କର ଏହି ମାନସିକତା ଦେଖାଯାଉଛି। ଫଳରେ ପୁରାତନ ଅବହେଳିତ। ନୂତନ ବାବା- ମାତାଙ୍କ ନାଁରେ ପରିଚାଳିତ ଅନୁଷ୍ଠାନ ଖୁବ୍ ସମୃଦ୍ଧ ଚଳ ଚଂଚଳ, ଭକ୍ତ ମୁଖର। ଶତାବ୍ଦୀ ତଳୁ ନିର୍ମିତ ଦେବ ମନ୍ଦିରରେ ବିଧି ରକ୍ଷା ମୁତାବକ ପୂଜା ମଧ୍ୟ ହୋଇପାରୁ ନାହିଁ।



Digitized by PPRACHIN, SOA

ସେହି ଦୃଷ୍ଟିରୁ ମଠଗୁଡ଼ିକ ଜରାଜୀର୍ଣ୍ଣ, କଂକାଳସାର, ଅଥବା କେଉଁଠି 'ଢୋକେ ପି- ଦଣ୍ଡେ ଜୀ'- ନ୍ୟାୟରେ ବିଲୟ ପଥରେ ଅଗ୍ରସର। ଓଡ଼ିଶାର ସାଧୁ, ସନ୍ଥ, ମହନ୍ତଙ୍କ ପ୍ରତିଷ୍ଠିତ ଆଶ୍ରମ, ମଠ, ସାଧନସ୍ଥଳୀ ପରିତ୍ୟକ୍ତ, 'ପଡ଼ିଆ' ଏବଂ ଓଡ଼ିଶା ବାହାର ନବାଗତଙ୍କ କ୍ଷେତ୍ରରେ ନବନିର୍ମାଣ କୋଠା, ବାଡ଼ି ଗାଡ଼ି ଭରପୂର 'ଉଠିଆ'। ପାରଂପରିକ ଧର୍ମାଚରଣ, ଧର୍ମ ବିଶ୍ୱାସ ଏବଂ ତତ୍‌ସଂଲଗ୍ନ ବିଧିବ୍ୟବସ୍ଥା 'ଗ୍ଲୋବାଲାଇଜେସନ୍' ଅର୍ଥନୈତିକ ଝଂଜାବାତରେ ପ୍ରତିକ୍ଷଣ କ୍ଷୟ ହେବାରେ ଲାଗିଛି। କେବଳ ଆମ ଦେଶ କାହିଁକି ସମଗ୍ର ବିଶ୍ୱରୁ ପ୍ରଜା, ନାଗରିକ ଶବ୍ଦ ତିରୋହିତହୋଇ ମନୁଷ୍ୟ 'ଉପଭୋକ୍ତା' ହୋଇଯାଇଛି। ଏପରିସ୍ଥଳେ ଅର୍ଥ ହିଁ ସବୁର ମାପକାଠି ହୋଇଛି। ଆମେରିକା- ହାରଭାର୍ଡ଼ ବିଶ୍ୱବିଦ୍ୟାଳୟରେ ହିନ୍ଦୁ ନିଶ୍ଚିହ୍ନ ଷଡ଼ଯନ୍ତ୍ର ଚାଲିଛି। ଆର୍ଥିକ ସହାୟତା ସେମାନଙ୍କୁ ଭାରତର କେତେକ କମ୍ପାନୀ କରୁଛନ୍ତି। ବାଇବେଲଧାରୀଙ୍କ ଚକ୍ରାନ୍ତରେ ହିନ୍ଦୁମାନଙ୍କୁ ପ୍ରଲୋଭିତ କରି ଖ୍ରୀଷ୍ଟିୟାନ କରାଯାଉଛି। ଯାହାପାଇଁ ରାଷ୍ଟ୍ରୀୟ ନିୟମ ଥିଲେ ମଧ ଗଳାବାଟ ଅନେକ ରହିଛି।

ଏ ସମସ୍ତ ବାହ୍ୟ ହିନ୍ଦୁ ବିଦ୍ୱେଷୀମାନଙ୍କ ହାତରୁ ହିନ୍ଦୁଧର୍ମକୁ ସୁରକ୍ଷିତ କରି, ସମାଜକୁ ସତର୍କ, ସଚେତନ କରାଇ, ସଦାଚାରୀ ଶୁଦ୍ଧ ବ୍ୟକ୍ତିତ୍ୱ ସୃଷ୍ଟି କରିବାରେ ମଠ, ମନ୍ଦିରମାନଙ୍କର ଭୂମିକା ଯେ ଗୁରୁତ୍ୱପୂର୍ଣ୍ଣ ଏହା କହିବା ଅନାବଶ୍ୟକ।

ଖଣ୍ଡିତର ମଦନମୋହନ ମଠ ପ୍ରସଂଗକୁ ଆସିବା। ବହୁ ଦୃଷ୍ଟିରେ ମଠର ଅବସ୍ଥିତ ଅତ୍ୟନ୍ତ ଅନୁକୂଳ ବାତାବରଣ ଏବଂ ଉପଯୁକ୍ତ ସ୍ଥିତିରେ ପ୍ରତିଷ୍ଠିତ। ଦୂରାଗତ ସାଧୁ, ସନ୍ଥମାନେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ ଅବକାଶରେ ଖରସ୍ରୋତା ନଦୀ ପାର ହୋଇ ମଠରେ ଆଶ୍ରୟ ଗ୍ରହଣ କରୁଥିଲେ। ଜନବସତିଠାରୁ ନିରାପଦ ଦୂରତ୍ୱରେ ଥିବାରୁ ଏବଂ ନିକଟରେ ନଦୀ ହେତୁ ସ୍ନାନ ମାର୍ଜନା, ନିତ୍ୟକର୍ମ ତଥା ସାଧନ- ଭଜନ ପାଇଁ ଉପଯୁକ୍ତ ଥିଲା। ଶହ ଶହ ବର୍ଷ ଧରି ପରଂପରା କ୍ରମେ ଏହି ବିଧି ଚଳି ଆସିଛି।

ଶ୍ରୀ ମଦନମୋହନଙ୍କ ନିତ୍ୟ ମଂଗଳ ଆଳତି, ଧୂପ, ସ୍ନାନ, ବେଶ, ମଧ୍ୟାହ୍ନ ଧୂପ ଆଳତି, ସଂଧ୍ୟା ଧୂପ ଆଳତି ପ୍ରଭୃତି ସହ ନୈମିତ୍ତିକ ବର୍ଷ ସାରା ବିବିଧ ତିଥିମାନଙ୍କରେ ଅନୁଷ୍ଠିତ ହୁଏ। ପ୍ରମୁଖ ଭାବେ ଝୁଲଣ ଏବଂ ମେଲଣ।



Digitized by PPRACHIN, SOA

ସ୍ଥାନୀୟ ଜନସାଧାରଣଙ୍କ ମଧ୍ୟରେ ଦୈବୀ ଭାବ ସଂଚାର, ସାମାଜିକ, ସାଂସ୍କୃତିକ ଚିନ୍ତା- ଚେତନାର ଅଭ୍ୟୁଦୟ ମୁଖ୍ୟ ଲକ୍ଷ୍ୟ ରହିଥିଲା । ଏଥି ସହିତ କଳା, ସଂଗୀତ, ବାଦ୍ୟ, ନୃତ୍ୟ, ନାଟକ ଧାରାକୁ ପରିପୋଷଣ ତଥା ଅଗ୍ରଗାମୀ କରାଇବା ପାଇଁ ପୂର୍ବବର୍ତ୍ତୀ ମହନ୍ତ ମହାରାଜ ଶ୍ରୀ ନବକିଶୋର ଭାରତୀଙ୍କ ଉଦ୍ୟମ ଉଲ୍ଲେଖଯୋଗ୍ୟ । ତତ୍‌କାଳୀନ ସମୟରେ ସେ ଜଣେ ଉନ୍ନତ କଳାକାର, ସଂଗୀତଜ୍ଞ ଭାବେ ସୁବିଦିତ ଥିଲେ । ୧୯୪୭ ପୂର୍ବରୁ ଏବଂ ପରବର୍ତ୍ତୀକାଳର ଅତ୍ର ତତ୍ର ବିଭିନ୍ନ ପାଣ୍ଡୁଲିପିରୁ ସଂପୂଚିତ ହୋଇ 'ମଦନମୋହନ ଐତିହ୍ୟ ଓ ସଂସ୍କୃତି' ପୁସ୍ତକରେ ପ୍ରକାଶିତ ହୋଇଅଛି ।

ଖଣ୍ଡିତରଠାରେ ପ୍ରତିଷ୍ଠିତ ମି.ଇ. ହାଇସ୍କୁଲ ପ୍ରତିଷ୍ଠା କ୍ଷେତ୍ରରେ ଶ୍ରୀ ନବକିଶୋର ଭାରତୀଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ଜଣେ ଅତିଥି ପରାୟଣ, ସାହାଯ୍ୟକାରୀ, ବଦାନ୍ୟ ବ୍ୟକ୍ତି ଭାବେ ତାଙ୍କ ସୁଖ୍ୟାତି ପରିବ୍ୟାପ୍ତ । ମହନ୍ତ ନବକିଶୋର ଭାରତୀଙ୍କ ଅନ୍ତେ ଶ୍ରୀ ଶିଶିର କୁମାର ଭାରତୀ ମହନ୍ତ ଦାୟିତ୍ୱ ନିର୍ବାହ କରନ୍ତି । ନିକଟବର୍ତ୍ତୀ କୋଳଥଳରେ ଜୀବନର ବହୁ ସମୟ ବ୍ୟତୀତ ହୋଇଥିବାରୁ ଉଭୟ ଶିକ୍ଷା ଏବଂ ଦେବ ନୀତି- କାନ୍ତି ସୂଚାରୁ ରୂପେ ହେବାରେ ଉତ୍ତରୋତ୍ତର ଶୃଂଖଳା ଓ ବିକାଶ ପରିଲକ୍ଷିତ । ଘାଟମଂଗଳା ମନ୍ଦିରର ତତ୍ତ୍ୱାବଧାରକ ଭାବେ ନୂତନ ଭବ୍ୟ ମନ୍ଦିର ନିର୍ମାଣରେ ତାଙ୍କ ଉଦ୍ୟମ ପ୍ରଶଂସନୀୟ । ଯଜ୍ଞେଶ୍ୱର ଶିବ ମନ୍ଦିର, ଜଂଜାଳଦେବୀ ଗ୍ରାମଦେବତୀଙ୍କ ମନ୍ଦିର ଏବଂ ନଦୀ ଧାରକୁ ଲାଗି ବ୍ରହ୍ମେଶ୍ୱର ମହାଦେବଙ୍କ ମନ୍ଦିର ନିର୍ମାଣ ହୋଇ ସାରିଛି । ଏହି ମନ୍ଦିର ସଂଲଗ୍ନ ରୋଷ ଘର ଆଦି ନିର୍ମାଣାଧୀନ ରହିଛି । ଏହାର ଅବସ୍ଥିତ, ପ୍ରାକୃତିକ ପରିବେଶ ଯେ କେହି ଦର୍ଶକକୁ ଆକୃଷ୍ଟ କରିବ । ଏଥିନିମନ୍ତେ ସରକାରୀ ବେସରକାରୀ ଉଦ୍ୟମ ଅପେକ୍ଷାରେ ।

ଶ୍ରୀମଦ୍ ଭଗବତ୍ ଗୀତା ପାରାୟାଣ, ଯଜ୍ଞାନୁଷ୍ଠାନ, ପ୍ରସାର, ପ୍ରଚାର, ପ୍ରବଚନ ଆଦି ନିମନ୍ତେ ୨୦୧୧ ମସିହାଠାରୁ ଅବ୍ୟାହତ ଚାଲି ଆସୁଛି । ସ୍କୁଲ ପିଲାମାନେ ଭଗବତ୍ ଗୀତା ସମ୍ବନ୍ଧରେ ଅବହିତ ହେବା ଉଦ୍ଦେଶ୍ୟରେ ସେମାନଙ୍କୁ ମଠ ପକ୍ଷରୁ ନିମନ୍ତ୍ରଣ କରାଯାଇ ଭଗବତ୍ ଗୀତା ସଂପ୍ରଦାନ କରାଯାଇଥିଲା । ପୁସ୍ତକ ଉଦ୍‌ଘାଟନ ଅବକାଶରେ ଉପସ୍ଥିତ ସୁଧୀ- ବିବୁଧମାନଙ୍କ ଉପସ୍ଥିତିରେ ଆଗ୍ରହୀ, ଶ୍ରଦ୍ଧାଳୁମାନଙ୍କୁ ଚାଳିଶରୁ ଉର୍ଦ୍ଧ୍ୱ ଗୀତା ସଂପ୍ରଦାନ କରାଯାଇଥିଲା ।



Digitized by PPRACHIN, SOA

କରୋନା ମହାମାରୀ ସମୟରେ ଭାରତୀୟ ବିଶିଷ୍ଟ ସାଧୁସନ୍ଥମାନଙ୍କ ନିର୍ଦ୍ଦେଶକ୍ରମେ ପ୍ରତ୍ୟେକ ସଂଧ୍ୟାରେ କତିପୟ ଶ୍ରଦ୍ଧାଳୁଙ୍କୁ ସଂଗରେ ଘେନି ମହାମୃତ୍ୟୁଞ୍ଜୟ ମନ୍ତ୍ର ଜପ କିଛି ମାସ ପର୍ଯ୍ୟନ୍ତ ଚାଲିଥିଲା ।

ମହନ୍ତ ଶିଶିର ଭାରତୀଙ୍କ ଆକସ୍ମିକ ବିୟୋଗ ସମଗ୍ର ଅଂଚଳରେ ଶୋକର ଛାୟା ଖେଳାଇ ଦେଲା । ହଜାର ହଜାର ନରନାରୀ, ପାଶ୍ୱବର୍ତ୍ତୀ ଏବଂ ଦୂରବର୍ତ୍ତୀ ଶ୍ରଦ୍ଧାଳୁମାନଙ୍କର ଉପସ୍ଥିତି ବାସ୍ତବରେ ଅବର୍ଣ୍ଣନୀୟ, ଅଭାବନୀୟ ପରିସ୍ଥିତି ସୃଷ୍ଟି କରିଥିଲା । ସାଧୁ- ମହନ୍ତମାନଙ୍କ ଉତ୍ତର କାର୍ଯ୍ୟ ଯେପରି ହୁଏ, ସାଧୁମାନଙ୍କ ପରାମର୍ଶ କ୍ରମେ ପରଂପରା ଆଧାରରେ ତାହା ଅନୁଷ୍ଠିତ ହୋଇଥିଲା । ନିକଟ ଏବଂ ଦୂରସ୍ଥ ସାଧୁମାନଙ୍କୁ ନିମନ୍ତ୍ରଣ- ଯଥା ମାନ୍ୟ ପ୍ରଦାନ, ସଂକୀର୍ତ୍ତନ, ଯଜ୍ଞାନୁଷ୍ଠାନ, ଅନ୍ନଯଜ୍ଞ ଆଦି ଅତି ଆଡ଼ମ୍ବରରେ ପରିପାଳିତ ହୋଇଥିଲା । ସାଂପ୍ରତିକ ଚଳଣି ଆଧାରରେ ସ୍ମୃତି ଚାରଣ ସଭା ଦୀର୍ଘ ସମୟ ପର୍ଯ୍ୟନ୍ତ ମଠ ପରିସରରେ ପରିପାଳିତ ହୋଇଥିଲା ।

ସୂଚନାଯୋଗ୍ୟ ଯେ ମଠରେ ଦୈନନ୍ଦିନ ସେବାପୂଜା ଯଥାରୀତି ଅନୁସୃତ ହେବା ସହିତ ମାସିକ ପୂର୍ଣ୍ଣିମା ତିଥିରେ ଗୀତା ପାରାୟଣ ଏବଂ ପୂର୍ବ ପାରାୟଣୀମାନେ ଯୋଗଦାନ ପୂର୍ବକ କାର୍ଯ୍ୟସଂପନ୍ନ କରୁଥିଲେ । ପ୍ରତ୍ୟହ ଦେବ ସାନ୍ନିଧ୍ୟରେ ବିଷ୍ଣୁସହସ୍ର ନାମ ପାଠ କରୁଥିଲେ ଏବଂ ପ୍ରତି ପୂର୍ଣ୍ଣିମାରେ ବିଷ୍ଣୁ ସହସ୍ର ନାମାବଳୀରେ ସହସ୍ର ତୁଳସୀ ଅର୍ପିତ ହେଉଥିଲା । ପୂର୍ବ ନିର୍ଦ୍ଧାରିତ ଅର୍ଥାତ୍ ମହନ୍ତ ଶିଶିର କୁମାର ଭାରତୀଙ୍କ ସଂକଳ୍ପିତ ଦ୍ୱାଦଶ ବର୍ଷ ପୂର୍ତ୍ତି ଦୋଳ ପୂର୍ଣ୍ଣିମା ତିଥିରେ ହିଁ ଉପସ୍ଥିତ ହେବାରୁ ଉକ୍ତ ଦିନର ପାଳନ ପରିଚାଳନା ନିମିତ୍ତ ପୂର୍ବରୁ ମଠ ମଧ୍ୟରେ ଏକ ପ୍ରସ୍ତୁତି ବୈଠକ ଅନୁଷ୍ଠିତ ହୋଇ କାର୍ଯ୍ୟପନ୍ଥା ସ୍ଥିରୀକୃତ ହେଲା । ପ୍ରଭାତରୁ ଗ୍ରାମର ଏବଂ ଆଖପାଖ ଗ୍ରାମର ଶ୍ରଦ୍ଧାଳୁ ମହିଳାମାନଙ୍କୁ ବିଧି ନିମନ୍ତ୍ରଣ କ୍ରମେ କଳସ ଶୋଭାଯାତ୍ରାରେ ଅଂଶ ଗ୍ରହଣ କରିବାକୁ ଅନୁରୋଧ କରାଯାଇଥିଲା ଏବଂ ଯଥୋଚିତ ସମୟରେ ଆରାଧ୍ୟ ଘାଟମଂଗଳାଙ୍କ ମନ୍ଦିର ପ୍ରାଂଗଣରେ ସମବେତ ହୋଇ ଦେବୀପୂଜନ ପରେ ନଦୀଘାଟରୁ ଜଳ ଉତ୍ତୋଳନ ପୂର୍ବକ ଭବ୍ୟ, ସୁରମ୍ୟ ଶୋଭାଯାତ୍ରାରେ ମଠ ଦିଗରେ ଅଗ୍ରସର ହେବା ସମୟରେ ଗ୍ରାମବାସୀଙ୍କ ମନରେ ସ୍ୱତଃ ଦିବ୍ୟ ଭାବର ସଂଚାର ହୋଇଥିଲା । କଳସ ଯାତ୍ରୀଙ୍କୁ ନାମାବଳୀ ଉତ୍ତରୀୟ, ପୁଷ୍ପମାଲ୍ୟାଦି ଦ୍ୱାରା ସମ୍ମାନିତ କରାଯିବା ଦ୍ୱାରା ସାତ୍ତ୍ୱିକ ଭାବର୍ ସଂଚାର ହୋଇଥିଲା ।



Digitized by PPRACHIN, SOA

ମଠ ପରିସରରେ ଶ୍ରୀମଦ୍ ଭଗବତ୍ ଗୀତା ପାରାୟଣ- ଯଜ୍ଞାନୁଷ୍ଠାନର ସୁବ୍ୟବସ୍ଥା ସହିତ ନାମଯଜ୍ଞ, ଶ୍ରୀ ମଦନ ମୋହନଙ୍କ ପାଦରେ ସହସ୍ର ତୁଳସୀ ସମର୍ପଣ, ଷୋଡ଼ଶୋପଚାର ପୂଜା, ସୂର୍ଯ୍ୟପୂଜା, ଗୁରୁପୂଜା ସହିତ କଳସ ଯାତ୍ରୀମାନଙ୍କୁ ମଠସ୍ଥିତ ସଭାଗୃହରେ ଅଖଣ୍ଡ ମନ୍ତ୍ରଜପ ବିଧାନ ଆଧ୍ୟାତ୍ମିକ ପରିବେଶକୁ କାହିଁ କେତେ ଗୁଣ ଗମ୍ଭୀର କରି ଗଢ଼ିତୋଳିଥିଲା। ସମବେତ ମହିଳା ଭକ୍ତମାନଙ୍କ ଦେବ ଆଳତି ଶୁଦ୍ଧ ସାତ୍ତ୍ୱିକ ବାତାବରଣକୁ ଘନୀଭୂତ ପ୍ରଶାନ୍ତମୟ କରିଥିଲା।

ସମୂହ ପ୍ରସାଦ ସେବନ ପରେ ପରେ ମଠ ପକ୍ଷରୁ ବାରଜଣ ଗୀତା ପ୍ରେମୀଙ୍କୁ ସମ୍ବର୍ଦ୍ଧିତ କରିବା ସହିତ ପନ୍ଦରଜଣଙ୍କୁ ଗୀତା ସଂପ୍ରଦାନ କରାଯାଇଥିଲା। ମଠ ସଂଲଗ୍ନ ଭକ୍ତ ସେବକମାନଙ୍କୁ ଅଂଗବସ୍ତ୍ର ପ୍ରଦାନ କରାଯାଇ ସମ୍ମାନିତ କରାଯାଇଥିଲା। ଏହି ପାବନ ଅବସରରେ ଏକ ଭକ୍ତି ରସାଶ୍ରିତ ପୁସ୍ତକ 'ବାରମାସୀ' ଉନ୍ମୋଚିତ ହୋଇଥିଲା ଏବଂ ଲେଖକ ଶ୍ରୀ ଅରବିନ୍ଦ ଦାଶଙ୍କୁ ସମ୍ମାନିତ କରାଯାଇଥିଲା।

ପରବର୍ତ୍ତୀ ପୂର୍ଣ୍ଣମୀ ଅବସରରେ ଯଥାବତ୍ ଗୀତା ପାରାୟଣ, ଯଜ୍ଞାନୁଷ୍ଠାନ, ପ୍ରସାଦ ସେବନ କାର୍ଯ୍ୟଧାରା ଅବ୍ୟାହତ ରହିଛି। ଆଗାମୀ ଶିଶିର କୁମାର ଭାରତୀ ମହନ୍ତଙ୍କ ପ୍ରଥମ ବାର୍ଷିକ କାର୍ଯ୍ୟକ୍ରମ ମଧ୍ୟରେ ଯଜ୍ଞାନୁଷ୍ଠାନ, ଗୀତା ପାରାୟଣ, ସାଧୁ-ଭକ୍ତ ସମ୍ମିଳନୀ ଏବଂ ସ୍ମରଣିକା ପ୍ରକାଶନ ଆଦି କରାଯିବାର ସ୍ଥିରୀକୃତ ହୋଇଛି।

ପୁରୁଷାନୁକ୍ରମେ ପ୍ରଚଳିତ ଦେବ ସେବା ପୂଜା, ଉତ୍ସବାନୁଷ୍ଠାନ ଆଦି ପରିଚାଳନାରେ କର୍ତ୍ତୃତ୍ୱ ଅଭିମାନ ଅପେକ୍ଷା 'ନିମିତ୍ତ' ଭାବ ଆମର ଧ୍ୟେୟ ତଥା ଆଦର୍ଶ ହେଉ। ଆମେ କେତେ ପରିମାଣରେ ନିଜକୁ ମଦନମୋହନଙ୍କ ନିମନ୍ତେ ନିୟୋଜିତ ନିଷ୍କାମ ଭାବେ କରିବାକୁ ସକ୍ଷମ ହେଉଛୁ, ତାହା ହିଁ ମାନବ ଜୀବନର ସାର୍ଥକତା। 'କୃଷ୍ଣେନ୍ଦ୍ରିୟ ପ୍ରୀତିବାଂଛା ଧରେ ପ୍ରେମନାମ'। ସେହି ଦିବ୍ୟ ପ୍ରେମରେ କେତେ ଉଦ୍‌ବୁଦ୍ଧ ହୋଇପାରୁଛୁ ତାହା ନିଜକୁ ପ୍ରଶ୍ନ କରିବାର ବେଳ ଆସିଛି। ଅନାଗତ ଭବିଷ୍ୟତରେ ତାହାର ରୂପରେଖ କିପରି ହେବ ତାହା ତାଙ୍କୁ ହିଁ ଜଣା। ଜୟଶ୍ରୀ ମଦନମୋହନ।

*ବାରବାଟୀ, ଧର୍ମଶାଳା, ଯାଜପୁର*

*ଫୋନ୍: ୯୮୬୧୭୨୨୨୫୮*





Digitized by PPRACHIN, SOA

# ଶ୍ରୀ ଶ୍ରୀ ମଦନମୋହନଙ୍କ ଚରଣାଶ୍ରିତ

ବସନ୍ତ କୁମାର ଭାରତୀ



ଦଶନାମୀ ସଂପ୍ରଦାୟର ପ୍ରମୁଖ ସାଧୁ ସଦାଶିବ ଭାରତୀ ଗୋସ୍ୱାମୀ ୧୬୦୦ ଶତାବ୍ଦୀର ଶେଷ ଭାଗରେ ଏହି ଖଣ୍ଡିତରରେ ଯୋଗ ସାଧନା କରିଥିଲେ ଏବଂ ଏଠାରେ ମଠ ସ୍ଥାପନ କରି ପ୍ରଥମ ମହନ୍ତ ସଦାଶିବ ଭାରତୀ ଗୋସ୍ୱାମୀ ନାମରେ ବିଖ୍ୟାତ ହେଲେ। ଏହା ମଧ୍ୟରେ ୧୯୨୨ ସୁଦ୍ଧା ୧୦ଜଣ ମହନ୍ତ ଗାଦିସୀନ ହୋଇଛନ୍ତି। ପରମ୍ପରା ଅନୁସାରେ ବଂଶର ଜ୍ୟେଷ୍ଠପୁତ୍ର ଗାଦିସୀନ ହୋଇ ମହନ୍ତ ହୁଅନ୍ତି। ମହନ୍ତ ପୁରୁଷୋତ୍ତମ ଭାରତୀ ହେଉଛନ୍ତି ମଠର ୪ର୍ଥ ମହନ୍ତ। ତାଙ୍କ ସମୟରେ ଶ୍ରୀ ଶ୍ରୀ ମଦନ ମୋହନ ମଠର ମୁଖ୍ୟ ଦେବତା ଭାବରେ ପ୍ରତିଷ୍ଠିତ ହେଲେ। ସେ ସମୟରେ କେତେ ଜଣ ସାଧୁ ମଦନ ମୋହନଙ୍କୁ ଘୋଡ଼ା ପୃଷ୍ଠରେ ବସାଇ ପୁରୀ ଅଭିମୁଖେ ଯାତ୍ରା କରୁଥିଲେ ଏବଂ ଖଣ୍ଡିତର ଘାଟ ପାରି ହୋଇ ସେଠାରେ ରାତ୍ରି ଯାପନ କଲେ। ସେହି ରାତ୍ରିରେ ସାଧୁମାନଙ୍କୁ ସ୍ୱପ୍ନାଦେଶ ହେଲା ସେ ଏହି ଗ୍ରାମରେ ସଦାବ୍ରତ ମଠରେ ରହିବେ।

ଶ୍ରୀ ବୃନ୍ଦାବନ ଭାରତୀ ମଠର ୬ଷ୍ଠ ମହନ୍ତ। ତାଙ୍କ ସମୟରେ ମଠର ବହୁବିଧ ଉନ୍ନତି ହୋଇଥିଲା। ବର୍ତ୍ତମାନର ମଠର ଯେଉଁ ଅବସ୍ଥିତ ତା'ର ମୂଳଦୁଆ ସେ ପକାଇଥିଲେ। ମହନ୍ତ ନବକିଶୋର ଭାରତୀ ହେଉଛନ୍ତି ମଠର ନବମ ମହନ୍ତ। ସେ ଏ ଅଧମର ଜ୍ୟେଷ୍ଠ ପିତା। ପ୍ରଥମ ଅବସ୍ଥାରେ ସେ ବହୁ ମାଲି ମକଦ୍ଦମାରେ ସମ୍ମୁଖୀନ ହୋଇଥିଲେ। ପୂର୍ବତନ ମହନ୍ତ ଖଜଣା ପୈଠ ନ କରିବାରୁ



Digitized by PPRACHIN, SOA

ମଠରେ ବିଜେସ୍ଥଳୀ ନିଲାମ ପର୍ଯ୍ୟାୟକୁ ଆସିଥିଲା । ସେ କେନ୍ଦୁଝର ରାଜାଙ୍କ ସହିତ ମକଦ୍ଦମା କରି ଉଚ୍ଚ ନ୍ୟାୟଳୟରୁ ଡିଗ୍ରୀ କରି ମଠକୁ ଓ ମଠ ବାଡ଼ିକୁ ଉଦ୍ଧାର କରିଥିଲେ । ଆମ୍ଭର ପିତା ସ୍ୱର୍ଗତ ନିତ୍ୟାନନ୍ଦ ଭାରତୀ ତାଙ୍କର ସାନ ଭାଇ ଥିଲେ । ପିଲାଟି ଦିନରୁ ମୁଁ ସର୍ବଦା ବଡ଼ ବାପାଙ୍କ ସଂସ୍ପର୍ଶରେ ଆସିଥିଲି । ସେ ସର୍ବଦା ଉପଦେଶ ଦିଅନ୍ତି ମଠକୁ ରକ୍ଷା କରିବ । ଶ୍ରୀ ମଦନମୋହନଙ୍କ ସେବା କରିବା, ମଦନମୋହନ ନିଜେ ଇଚ୍ଛା କରି ଏହି ମଠକୁ ଆସିଛନ୍ତି । ଆମର ଶକ୍ତି ନାହିଁ ମଠକୁ ପରିଚାଳନା କରିବା, ସେ ନିଜେ ଏହାକୁ ପରିଚାଳନା କରୁଛନ୍ତି । ଆମେ ନିମିତ୍ତ ମାତ୍ର । ଏହାର ଜ୍ୱଳନ୍ତ ଉଦାହରଣ ମୁଁ ନିଜେ ପାଇଛି ।

୧୯୭୪ ମସିହା ଘଟଣା ମୁଁ ଯାଜପୁର ରୋଡ଼ର ଆଇ.ଏ ପଢୁଥିବା ସମୟରେ କେତେକ ଭାଗ ଚାଷୀ ତହସିଲ ଅଫିସରେ ମଠ ଜମି ତାଙ୍କ ନାମରେ ରେକର୍ଡ଼ କରିବା ପାଇଁ କେସ୍ କରିଥିଲେ । ବଡ଼ବାପା ମୋତେ କହିଲେ ତୁ ତହସିଲ ଅଫିସ୍ ଯାଇ କେସ୍ ବୁଝିବୁ । ଉକ୍ତ ତାରିଖରେ ମୁଁ ଉପସ୍ଥିତ ହେଲି । ତାଙ୍କ ଓକିଲ କହିଲେ ମହନ୍ତ ଜମି ବିକ୍ରି କରୁଛନ୍ତି, ତେଣୁ ଏମାନଙ୍କ ନାମରେ ଭାଗଚାଷ ରେକର୍ଡ଼ କରାଯାଉ । ତା'ପରେ ତହସିଲଦାର ମୋତେ ଡକାଇଲେ ଏବଂ ଏ ବିଷୟରେ ପଚାରିଲେ । ମୁଁ କହିଲି ଏମାନେ ଚାଷ କରି ଉପଯୁକ୍ତ ଭାଗ ଦେଉ ନାହାଁନ୍ତି, ଠକୁଛନ୍ତି । ମଠରେ ୧୨ ମାସରେ ୧୩ ପର୍ବ । ମହନ୍ତ ମଠ ପରିଚାଳନା କରିବାରେ ବହୁତ ଅସୁବିଧାରେ ସମ୍ମୁଖୀନ ହେଉଛନ୍ତି । ତହସିଲଦାର ହୃଦୟଙ୍ଗମ କରି କହିଲେ ଠାକୁରଙ୍କର ସଂପତ୍ତି ଭାଗ ଚାଷୀ ରେକର୍ଡ଼ ହୋଇପାରିବ ନାହିଁ ।

୧୯୯୧ ମସିହାରେ ମହନ୍ତ ନବକିଶୋର ଭାରତୀଙ୍କର ଦେହାନ୍ତ ହେଲା, ତା'ପରେ ଶ୍ରୀ ଶିଶିର କୁମାର ଭାରତୀ ମଠର ୧୦ମ ମହନ୍ତ ହେଲେ । ଏ ହେଉଛନ୍ତି ମୋର ବଡ଼ ଭାଇ । ପିଲାଟି ଦିନରୁ ବଡ଼ଭାଇଙ୍କୁ ପୁଅ କରି ପାଠ ପଢ଼ାଇ ଥିଲେ ଏବଂ Endowment office ରେ ଚେଲା Approve କରିଥିଲେ । ବଡ଼ ଭାଇ ସେତେବେଳେ କୋଳଥଳ ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଥିଲେ । ମୁଁ ଭୁବନେଶ୍ୱରରେ ଚାକିରି କରିଥିଲି । ସେ ମୋ' ସହିତ ମହନ୍ତ Approve କରିବା ପାଇଁ ଦାୟିତ୍ୱ ନେବାକୁ କହିଲେ । ମୁଁ କହିଲି ଏ ମଠ ମଦନମୋହନ ଚଳାଉଛନ୍ତି । ଆମେ ନିମିତ୍ତ ମାତ୍ର । ତା'ପରେ Endowment



Digitized by PPRACHIN, SOA

officeରେ Under section 36 ରେ ମହନ୍ତ Approve ପାଇଁ ଆବେଦନ କଲେ। କେସ୍ ଚାଲିଲା Public notification ହେଲା। କିନ୍ତୁ କୌଣସି Complain ଆସିଲାନି। କିନ୍ତୁ ମହନ୍ତ Approveରେ ବଳିମ୍ବ ହେଲା। ଦୀର୍ଘ ୩ ବର୍ଷ କଟିଗଲା କିନ୍ତୁ ମହନ୍ତ Approve ହେଲାନି। ଶେଷରେ ମୁଁ ଠାକୁରଙ୍କୁ ପ୍ରାର୍ଥନା କଲି ପ୍ରଭୁ ଯାହା ତୁମର ଇଚ୍ଛା ତାହା ହିଁ କରନ୍ତୁ। ଠିକ୍ ୮ ଦିନ ପରେ Commissioner ବଦଳି ହୋଇଗଲେ। ତାଙ୍କ ବଦଳରେ ଶ୍ରୀ ଗୋପିନାଥ ପଣ୍ଡା। ଘର ବିରୁହାଁ ଖଣ୍ଡିତରରୁ ୩ କି.ମି. ବାଟ, ସେ ମଠକୁ ଓ ମଂଗଳାକୁ ଜାଣିଥିଲେ। ଗୋଟିଏ ତାରିଖରେ ମହନ୍ତ Approve କରିଦେଲେ। ମୁଁ ବଡ଼ଭାଇଙ୍କୁ କହିଲି ମଦନମୋହନ ଯାହାକୁ ମହନ୍ତ ଗାଦିରେ ବସାଇବେ ସେ ହିଁ ବସିବେ। ବଡ଼ ଭାଇ ମହନ୍ତ ହେବାପରେ ମଠର ବହୁତ ଉନ୍ନତିମୂଳକ କାର୍ଯ୍ୟ କରିଛନ୍ତି। ୧୮ ଏକର ମଠ ବାଡ଼ି ଜଂଗଲ ହେଇ ପଡ଼ିଥିଲା, ସେଥିରୁ ଅଧାଅଧି ସଫା କରି ଜମିରେ ପରିଣତ କଲେ। ମଠର ଆୟ ବଢ଼ାଇଲେ। ଠାକୁର ଘର ଓ ଅନ୍ୟାନ୍ୟ ଘର ଛଣ ଛପର ଥିଲା ସେଗୁଡ଼ିକୁ ପକ୍କା ଘରରେ ପରିଣତ କଲେ। ୨୦୧୦ ମସିହାରେ ସେ ଚାକିରିରୁ ଅବସର ନେଲେ ଏବଂ ମଠରେ ଶ୍ରୀ ସୁଶାନ୍ତ କୁମାର ପଣ୍ଡାଙ୍କ ସହଯୋଗରେ ଏକ ଯଜ୍ଞ କରାଇଲେ ଓ ମନ ପ୍ରାଣ ଦେଇ ଠାକୁରଙ୍କର ସେବା ଓ ମଠର ଉନ୍ନତିକରଣରେ ମନୋନିବେଶ କଲେ। ୨୦୧୮ ମସିହାରେ ତାଙ୍କର ଦେହ ଖରାପ ଆଡ଼କୁ ଗତି କଲା ସେ ନିୟମିତ ଔଷଧ ସେବନ କରୁଥିଲେ।

୨୦୨୨ ମସିହା ମଦନମୋହନଙ୍କ ଝୁଲଣ ଯାତ୍ରାବେଳକୁ ତାଙ୍କ ଦେହ ବିଶେଷ ଖରାପ ହୋଇଗଲା। ଚିକିତ୍ସା ପାଇଁ ତାଙ୍କୁ କଟକ ନେଲୁ। କଟକରେ ୩ ଦିନ ଚିକିତ୍ସା ପରେ ତା- ୧୨.୦୮.୨୨ ଝୁଲଣ ପୂର୍ଣ୍ଣିମା ଦିନ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ। ଶେଷରେ ଶ୍ରୀ ଶ୍ରୀ ମଦନମୋହନଙ୍କ ନିକଟରେ ତାଙ୍କର ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରୁଛି।

*ସାନଭାଇ*

*ଖଣ୍ଡିତର*





Digitized by PPRACHIN, SOA

# ସ୍ନେହୀ ମଣିଷଙ୍କ ଶ୍ରଦ୍ଧାର ଡାକ

ବିଜୟାନନ୍ଦ କର



ବିଜୟ କେମିତି ଅଛ ? ଯେଉଁଠାରେ ଦେଖାହୁଏ ଏହା ହିଁ ଥିଲା ସେହି ସ୍ନେହୀ ମଣିଷଙ୍କ ଶ୍ରଦ୍ଧାର ଡାକ । ତାଙ୍କର ସେହି ହସହସ ମୁହଁ ଆଜି ଆଖି ଆଗରେ ଦୃଶ୍ୟମାନ ହୋଇଉଠୁଛି, ସତେ ଯେପରି ସେ ମୋ' ପାଖେ ପାଖେ ଅଛନ୍ତି । ପୂର୍ବ ଭଳି ଉପଦେଶ ଦେଉଛନ୍ତି । ଶିଶିର ଭାରତୀ (ସାର୍) ପ୍ରଥମତଃ ଥିଲେ ମୋର ଗୁରୁ । ମଧୁବନ ହାଇସ୍କୁଲରେ ଅଳ୍ପ କେତେଦିନ ଶିକ୍ଷକତା କଲାପରେ ସେ ତାଙ୍କର କର୍ମ ଜୀବନ ଆରମ୍ଭ କରିଥିଲେ କ୍ଷେତ୍ରପାଳ ହାଇସ୍କୁଲ କୋଳଥଳରେ । ଶିକ୍ଷକତା ଜୀବନ କାଳ ମଧ୍ୟରେ ସେ ଅନେକ ଛାତ୍ରଛାତ୍ରୀଙ୍କୁ ଏଭଳି ଗଢ଼ିଛନ୍ତି ଯେ ଯେଉଁମାନେ ଆଜି ଉଚ୍ଚ ପଦ - ପଦବୀରେ ଅବସ୍ଥାପିତ । ଶିଶିର ସାର୍ ଯେ କେବଳ ଜଣେ ଆଦର୍ଶ ଶିକ୍ଷକ ଥିଲେ ତାହା ନୁହେଁ, ଶିକ୍ଷକତା ଜୀବନ ସହିତ ଆଧ୍ୟାତ୍ମିକ ଦିଗ ପ୍ରତି ତାଙ୍କର ଥିଲା ବହୁତ ଆଗ୍ରହ । ସେ ଖଣ୍ଡିତର ମଠର ମହନ୍ତ ହିସାବରେ ଦୀର୍ଘଦିନ କାର୍ଯ୍ୟ ସୁଚାରୁ ରୂପେ ପରିଚାଳନା କରିଛନ୍ତି । ଶିଶିର ଭାରତୀଙ୍କ ସମୟରେ ମଠର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଥିଲା ପର୍ବପର୍ବାଣିମାନ ମହାସମାରୋହରେ ପାଳନ କରାଯାଉଥିଲା । ସାର୍‌ଙ୍କ ସହିତ ମୋର ପାରିବାରିକ ସଂପର୍କ ମଧ୍ୟ ଦୃଢ଼ ହୋଇଥିଲା ସେ ଯେତେବେଳେ ତାଙ୍କର ଝିଅଘର (ବାରବାଟୀ) କୁ ଆସନ୍ତି ମୋତେ ନିଶ୍ଚୟ ଖୋଜନ୍ତି । ମୁଁ ଯେତେବେଳେ ସାର୍‌ଙ୍କ ଦେହାନ୍ତ ଖବର ଶୁଣିଲି ବିଶ୍ୱାସ କରି ପାରିଲି ନାହିଁ; କାରଣ ତା'ର ଅଳ୍ପ କେତେ ଦିନ ପୂର୍ବରୁ ଦେଖା ହୋଇଥିଲା, ସାର୍ ସୁସ୍ଥ ଥିଲେ । ଶିଶିର ଭାରତୀ ସାର୍‌ଙ୍କ ବିୟୋଗରେ ଆମ ଅଚଳରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟିହେଲା ତାହା କେବେ ପୂରଣ ହୋଇ ପାରିବ ନାହିଁ । ଆଜି ତାଙ୍କର ଏହି ପବିତ୍ର ପୁଣ୍ୟ ତିଥିରେ ସ୍ମରଣ କରେ କି, ମହାତ୍ମାଙ୍କର ଅମର ଆତ୍ମା ଶାନ୍ତିଲାଭ କରୁ ।

*ପ୍ରଧାନ ଶିକ୍ଷକ*

*ଚଣ୍ଡିପୁର ସରକାରୀ ପ୍ରାଥମିକ ବିଦ୍ୟାଳୟ*





Digitized by PPRACHIN, SOA

# ଏକ ବିରଳ ବ୍ୟକ୍ତିତ୍ୱ
# ଭାରତୀ ସାର୍



ସରୋଜିନୀ ପଣ୍ଡା

କାଳର କରାଳ କବଳରେ ସବୁ ଲୀନ ହୋଇଯାଏ । କିନ୍ତୁ ସ୍ମୃତି ରହିଯାଏ ଚିରକାଳ ପାଇଁ । ଏଭଳି ଜୀବନ ଆଗରେ ନିରୂପିତ ହୁଏ ଜୀବନର ପରିଭାଷା । ଏହିଭଳି ଏକ ସାର୍ଥକ ଓ ସଫଳ ଜୀବନ ଥିଲା ଧର୍ମପରାୟଣ, ସ୍ନେହୀ, ଦରଦୀ, କର୍ତ୍ତବ୍ୟନିଷ୍ଠ ଓ ବହୁ ପ୍ରତିଭାର ଅଧିକାରୀ ରସୁଲପୁର ବ୍ଲକ୍, ଖଣ୍ଡତର ଗ୍ରାମରେ ଜନ୍ମ ଗ୍ରହଣ କରିଥିବା ଶିଶିର ଭାରତୀ ସାର୍‌ଙ୍କର ।

ସେ ଥିଲେ ଦୁଇ ଭାଇ । ତାଙ୍କ ସାନଭାଇଙ୍କର ଝିଅକୁ ମୋ' ପୁତୁରା (ଶୁଭମୟ) ବିବାହ କରିଥିଲେ । ତେଣୁ ସେ ମୋର ସମୁଦି ହୁଅନ୍ତି । କାହିଁକି କେଜାଣି ମୁଁ ତାଂକୁ ସମୁଦି ବୋଲି ଡାକି ପାରି ନଥାଏ । ସେ ମୋ'ଠାରୁ ବହୁତ ବଡ଼ । ସେ କୋଲଥଳ ସ୍କୁଲରେ ପ୍ରଧାନ ଶିକ୍ଷକତା କଲାବେଳେ, ସବୁବେଳେ ଆମ ଦାଣ୍ଡ (ଖୋସଲପୁର, ମୋ' ଶାଶୁଘର) ବାଟେ ସେ ସ୍କୁଲକୁ ଯାଆନ୍ତି । ମୁଁ ତାଂକୁ ପ୍ରତିଦିନ ଦେଖେ, ତା'ପରେ ସେ ଆମର ବଂଧୁ ହେଲେ । ସେ ଥିଲେ ଆଧ୍ୟାତ୍ମିକବାଦୀ ଲୋକ । ମତେ ମଧ୍ୟ ସେ ସାନ ଭଉଣୀ ପରି ଭାବନ୍ତି, ସ୍ନେହ କରନ୍ତି । ସେ ମୋ' ପୁଅକୁ ମଧ୍ୟ ଭାରି ଭଲପାଆନ୍ତି ।

"ଅଭୁଲା ଦିନ ତ କେବେ ଆସେନା ଫେରି
ତଥାପି ଏ ମନ ତାକୁ ହୁଅଇ ଝୁରି ।"

ସମୟ ତା'ର ଆଦି ନାହିଁ, ନାହିଁ ଅନ୍ତ । ସେ ଅକ୍ଷୟ, ସେ ଅମର, ସେ ଏକ ଅବିଚ୍ଛିନ୍ନ ଧାରା । ବହି ଚାଲିଛି, ଚାଲିଥିବ ନିଃଶବ୍ଦରେ । ସୁଖରେ ନୁହେଁ ସେ ଉଲ୍ଲସିତ, ନୁହେଁ ମଧ୍ୟ ଦୁଃଖରେ ଅଧୀର । ସଂପୂର୍ଣ୍ଣ ନିର୍ଲିପ୍ତ, ନିର୍ବିକାର । ତା'ର ପ୍ରଖର ସ୍ରୋତରେ ଅତୀତ ଗର୍ଭରୁ ଭାସି ଆସୁଛି ବର୍ତ୍ତମାନ ଏବଂ ବର୍ତ୍ତମାନ ଗର୍ଭରୁ ଭାସି ଚାଲିବ ଭବିଷ୍ୟତ । ସମୟର ସେହି ଧାରାରେ ଏହି ଜୀବନ । କେତେ ସ୍ମୃତି କେତେ ଅନୁଭୂତି ସେହି ଦୂର ଅତୀତର- ଯାହା ଉଭୟ ଆନନ୍ଦ ଓ ଅଶ୍ରୁରେ ଅନୁଲିପ୍ତ, ସୁଖ ଓ ଦୁଃଖରେ ସିକ୍ତ ।

ମନ କହୁଛି ପୁଣି ଥରେ ସେ ଫେରି ଆସନ୍ତେ କି ସ୍ୱର୍ଗଧାମରୁ, ଗଢ଼ିବା ପାଇଁ ତାଙ୍କର ଏହି ଅସମାପ୍ତ ମାଟିର ବୈକୁଣ୍ଠକୁ । ଈଶ୍ୱରଙ୍କ ନିକଟରେ ଏତିକି ପ୍ରାର୍ଥନା, ଏତିକି ନିବେଦନ ।



*କୁଆଖିଆ, ଖୋସାଲପୁର*



Digitized by PPRACHIN, SOA

# କିଛି ଅକୁହା କଥା



ପ୍ରତିଭା ସାହୁ

ତୁଳସୀ ଦୁଇ ପତ୍ରରୁ ବାସିଲା ପରି ଖଣ୍ଡିତର ଗ୍ରାମର ବା ମଠର ମୁଖ୍ୟ ବା ମହନ୍ତ ରାଜା ଶିଶିର କୁମାରୀ ଭାରତୀ । ଏପରି ଜଣେ ବ୍ୟକ୍ତି ଯାହାଙ୍କର ପ୍ରଶଂସା ସବୁଠି ଚର୍ଚ୍ଚିତ ହେଉଛି । ସେ ସବୁ ବ୍ୟକ୍ତିଙ୍କୁ ଭଲ କଥା, ସାହସ, ସମ୍ମାନ, ସାହାଯ୍ୟ ଏବଂ ଧୈର୍ଯ୍ୟ ରଖିବାକୁ କୁହନ୍ତି । କାରଣ ଶିଶିର କୁମାର ଭାରତୀ ସେହିଭଳି ଜଣେ ସମ୍ମାନନୀୟ, ସାହସୀ ଏବଂ ଧୈର୍ଯ୍ୟଶାଳୀ ଲୋକ । ଆଉ ତାଙ୍କର ସେହି ସାହସ ଓ ଧୈର୍ଯ୍ୟ ବଳରେ ଏତେ ବାଟ ଯାଇଥିଲେ, କିନ୍ତୁ ତାଙ୍କର ସଂପୂର୍ଣ୍ଣ ସ୍ୱପ୍ନ ପୂରଣ ହେବାକୁ ହୁଏତ ଭାଗ୍ୟ ତାଙ୍କୁ ସହାୟତା ଦେଲା ନାହିଁ କି ଭଗବାନ ଚାହିଁଲେନି ତାହା ହିଁ ସେହି ଭଗବାନ ମଦନମୋହନଙ୍କୁ ଜଣା ।

ଏହାଛଡ଼ା ତାଙ୍କ ବିନା ଗ୍ରାମର ଅବସ୍ଥା ଯେପରି କି ଅନ୍ଧକାର ପରି, ଯେମିତିକି ପୂର୍ଣ୍ଣିମାର ଜହ୍ନକୁ ଗ୍ରହଣ ବା ମେଘ ଡାଂକିଲା ପରି । ଆଉ ସବୁଠାରୁ ବଡ଼କଥା ହେଲା ଯେମିତିକି ପରିବାରର ମୁଖ୍ୟ ଥିଲେ ପରିବାରଟି ପରିବାର ଭଳି ଲାଗେ ସେମିତି ସବୁ ସ୍ଥାନରେ ଜଣେ ମୁଖ୍ୟ ଥିଲାବେଳେ ସ୍ଥାନଟି ଯେପରି ହୁଏ ମୁଖ୍ୟ ନଥିଲେ ସେମିତି ହେବ ନାହିଁ । ସେହିପରି ମହନ୍ତ ମହାରାଜ ଶିଶିର କୁମାର ଭାରତୀଙ୍କ ଅନୁପସ୍ଥିତିରେ ମଠର ଏବଂ ଗ୍ରାମର ଓ ଗ୍ରାମବାସୀବୃନ୍ଦଙ୍କ ଅବସ୍ଥା ସେହିପରି । ଯେମିତିକି ଦୁର୍ଭିକ୍ଷ ପଡ଼ିଛି ଖଣ୍ଡିତର ଗ୍ରାମରେ । ସମସ୍ତେ ନିରାଶ ହୋଇ ପଡ଼ିଛନ୍ତି । କାହିଁକି ନା ଖଣ୍ଡିତର ଗ୍ରାମର ଏକ ଉଜ୍ଜ୍ୱଳମୟ ଦୀପଟି ଲିଭି ଯାଇଛି ଚିରଦିନ ପାଇଁ । ଏସବୁ କହିବାର କାରଣ ଶିଶିର କୁମାର ଭାରତୀ କାହାର ଦୁଃଖ କଷ୍ଟ ସହିପାରନ୍ତି ନାହିଁ । ସେଥିପାଇଁ ଯେଉଁ ଲୋକଙ୍କର ଯେତେବେଳେ ଦରକାର ପଡ଼ିଛି ସେ ସେଇ ମୁହୂର୍ତ୍ତରେ ଯାଇ ସେ ଲୋକ ପାଖରେ ପହଞ୍ଚିଛନ୍ତି ଏବଂ ପହଞ୍ଚି କି ତାକୁ ଧୈର୍ଯ୍ୟ ଓ ସାହସ ବାନ୍ଧିବାକୁ କୁହନ୍ତି ।



Digitized by PPRACHIN, SOA

ହେଲେ ଭଗବାନ ଏତେ ନିଷ୍ଠୁର କେମିତି ଯେ ହୁଅନ୍ତି, ତାହା ହିଁ ସେହି ଭଗବାନଙ୍କୁ ଜଣା, ତାହା ଛଡ଼ା ଆଉ କେହି କହିପାରିବେ ନାହିଁ। ଯେଉଁ ବ୍ୟକ୍ତି ସମସ୍ତଙ୍କର ମଂଗଳ ଚାହେଁ ଓ ମଂଗଳ କାମନା କରେ, ଭଲ କଥା, ଭଲ ଶିକ୍ଷା ଦିଏ ସେହି ଲୋକ ସହିତ ସମସ୍ତ ଲୋକଙ୍କଠାରୁ ଆରମ୍ଭ କରି ଭଗବାନ ପର୍ଯ୍ୟନ୍ତ ସମସ୍ତେ କଷ୍ଟ ଓ ଯନ୍ତ୍ରଣା ଦେଇଥାନ୍ତି। ଆଉ ଭଗବାନ ଦେଖନ୍ତି କିଏ ମୋର କଷ୍ଟ ଯନ୍ତ୍ରଣା ସହୁଛି, ଆଉ ଯିଏ ସହି ଯାଏ ତା' ଉପରେ ବୋଝ ଉପରେ ନଳିତା ବିଡ଼ା ପରି କଷ୍ଟ ଓ ଯନ୍ତ୍ରଣା ଦେଇ ଚାଲନ୍ତି। ଆଉ ଏ ଲୋକମାନେ ତାକୁ ସାହାଯ୍ୟ କରିବା ବଦଳରେ ହସନ୍ତି ଓ ନାକରେ କାଠି ପୂରେଇ ଛିଂକିଲା ପରି ବ୍ୟବହାର କରିଥାନ୍ତି।

ଶେଷରେ କହୁଛି କି ମୁଁ ଛୋଟ ପିଲାଟିଏ। କେହି ଖରାପ ଭାବିବନି, ଛୋଟ ମୁହଁରେ ବଡ଼ କଥାଟିଏ। ଏଠାରେ ସମସ୍ତଙ୍କଠାରୁ ମୁଁ ସାନ ହେଲେ ବି ଗୋଟିଏ କଥା କହିବି କି କୌଣସି ବ୍ୟକ୍ତି, ହିଂସା, ବାଦ, ଅହଂକାର କରନ୍ତୁ ନାହିଁ। ଏମିତି କଲେ ଲୋକ ଆଶୀର୍ବାଦ ବଦଳରେ ଅଭିଶାପ ଦେବେ। ଆଉ ମୋର ଜେଜେମା', ତୁମକୁ ଏତିକି କହିବି ତୁମେ କେବେ ନିରାଶ ହୁଅ ନାହିଁ। ସବୁବେଳେ ସାହସ ରଖ। କିଏ ତୁମକୁ ସାହସ ଦେଉ ନ ଦେଉ, ଜେଜେ ତୁମକୁ ଯାହା ପାଖରେ ଛାଡ଼ିକି ଯାଇଛନ୍ତି ସେହି ମଦନମୋହନ ସବୁବେଳେ ତୁମକୁ ସାହା ହେବେ।

*ଖଣ୍ଡିତଳ*







Digitized by PPRACHIN, SOA

# ମହନ୍ତବାବା

ପ୍ରେମଲତା ମହାରଣା



ପିଲାଥିଲି, ଯେତେବେଳେ ଦୁଷ୍ଟ ହେଉଥିଲି ମା' କହେ ମରିଯାଆନ୍ତି କି ମୁଁ, ଏତେ ଜଂଜାଳରେ ହନ୍ତସନ୍ତ ହୁଅନ୍ତିନି। ଟିକେ ବଡ଼ ହେଲି, ଜିଦ୍ ଆହୁରି ବଢ଼ିଲା। ମାଆର କଥା କଥାକେ ସେଇକଥା, ମୁଁ ମରିଗଲେ ସବୁଠିକ୍ ହେଇଯିବ, ତୋ' ମୁଣ୍ଡରେ ବୁଦ୍ଧି ପଶିବ। ପୁଣି ବଡ଼ ହେଲି, ବାହାରକୁ ବାହାରିଲି, ମାଆ ବି କହିଲା, ଦେଖି ଚାହିଁ ଚଳିବୁ, ବାହାରେ କିଛି ଯଦି ତୋ' କଥା ଶୁଣେ ନା, ମୁଁ ମରିଯିବି। ତୋ' ଫେରିବା ଯାଏ ନଥିବି। ଆଉ ଦେହ ଟିକେ ଖରାପ ହେଲେ ଦିଅଁଙ୍କ ଆଗରେ ମୁଣ୍ଡ ପିଟେ ମୁଁ ମରିଯାଏ ପ୍ରଭୁ, ମୋ' ଛୁଆର କିଛି ନହେଉ।

ଆଉ ବାପା, ଗୁଡ଼ାଏ ସ୍ୱପ୍ନ ବୁଣନ୍ତି ମୋ' ଆଖିରେ, ଗୁଡ଼ାଏ ଦେଖନ୍ତି ବି ସ୍ୱପ୍ନ ନିଜେ ମତେ ନେଇ। 'କରିବି ବାପା, ସବୁ ପୂରଣ କରିବି ତମର।' ସେତେବେଳେ ବି ଗୋଟେ ଆର୍ଦ୍ର ସ୍ୱରରେ ବାପା କହନ୍ତି- ହଉ, ଯାହା କରିବୁ ତୋ' ପାଇଁ। ସେ ସୁଖ ଦେଖିବାକୁ ମୋ'ର ଆୟୁଷ ଥିବ କି ନାହିଁ।

ଏଇମିତି ବାପା ମା' କହୁଥିଲେ ଶୁଣିଚି ପିଲାଟି ଦିନରୁ। ମୁଁ ବି ମାଆ ହେଲାପରେ ଏଇମିତି ଟିକେ ଟିକେ କଥାରେ କହେ ମୋ' ପୁଅକୁ। ସବୁ ବାପା ମାଆଙ୍କର ସ୍ୱରରେ ଏଇ ଗୋଟିଏ କରୁଣ ସ୍ୱର ଥାଏ ବୋଧେ। ମିଛ ଭୟ ଦେଖେଇବାରେ ହେଉ କି ଆଶଙ୍କାର ଭୟରେ।

ହଁ ସତ, ମିଛ ନୁହେଁ। ହେଲେ ଏ ପିଲା ମନ କ'ଣ ବୁଝେ। ମାଆ ତ ନିଇତି ମରେ ମିଛରେ। ମିଛ ଏ ମରଣର ଆଧାର ନିଶ୍ଚୟ।

ମିଛ ବି ବେଳେବେଳେ ସତର ରୂପନେଇ ଠିଆ ହେଇଯାଏ ଆଗରେ, ବାକି ଜୀବନକୁ ଅନୁତାପରେ ଛାଡ଼ି ଦେବାକୁ। ଏଇଟା ବିଲ୍‌କୁଲ୍ ମିଛ ନୁହେଁ। ଘଟିଲା ଏଇମିତି ସତଟିଏ ମୋ' ଜୀବନରେ। ସେବେଠୁ ପ୍ରତି ମୁହୂର୍ତ୍ତରେ କେମିତି



Digitized by PPRACHIN, SOA

ଗୋଟେ ଅପରାଧବୋଧ ମୋତେ ଇଂଗିତ କଲାପରି ଲାଗୁଛି। ମୁଁ ଅପଦାର୍ଥ, ଜାଣି ନଥିଲି କଥା ପଦକ ପଛରେ ଏତେବଡ଼ ନିଷ୍ଠୁର ସତ୍ୟଟିଏ ଅଛି ବୋଲି।

ସାଧୁ, ସନ୍ଥ, ସନ୍ନ୍ୟାସୀ, ଏମାନଙ୍କ ପ୍ରତି ଗୋଟେ ବିରାଟ ସମ୍ମାନବୋଧ ଥାଏ ମୋ' ଭିତରେ। ଆଶ୍ରମ, ମଠ, ମନ୍ଦିରରେ ସମୟ ସାରିବାରେ ଥାଏ ଅହେତୁକ ଆନନ୍ଦ। ଏଇ ଭିତରେ ଥରେ ସୁଯୋଗ ଆସିଲା ଯିବାପାଇଁ ଖଣ୍ଡିତର ଭାରତୀ ମଠ, ରାକ୍ଷୀ ପୂର୍ଣ୍ଣିମାରେ। କୌଣସି ଗୋଟେ ଅସୁବିଧାର ସମ୍ମୁଖୀନ ହେଇ ପାଳି ନଥିଲି ରାକ୍ଷୀପର୍ବ। ପଳାଇଗଲି ମଠକୁ। ଏଇମିତି ନୁହେଁ, ସେଦିନ ସୁଶାନ୍ତ ପଣ୍ଡା ସାର୍‌ଙ୍କର 'ଅମୃତ ବିନ୍ଦୁ' ବହିଟି ସେଇଠି ଉନ୍ମୋଚନ ହେବାରେ ଥାଏ। ଥିଲା ସାର୍‌ଙ୍କ ନିମନ୍ତ୍ରଣ, ସେ ବହିର ପ୍ରକାଶକ ହିସାବରେ।

ପହଂଚିଲୁ ମଠରେ। ପୂଜା ଚାଲିଥିଲା। ଚାଲିଥିଲା ଗୀତା ପାରାୟଣ। ହେଲା ପୁସ୍ତକ ଉନ୍ମୋଚନ। କିଛି ଅଭିଭାଷଣ। ପରେ ଭୋଜନ। ମଠ ଆସିଛି, ମହନ୍ତଙ୍କ ସହ ମିଶିବାର ଆଗ୍ରହରେ ଥିଲି ଆରମ୍ଭରୁ। ଏଯାଏ ହେଇ ନଥିଲା ଭାବ ବିନିମୟ। ଗଲି ତାଙ୍କ ପାଖକୁ। ପ୍ରଣାମ କଲି। ଆଶୀର୍ବାଦ ନେଲି ଅଜସ୍ର। ମୁଁ ତ ଖାଲି ଅତିଥି କି ଅଭ୍ୟାଗତ ନୁହେଁ, ଆଉ ଗୋଟିଏ ପରିଚୟ ଅଛି ମୋର, ମୁଁ ପ୍ରକାଶକଟିଏ। ବରାଦଟିଏ ଆସିଲା ଏଇ କଥୋପକଥନରୁ, "ମୋ'ର ବହିଟିଏ କରିଦେବୁ। ଦେଖ୍, ଶୀଘ୍ର କରି ଦେବୁ, ଡେରି କରିବୁନି। ଭଲ ବହିଟିଏ କରିବୁ। ସବୁ କାମ ନିଜେ ବୁଝିବୁ, ମୁଁ ଯାଇପାରିବିନି ତୋ' ପାଖକୁ। ତୁ ନିଜେ କରି ଶୀଘ୍ର ଆଣି ଏଇଠି ଏଇମିତି ଉନ୍ମୋଚନ କରିଦେଇ ଯିବୁ। ବୁଢ଼ାଲୋକ ମୁଁ। ବଂଚିବିନି ବେଶୀ ଦିନ। କେତେବେଳେ କୋଉକଥା। ଯେକୌଣସି ମୁହୂର୍ତ୍ତରେ ଚାଲିଯିବି। ମୋ' କଥାକୁ ମନେ ରଖିବୁ, ମୋ' କାମ ଆଗେ କରିବୁ।"

ମୁଁ କିନ୍ତୁ ହସିଦେଲି। ବାପାଙ୍କ କହିଲାପରି ଲାଗିଲା। 'ହଁ ପଠାଇବେ, କରିଦେବି।'

ପଠାଇଲେ ପାଣ୍ଡୁଲିପି। ବହି କାମ ଚାଲିଲା ସୁଶାନ୍ତ ସାର୍‌ଙ୍କ ସହଯୋଗରେ। "ଶ୍ରୀ ଶ୍ରୀ ମଦନମୋହନଜୀଉ ମଠ ଐତିହ୍ୟ ଓ ସଂସ୍କୃତି" ନାମର ବହିଟି ବି ସରିଲା। କାମ ଭିତରେ ସବୁବେଳେ ଫୋନ୍‌ରେ ବି କଥା ହେଉଥିଲେ ମହନ୍ତ ବାବା(ଶିଶିର ଭାରତୀ)। ସବୁ ଫୋନ୍‌ରେ ତାଙ୍କର କିନ୍ତୁ ଥାଏ କଥାଟିଏ, "ତୁ ଆସିବୁ ନିଶ୍ଚୟ। କିଛି ବାହାନା କରିବୁନି। ମୋ' ବହି ସହ ମୁଁ ଯେମିତି ତତେ ଦେଖିବି। ମୋ' ମନ କଷ୍ଟ ହେବ ନହେଲେ।"



Digitized by PPRACHIN, SOA

ଅଯୋଗ୍ୟ ମୁଁ ଏ ଅନୁରୋଧର । ଯାଇପାରିଲିନି ଉନ୍ମୋଚନ ଦିନ । "ହଁ, ପ୍ରକାଶକ ମୁଁ, ସମସ୍ତେ ଖୋଜିବେ, ସବୁ ବହିର ଉନ୍ମୋଚନରେ ଯିବି ବୋଲି କିଛି ତ କଥା ନାହିଁ । ଆଉ କୋଉବେଳେ ଗଲେ ହେବନି ।" ଏଇମିତି କିଛି ଖିଆଲରେ ଅନୁପସ୍ଥିତ ହେବାକୁ ପଡ଼ିଲା ତାଂକ ଆୟୋଜନରେ । ପର ଦିନ ବି ଫୋନ୍ ଆସିଲା, "ମତେ ଠକି ଦେଲୁ ମାଆ, ମୋ' କଥା ରଖିଲୁନି ।"

ମୁଁ ଆପଣଙ୍କୁ ଠକିନି ମହନ୍ତ ବାବା, ଠିକି ହେଇଯାଇଛି ନିଜେ ନିଜେ । ଗୋଟିଏ କଥା ରଖିପାରିନି ବୋଲି ଏ ଜନ୍ମରେ ବି ନିଜକୁ କ୍ଷମା କରିପାରିବିନି । ଜାଣି ନଥିଲି ଆପଣଙ୍କ ଡାକଟା ମୋ' ପାଇଁ ପ୍ରଥମ ଆଉ ଶେଷ ଡାକ ଥିଲା ବୋଲି । ଥରଟିଏ ଦେଖିଥିଲି ଆପଣଙ୍କୁ । ଆଜି ସ୍ମରଣିକା କାମ କଲାବେଳେ ଅନେକ ଲୋକଙ୍କଠାରୁ ଅନେକ କିଛି ଶୁଣୁଛି । ମଠ ମହନ୍ତ ବୋଲି ଯେଉଁ ଉପାଧିଟିଏ ପାଇଥିଲେ ସତରେ ପ୍ରଯୁଜ୍ୟ ଥିଲା ଆପଣଙ୍କ ଲାଗି । ମୁଁ ଅନୁଭବ କରିଥିଲି ଆପଣଙ୍କ ସହ କଥାରେ । ଜାଣିଥିଲି ହୃଦୟରେ ବାପା ମାଆଙ୍କର ଆବେଗ ନଥିଲେ ଏ ଆଦର ଅଧିକାର କଥା କାହା ପାଟିରୁ ବାହାରିବ ନାହିଁ । ସେଇ ନ୍ୟାୟରେ ମୋତେ କ୍ଷମା କରିଦେବେ । ଶତକୋଟି ପ୍ରଣାମ ଆପଣଙ୍କ ପାଦ ତଳକୁ ॥

ଜୟଗୁରୁ, ଜୟ ଜଗନ୍ନାଥ ॥

*ଜାରକା, ଧର୍ମଶାଳା, ଯାଜପୁର*
*ଫୋନ୍: ୯୨୩୮୫୧୯୮୧୫*







Digitized by PPRACHIN, SOA

# ଦେବ ସ୍ୱରୂପ 'ବାବା'



ଶୁଭମୟ ପଣ୍ଡା

ପ୍ରାଣୀର ଭଲ ମନ୍ଦ ବାଣୀ
ମରଣ କାଳେ ତାହା ଜାଣି। (ଶ୍ରୀମଦ୍ ଭାଗବତ)

ଉପରୋକ୍ତ ବାଣୀକୁ ସେଦିନ ସମସ୍ତେ ଅନୁଭବ କରିଥିବେ, ଯେଉଁମାନେ ଶ୍ରୀ ଶ୍ରୀ ମଦନମୋହନ ଜୀଉ, କେଉଟ ଲଗୁଆଁର ମହନ୍ତ ଶ୍ରୀଯୁକ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ (ବାବା) ମହୋଦୟଙ୍କ ଶବାଧାରକୁ ଦର୍ଶନ କରିଥିବେ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଉତ୍କଳପ୍ରଦେଶ ବିରଜାକ୍ଷେତ୍ର ଅନ୍ତର୍ଗତ ରସୁଲପୁର ବ୍ଲକ୍‌ର ଖଣ୍ଡିତର ଗ୍ରାମରେ ଅବସ୍ଥିତ ଶ୍ରୀ ଶ୍ରୀ ମଦନମୋହନ ଜୀଉ ମଠର ୧୦ମ ବାବା ଥିଲେ ମହନ୍ତ ଶ୍ରୀଯୁକ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ ମହୋଦୟ। ପ୍ରକୃତରେ ଖଣ୍ଡିତର ବୋଲି କୌଣସି ରାଜସ୍ୱ ଗ୍ରାମ ନାହିଁ। ଏକ ଅପଭ୍ରଂଶ ଯୁକ୍ତ ଶବ୍ଦ ଖଣ୍ଡିଆତରି ବା ଖଣ୍ଡିଆ ଡଂଗାରୁ ଏହା ଆନୀତ। ମା' ଘାଟମଂଗଳାଙ୍କ ନିକଟରେ ପୁରାତନ କାଳରେ ନାଉରିଆ ଲୋକଙ୍କୁ ନଦୀ ପାର ନିମନ୍ତେ ଖଣ୍ଡିଆ ଡଂଗା ବ୍ୟବହାର କରୁଥିବାରୁ; ଏ ନାମଟି ତହିଁରୁ ଆସିଛି ବୋଲି ଲୋକମୁଖରେ ପ୍ରଚଳିତ। ରାଜସ୍ୱ ଗ୍ରାମ କିନ୍ତୁ ସାନ ତ୍ରିଲୋଚନପୁର, ବଡ଼ ତ୍ରିଲୋଚନପୁର, ଜଳସରପୁର ଏବଂ ମଠ ଯେଉଁ ସ୍ଥାନରେ ଅଛି ତାହା କେଉଟ ଲଗୁଆଁ।



Digitized by PPRACHIN, SOA

ଉକ୍ତ ମଠଟି ଦଶନାମୀ ସାଧୁ ସଂପ୍ରଦାୟର ପୂଜ୍ୟ ସନ୍ଥ ମହନ୍ତ ଶ୍ରୀ ସଦାଶିବ ଭାରତୀ ଗୋସ୍ୱାମୀ ମହୋଦୟଙ୍କ ଦ୍ୱାରା ୧୭୦୦ ଶତାବ୍ଦୀ ପ୍ରାରମ୍ଭରେ ସ୍ଥାପିତ ହୋଇଥିଲା। ନିଜର ସାଧନା ବଳରେ ସେ ଜାଣିପାରିଥିଲେ ଯେ, ଏ ସ୍ଥାନଟି ଏକ ଶୈବକ୍ଷେତ୍ର। ତେଣୁ ମଠର ଅପରପାର୍ଶ୍ୱ ଖରସ୍ରୋତା ନଦୀକୂଳରେ ଖାଙ୍କଡ଼େଶ୍ୱର ମହାଦେବ, ଯେ କି ପାତାଳଫୁଟା; ତାଙ୍କୁ ଆବିଷ୍କାର ଓ ପୂଜାର୍ଚ୍ଚନା କରିଥିଲେ। ସେହି ନ୍ୟାୟରେ ଶ୍ରୀ ଖାଙ୍କଡ଼େଶ୍ୱର ମହାଦେବ ହିଁ ମଠର ଆଦ୍ୟଦେବ। ଏବେ ମଠରେ ପୂଜା ପାଉଥିବା ଶ୍ରୀ ଶ୍ରୀ ମଦନମୋହନ ଜୀଉ ଚତୁର୍ଥ ମହନ୍ତ ଶ୍ରୀ ପୁରୁଷୋତ୍ତମ ଭାରତୀଙ୍କ ସମୟରେ କିଛି ସାଧୁ ଅଶ୍ୱପୃଷ୍ଠରେ ବସାଇ ନଦୀ ପାର କରି ଶ୍ରୀକ୍ଷେତ୍ର ନେଉଥିବାବେଳେ ସ୍ୱପ୍ନାଗତ ହୋଇ ଏହି ମଠରେ ସ୍ଥାପନା କରିଥିଲେ। ବିଗ୍ରହ କଳା ମୁଗୁନି ପ୍ରସ୍ତର ନିର୍ମିତ, ଷଡ଼ଭୁଜା, ତ୍ରିଭଙ୍ଗୀଠାଣିରେ ବିଦ୍ୟମାନ। ଉପର ୪ ହସ୍ତରେ ଶଂଖ, ଚକ୍ର, ଗଦା, ପଦ୍ମ ଏବଂ ତଳ ୨ ଗୋଟି ହସ୍ତରେ ବଂଶୀବାଦନ କରୁଛନ୍ତି। ପାଦପଦ୍ମ ନିକଟରେ ଧେନୁ ସହ ବତ୍ସା ଦଣ୍ଡାୟମାନ। ସ୍ୱପ୍ନାଗତ ଅନୁସାରେ ବିରଳ ଭାବେ ଉତ୍ତରମୁଖା ରୂପେ ପୂଜିତ। ଏଠାରେ କିନ୍ତୁ ଶ୍ରୀରାଧା ନାହାଁନ୍ତି।

ମହନ୍ତ ଶ୍ରୀଯୁକ୍ତ ଶିଶିର କୁମାର ଭାରତୀ ମହୋଦୟଙ୍କୁ ଆମେ ସମ୍ମାନ ଓ ଶ୍ରଦ୍ଧାରେ 'ବାବା' ବୋଲି ଡାକୁ; କାରଣ ସେ ଥିଲେ ସନ୍ନ୍ୟାସୀ ଓ ଆମ ସମସ୍ତଙ୍କର ପିତୃତୁଲ୍ୟ। ଖଣ୍ଡିତର ଭାରତୀ ବଂଶର ପୂଜ୍ୟଶ୍ରୀ ପିତା ନିତ୍ୟାନନ୍ଦ ଭାରତୀ ଏବଂ ମାତା ମାଧବୀ ଭାରତୀଙ୍କ ଜ୍ୟେଷ୍ଠପୁତ୍ର ରୂପେ ତା- ୧୦/୦୫/୧୯୫୨ ମସିହାରେ ଭୂମିଷ୍ଠ ହୋଇଥିଲେ। ପରେ ପୁତ୍ର ରୂପେ ତାଙ୍କୁ ମଠାଧୀଶ ମହନ୍ତ ଶ୍ରୀ ନବକିଶୋର ଭାରତୀ ଗ୍ରହଣ କରି ଆଣି ମଠରେ ରଖିଥିଲେ।

'ବାବା'ଙ୍କର ଶିକ୍ଷାଗତ ଯୋଗ୍ୟତା କଥା ଯଦି ଉଠେ, ସେ ୧୯୫୯ରେ ବିଦ୍ୟାରମ୍ଭ କରିଥିଲେ। ପ୍ରଥମରୁ ପଂଚମ ଶ୍ରେଣୀ ଯାଏ ଜଳସରପୁର ରାଧାଗୋବିନ୍ଦ ପ୍ରାଥମିକ ବିଦ୍ୟାଳୟ, ଖଣ୍ଡିତରରେ ପଢ଼ିଥିଲେ। ଷଷ୍ଠ ଓ ସପ୍ତମ ହାଡ଼ିବନ୍ଧୁ ବିଦ୍ୟାପୀଠ, ଖଣ୍ଡିତର। ଅଷ୍ଟମରୁ ଏକାଦଶ ଖଣ୍ଡିତର ଉଚ୍ଚ ବିଦ୍ୟାଳୟରେ ୧୯୬୬ରୁ ୧୯୭୦ ମସିହା ମଧ୍ୟରେ ପଢ଼ିଥିଲେ। +୨ ଏବଂ +୩ ରାଜନୀତି ବିଜ୍ଞାନରେ ସମ୍ମାନ ସହ ନରସିଂହ ଚୌଧୁରୀ ମହାବିଦ୍ୟାଳୟ, ଯାଜପୁରଠାରେ ୧୯୭୦ରୁ ୧୯୭୪ ମସିହା ଯାଏ ପଢ଼ିଥିଲେ। ଚାକିରି କରିଥିବା ସମୟରେ



Digitized by PPRACHIN, SOA

ରାଧାନାଥ ତାଲିମ ଅନୁଷ୍ଠାନ, କଟକରୁ ଶିକ୍ଷାରେ ସ୍ନାତକ ପ୍ରଶିକ୍ଷଣ ନେଇଥିଲେ।

୧୯୭୬ ମସିହାରେ ମଧୁବନ ଉଚ୍ଚ ବିଦ୍ୟାଳୟରେ ଶିକ୍ଷକତା ଜୀବନର ଅୟମାରମ୍ଭ କଲେ। ୧୯୭୭ ମସିହା ଜୁନ୍‌ମାସ ୨୯ ତାରିଖରେ କ୍ଷେତ୍ରପାଳ ଉଚ୍ଚବିଦ୍ୟାଳୟ, କୋଳଥଳ ସ୍ଥାପନା ନିମନ୍ତେ ଏକ ସଭା ହେଉଥିବାବେଳେ ପ୍ରଧାନ ଶିକ୍ଷକ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ। ସେହିଦିନଠାରୁ ସେ ଉକ୍ତ ବିଦ୍ୟାଳୟକୁ ନିଜର ଶିଶୁ ତୁଲ୍ୟ ଗ୍ରହଣ କରି ଶ୍ରମଦାନ ପୂର୍ବକ ତା'ର ସମସ୍ତ ଉନ୍ନତି ସାଧନ କରିଥିଲେ। ଆଜି ଉକ୍ତ ବିଦ୍ୟାଳୟ ଆମ ରସୁଲପୁର ବ୍ଲକ୍‌ର ଏକ ନମ୍ବର ବିଦ୍ୟାଳୟ ରୂପେ ଦଣ୍ଡାୟମାନ।

୨୦୦୪ ମସିହାରେ ତାଙ୍କ ପାଳିତ ପିତା ମହନ୍ତ ଶ୍ରୀ ନବକିଶୋର ଭାରତୀଙ୍କ ମାନସ ସନ୍ତାନ ଖଣ୍ଡିତର ହାଇସ୍କୁଲ, ଖଣ୍ଡିତରରେ ପ୍ରଧାନଶିକ୍ଷକ ରୂପେ ଯୋଗାଦାନ କଲେ। ଉକ୍ତ ବିଦ୍ୟାଳୟ ମଧ୍ୟ ଆଜି '୫ଟି' ଅନ୍ତର୍ଭୁକ୍ତ ହୋଇ ବିଶାଳ ଆକାରରେ ଦଣ୍ଡାୟମାନ।

୨୦୧୦ ମସିହାରେ 'ବାବା' ଚାକିରିରୁ ଅବସର ଗ୍ରହଣ କରନ୍ତି ଖଣ୍ଡିତର ହାଇସ୍କୁଲରେ ଥିବା ସମୟରେ। ସେହି ବର୍ଷ ମହାଆଡ଼ମ୍ବରରେ ମୋର ପିତା ପ୍ରାଧ୍ୟାପକ ଶ୍ରୀଯୁକ୍ତ ସୁଶାନ୍ତ କୁମାର ପଣ୍ଡା ମହୋଦୟଙ୍କ ପରାମର୍ଶ ଓ ଅଧ୍ୟକ୍ଷତାରେ ଏକ ଗୀତା ଯଜ୍ଞ ମଠରେ କରିଥିଲେ। ଗୀତାପଠନ, ଘୃତ ଯଜ୍ଞ, ଅନ୍ନ ଯଜ୍ଞ ଇତ୍ୟାଦି ମହାସମାରୋହରେ ଗ୍ରାମବାସୀଙ୍କ ସହଯୋଗରେ ଅନୁଷ୍ଠିତ ହୋଇଥିଲା। ଏହାପରେ ୨୦୧୧ ମସିହାରୁ ପ୍ରତି ପୂର୍ଣ୍ଣିମାରେ ଗୀତା ପାରାୟଣ, ହବନ, ଅନ୍ନଯଜ୍ଞ, ପୂଜା ବାବାଙ୍କ ପ୍ରଚେଷ୍ଟାରେ ଜାରି ରହିଥିଲା।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ୧୯୯୧ ମସିହା ଫେବୃୟାରୀ ୨୦ ତାରିଖ ଦିନ ବାବାଙ୍କର ପାଳିତ ପିତା ତଥା ପୂର୍ବ ମଠାଧୀଶ ଶ୍ରୀ ନବକିଶୋର ଭାରତୀ ମହୋଦୟ ଇହଲୀଳା ସମ୍ବରଣ କରିଥିଲେ। ତା- ୦୮/୦୩/୧୯୯୧ ରିଖଠାରୁ 'ବାବା' ମଠର ସମସ୍ତ ଦାୟିତ୍ୱ ଗ୍ରହଣ କରିଥିଲେ ବା ବିଧିବଦ୍ଧ ଭାବେ ମସ୍ତକରେ ଶିରପା ଗ୍ରହଣ କରିଥିଲେ। ସେହି ଦିନଠାରୁ ସେ ଆଉ ପଛକୁ ଫେରି ଚାହିଁ ନାହାଁନ୍ତି; ମଠର ସର୍ବାଦୌ ଉନ୍ନତିକଳ୍ପେ ଶତତ ଚେଷ୍ଟିତ ଥିଲେ।

ବାବାଙ୍କ ସହିତ ମୋର ପ୍ରଥମ ସାକ୍ଷାତ୍ ୨୦୧୦ ମସିହାରେ ହୋଇଥିଲା, ଯେବେ ସେ ଆମ ଘରକୁ ଗୀତାଯଜ୍ଞ ବିଷୟରେ ବାପାଙ୍କ ସହ ଆଲୋଚନା



Digitized by PPRACHIN, SOA

ନିମନ୍ତେ ଆସିଥିଲେ। ଏହାପରେ ୨୦୧୪ ମସିହାରେ ତାଙ୍କ ଜ୍ୟେଷ୍ଠାକନ୍ୟା (ଜୟଶ୍ରୀ)ଙ୍କ ହାତକୁ ମୋ' ହାତରେ ଛନ୍ଦିଥିଲେ; ଯାହା କି ଏକ ସୌଭାଗ୍ୟପୂର୍ଣ୍ଣ ମୁହୂର୍ତ୍ତ ଥିଲା ମୋ' ନିମନ୍ତେ। ବାବାଙ୍କ ପ୍ରଦତ୍ତ ଶିକ୍ଷା ତଥା ସଂସ୍କାର ଆଜି ବି ମୋର ଧର୍ମପତ୍ନୀଙ୍କ ନିକଟରେ ଦେଖାଯାଏ। ବାବା ତାଙ୍କର ଜନ୍ମିତ ପିତାଙ୍କୁ ଦେଇଥିବା ବଚନକୁ ସାକାର କରିବା ନିମନ୍ତେ ମୋର ପତ୍ନୀଙ୍କୁ କନ୍ୟାଦାନ କରିବାର ସମସ୍ତ ଦାୟିତ୍ୱକୁ ସୁଚାରୁରୂପେ ନିର୍ବାହ କରିଥିଲେ। ସମ୍ବନ୍ଧ ସେବେଠାରୁ ବଳବତ୍ତର ରହିଛି। ବାବା ସ୍ନେହରେ ମତେ 'ଶୁଭ' ବୋଲି ସମ୍ବୋଧନ କରନ୍ତି। ଯେବେ ବି ଆମେ ମଠକୁ ଯାଇଛୁ, ଆତିଥେୟତାରେ କୌଣସି କାର୍ପଣ୍ୟତା ଦେଖାଇ ନାହାଁନ୍ତି; ଜ୍ୱାଇଁ ଭାବେ ସର୍ବଦା ଉଚ୍ଚାସନ ପ୍ରଦାନ କରିଛନ୍ତି। ଶ୍ରଦ୍ଧାରେ ଆମ ପୁଅକୁ 'ପଣ୍ଡା ବାବୁ' ବୋଲି ଡାକନ୍ତି। ଅନେକ ଥଟ୍ଟା ମଜା ହୁଅନ୍ତି ତା' ସହ। ଡାକ୍ତରଙ୍କୁ ଦେଖାଇବା ପାଇଁ ଅଥବା ଅନ୍ୟ କୌଣସି କାର୍ଯ୍ୟରେ କଟକ ଯାଇଥିଲେ, ନିଶ୍ଚୟ ଆସି ଆମ ଘରେ ପହଞ୍ଚନ୍ତି।

ବାବାଙ୍କୁ ଦେଖିବା ମାତ୍ରେ ଯେ କେହି ବି ତାଙ୍କ ବିଶାଳ ବପୁ, ଦୀର୍ଘ ଲଲାଟ, ବଳିଷ୍ଠ ବ୍ୟକ୍ତିତ୍ୱ ତଥା ମାର୍ଜିତ କଥାବାର୍ତ୍ତାରୁ ସେ ଯେ ଦେବଅଂଶୀ, ଏହା ସ୍ୱୀକାର କରିବେ। ସୁତରାଂ ଦେବ ସେବା ନିମନ୍ତେ ସେ ମଠାଧୀଶ ହୋଇଥିଲେ। ବାରମ୍ବାର ଖରସ୍ରୋତା ନଦୀର ବନ୍ୟାରେ ମଠର ପୁରୁଣା ମାଟିଘର ଭାଂଗିଯାଏ; ତେଣୁ ମଠର ଦାୟିତ୍ୱ ଗ୍ରହଣ କରିବା ପରେ ମଠକୁ ମାଟି ଚାଳଛପର ଘରୁ କୋଠାଘରକୁ ରୂପାନ୍ତରିତ କରିଛନ୍ତି। ନିଜ ଅବସରକାଳୀନ ଭତ୍ତାର ସିଂହଭାଗ (ପ୍ରାୟ ୫ରୁ ୧୦ ଲକ୍ଷ) ଟଙ୍କା ମଠର ଉନ୍ନତି ପାଇଁ, ଯଜ୍ଞେଶ୍ୱର ମହାଦେବ ମନ୍ଦିରର ଉନ୍ନତି ପାଇଁ ଖର୍ଚ୍ଚ କରିଛନ୍ତି। ଯେହେତୁ ମଠର ଜମିରୁ ଆଦାୟ ରାଜସ୍ୱ ନିଅଣ୍ଟିଆ ହୁଏ, ତେଣୁ ନିଜ ଭତ୍ତାଟଙ୍କାରୁ ଦୈନନ୍ଦିନ ନୀତିକାନ୍ତି ନିମନ୍ତେ ମଧ୍ୟ ପ୍ରଦାନ କରିଛନ୍ତି। ମଠରେ ପକ୍କାଘର, ଗେଟ୍, ଗ୍ରାନାଇଟ୍- ସିଂହାସନ କରି ଶ୍ରୀଜୀଉଙ୍କୁ ପୁନଃସ୍ଥାପନ, ନୂତନ ଭାବେ ଶାଳଗ୍ରାମ ଗାଦୀ, ଅଭିଷେକ ଗୃହ, ପୂର୍ବ ମଠାଧୀଶମାନଙ୍କ ସମାଧି ଗୃହ ନିର୍ମାଣ, ପାକଶାଳା, ଝୁଲଣ ମଣ୍ଡପ, ଅତିଥି ଗୃହ ଇତ୍ୟାଦି ତାଙ୍କ ସମୟରେ ନିର୍ମାଣ କରିଥିଲେ। ଖରସ୍ରୋତା ନଦୀକୂଳରେ ମଠରୁ ଅନତିଦୂରରେ ଅବସ୍ଥିତ ଶ୍ରୀଯଜ୍ଞେଶ୍ୱର ମହାଦେବଙ୍କ ମନ୍ଦିର ଅତ୍ୟନ୍ତ ଦୟନୀୟ ଅବସ୍ଥାରେ ଥିଲା। ନଷ୍ଟ ହୋଇଯାଇଥିବା ଛୋଟିଆ ମନ୍ଦିରକୁ ପୁନରୁଦ୍ଧାର କରି



Digitized by PPRACHIN, SOA

ନୂତନ ଭବ୍ୟମନ୍ଦିର ନିର୍ମାଣ କରି ଯଜ୍ଞେଶ୍ୱର ମହାଦେବଙ୍କୁ ପୁନଃସ୍ଥାପନ କରିଛନ୍ତି। ମା' ଘାଟମଂଗଳାଙ୍କ ମନ୍ଦିର ମଧ୍ୟ ନୂତନ ଭାବେ ବାବାଙ୍କ ସମୟରେ ନିର୍ମିତ ହୋଇଛି; ଯାହା କି ବଳି ଉତ୍ସର୍ଗ ମାହାସୁଲ, ମଂଗଳାଓଷାରୁ ଆୟ, ବଦାନ୍ୟ ବ୍ୟକ୍ତିଙ୍କ ଦାନରୁ ସମ୍ଭବ ହୋଇଛି। ଶ୍ରୀ ଯଜ୍ଞେଶ୍ୱର ମହାଦେବ ମନ୍ଦିର ସଂଲଗ୍ନରେ ମା' ପାର୍ବତୀ (ଭାଲୁଶୁଣୀ)ଙ୍କୁ ମଧ୍ୟ ସ୍ଥାପନା କରିଛନ୍ତି। ଗ୍ରାମରେ ଥିବା ୧୧/ ୧୨ଟି ପ୍ରମୁଖ ଦେବଦେବୀ ପୀଠ ଓ ଅନୁଷ୍ଠାନରେ 'ବାବା' ମୁଖ୍ୟ ପୁରୋଧା ଥିଲେ। ଶ୍ରମଦାନ, ଅର୍ଥଦାନ ଓ ପ୍ରମୁଖ ତତ୍ତ୍ୱାବଧାରକ ଭାବେ ପ୍ରତିଟି ଅନୁଷ୍ଠାନକୁ ଶିଶୁ ତୁଲ୍ୟ ଗଠନ କରିଥିଲେ।

୨୦୨୨ ମସିହାରେ ଅତ୍ୟଧିକ ଶାରୀରିକ ଅସୁସ୍ଥତା ହେତୁ, ଏକ ବେସରକାରୀ ନର୍ସିଂହୋମ, କଟକରେ ୩-୪ ଦିନ ରହିଥିଲେ। ପରିଶେଷରେ ଡାକ୍ତରମାନଙ୍କ ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ବି ତା- ୧୨/୦୮/୨୦୨୨ରେ ସେ ଚିରନିଦ୍ରାଶାୟୀ ହୋଇଗଲେ। ସେଦିନ ଥାଏ ଶ୍ରୀ ଶ୍ରୀ ମଦନମୋହନ ଜୀଉଙ୍କର ପବିତ୍ର ଝୁଲଣର ଶେଷଦିନ। ଠିକ୍ ସନ୍ଧ୍ୟା ୬ ଘଟିକା ସମୟରେ ମହାପ୍ରଭୁ ସିଂହାସନରୁ ଝୁଲଣ ମଣ୍ଡପକୁ ବିଜେ କରୁଥିବା ସମୟରେ ସେ ମହାନ ଆତ୍ମାଙ୍କୁ ତାଙ୍କ ପାଦପଦ୍ମରେ ବିଲୀନ କରିଦେଲେ। ଭକ୍ତ- ଭଗବାନ ଏକାକାର ହୋଇଗଲେ। ଶେଷ ଜୀବନ ପର୍ଯ୍ୟନ୍ତ ଯେଉଁ ପ୍ରାଣ ଠାକୁରଙ୍କ ସେବା ପୂଜାରେ ନିଜକୁ ନିୟୋଜିତ କରିଥିଲେ, ସେ ବାବାଙ୍କୁ କୋଳେଇ ନେଲେ ଏବଂ ବୋଧହୁଏ ଉଦ୍ଧାର କରିଦେଲେ ଏ ପଙ୍କିଳ, ନଶ୍ୱର ସଂସାରରୁ। ସନ୍ଧ୍ୟାରେ ମର ଶରୀରକୁ କଟକରୁ ମଠକୁ ଅଣାଗଲା। ସଂସ୍କାର କାର୍ଯ୍ୟକୁ ସେଦିନ ରାତ୍ର ବଦଳରେ ପରଦିନକୁ ରଖାଗଲା। କାରଣ ଅନେକ ଶୁଭେଚ୍ଛୁ ଦୂରଦୂରାନ୍ତରୁ ଆସି ଅନ୍ତିମ ଦର୍ଶନ ନିମନ୍ତେ ବ୍ୟାକୁଳ ଥିଲେ। ପରଦିନ ପ୍ରାତଃକାଳରୁ ଏକ ଶବଯାନରେ ଘଣ୍ଟା, ଘଣ୍ଟା, ବାଦ୍ୟ ଓ ମହାପଟୁଆରରେ ତାଙ୍କୁ ସମଗ୍ର ଗ୍ରାମ ପରିକ୍ରମା କରାଗଲା। ଆବାଳବୃଦ୍ଧ ବନିତା ସ୍ତବ୍ଧ ତଥା ଅଶ୍ରୁପୂର୍ଣ୍ଣ ନେତ୍ରରେ ନିଜ ଗ୍ରାମମୁରବି ତଥା ପ୍ରିୟ ମହନ୍ତ ମହାରାଜଙ୍କୁ ଶେଷ ଦର୍ଶନ କରୁଥାନ୍ତି। ତାଙ୍କ ହାତଗଢ଼ା ପ୍ରତିଟି ଅନୁଷ୍ଠାନରେ ଗାଡ଼ି ଟିକିଏ ଅଟକି ଯାଉଥାଏ। ଖଣ୍ଡିତର ଉଚ୍ଚ ବିଦ୍ୟାଳୟ ନିକଟରେ ଗାଡ଼ି- ଅଟକି ଯାଇଥିବାବେଳେ ଛଳଛଳ ଆଖି ସବୁ ଶେଷ ଆଶୀର୍ବାଦ ଗ୍ରହଣ କରୁଥିଲେ ନିଜର ପ୍ରଣମ୍ୟ ଶିକ୍ଷକଙ୍କ ନିକଟରୁ। ମା' ଘାଟମଂଗଳା, ମା' ବାଡ଼ି ମଂଗଳାଙ୍କ



Digitized by PPRACHIN, SOA

ନିକଟରୁ ଆଶୀର୍ବାଦ ପୁଷ୍ପ ମାଧ୍ୟମରେ ତାଙ୍କ ପ୍ରିୟପୁତ୍ରକୁ ମା' କୋଳେଇ ନେଇଥିଲେ। ସେଦିନର ଶବାଧାରରେ ତାଙ୍କୁ ଭଲପାଉଥିବା ଅଗଣିତ ପ୍ରିୟ ଛାତ୍ର, ସହକର୍ମୀ ବୃନ୍ଦ, ଅଭିଭାବକ, ସେ ଜଡ଼ିତ ଥିବା ସତ୍ୟସାଇ ଅନୁଷ୍ଠାନର ସଦସ୍ୟ ବୃନ୍ଦ, ପରିବାର, ଗ୍ରାମବାସୀଙ୍କ ସଜଳ ଚକ୍ଷୁ ହିଁ କହୁଥାଏ ଯେ, ଏ ଅଂଚଳର ଦୀପଟିଏ ଲିଭିଗଲା। ଯେହେତୁ ସେ ମହନ୍ତ ଥିଲେ, ତେଣୁ ସାଧୁ ପରମ୍ପରା ଅନୁଯାୟୀ ତାଙ୍କର ମରଶରୀରକୁ ମଠ ମଧ୍ୟସ୍ଥ ସମାଧିସ୍ଥ କରାଗଲା। ଏହା ପରେ ତା- ୨୬/୦୮/୨୦୨୨ ରିଖ ପର୍ଯ୍ୟନ୍ତ ପଞ୍ଚଦଶୀ ମହୋତ୍ସବ ଅଖଣ୍ଡ ନାମଯଜ୍ଞ, ଗୀତାଯଜ୍ଞ, ସାଧୁ ସମ୍ମିଳନୀ, ସ୍ମୃତି ଶ୍ରଦ୍ଧାଞ୍ଜଳି ସଭା, ପ୍ରସାଦ ସେବନ ଇତ୍ୟାଦି ଦ୍ୱାରା ସମାହିତ ହୋଇଥିଲା।

ପରିଶେଷରେ ଏତିକି କହିବି, ପ୍ରାଣୀ ମାତ୍ରେକେ ଜରା, ବ୍ୟାଧି, ମୃତ୍ୟୁ ରୂପକ ଯନ୍ତ୍ରଣା ରହିଛି। କିନ୍ତୁ ଏସବୁକୁ ସହ୍ୟ କରି ଏହାଠାରୁ ଊର୍ଦ୍ଧ୍ୱରେ ରହିଥିବା ଜଣେ ଦେବତୁଲ୍ୟ ବ୍ୟକ୍ତିତ୍ୱ ଭାବେ 'ବାବା' ଆମକୁ ଛାଡ଼ି ଚାଲିଯାଇଛନ୍ତି; ଏହା ଅସହ୍ୟ। ଆପଣଙ୍କ ଚରଣକମଳରେ ଅନନ୍ତକୋଟି ଦଣ୍ଡବତ ଜଣାଉଛି ଏ ଅଧମ। ଆମମାନଙ୍କ ଦ୍ୱାରା କରାଯାଇଥିବା ଧୃଷ୍ଟତାକୁ ମାର୍ଜନା କରିବେ, ଆପଣଙ୍କ କୃପାରୂପକ ସର୍ମଜନୀ ଦ୍ୱାରା ॥

*ବଡ଼ଜ୍ୱାଇଁ(ଜିତୁ)*
*ବାରବାଟୀ*







Digitized by PPRACHIN, SOA

# ମୋ' ମାନସପଟରେ ବାବା

ରାଜଶ୍ରୀ ଭାରତୀ



ପିତା ଧର୍ମ ପିତା ସ୍ୱର୍ଗ ପିତା ହିଁ ପରମ ତପ,
ପିତରି ପ୍ରୀତିମା ପନ୍ନେ ପ୍ରିୟନ୍ତେ ସର୍ବଦେବତା ।

ବାପା ଏକ ଏମିତି ଶବ୍ଦ ଯାହାକି ଆମର ପ୍ରତି ସମସ୍ୟାର ସମାଧାନର ମୂଳମନ୍ତ୍ର । ସେ ଆମର ସବୁ ଅଳିଅର୍ଦ୍ଦଳି ସହି ଆମକୁ କୋଳେଇ ଥାଆନ୍ତି । ଯେତେ ଦୁଃଖ କଷ୍ଟ ଥିଲେ ମଧ୍ୟ ସେ କାହା ଆଗରେ ନିଜର ଦୁଃଖ ପ୍ରକାଶ କରନ୍ତି ନାହିଁ । ସବୁ ଦୁଃଖକୁ ନିଜ ଛାତି ଭିତରେ ଚାପି ଧରନ୍ତି ଏବଂ ନିଜ ପିଲାମାନଙ୍କ ମୁହଁରେ ସେ ହସ ଫୁଟାନ୍ତି । ସେଥିମଧ୍ୟରୁ ମୋ' ବାବା ଶ୍ରୀଯୁକ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ । ସେ ଥିଲେ ଅନ୍ୟତମ । ଏହା ମୋର ସୌଭାଗ୍ୟ ଯେ, ମୁଁ ମହନ୍ତ ପରିବାରରେ ତାଙ୍କ ସାନ ଝିଅ ରୂପେ ଜନ୍ମଗ୍ରହଣ କରିଛି । ସେ ଜଣେ ପିତାଙ୍କର କର୍ତ୍ତବ୍ୟ ପାନଳ କରିବା ସହ ଜଣେ ଆଦର୍ଶ ଏବଂ ପ୍ରଖ୍ୟାତ ବ୍ୟକ୍ତି ଥିଲେ । ସେ ଏକାଧାରରେ ଜଣେ ଶିକ୍ଷକ ଏବଂ ଖଣ୍ଡିତର ଗ୍ରାମର ଶ୍ରୀ ଶ୍ରୀ ମଦନମୋହନ ମଠର ମହନ୍ତ ରୂପେ କାର୍ଯ୍ୟଭାର ଗ୍ରହଣ କରିଥିଲେ ଏବଂ ନିଜକୁ ସଂପୂର୍ଣ୍ଣ ରୂପେ ଅର୍ପଣ କରି ସର୍ବଦା ସେବା କାର୍ଯ୍ୟରେ ରତ ଥିଲେ । ସେ କ୍ଷେତ୍ରପାଳ ଉଚ୍ଚବିଦ୍ୟାଳୟରେ ନିଜର ପ୍ରଧାନ ଶିକ୍ଷକତା ଆରମ୍ଭ କରିଥିଲେ ଏବଂ ଖଣ୍ଡିତର ଉଚ୍ଚ ବିଦ୍ୟାଳୟରେ ଅବସର ପ୍ରାପ୍ତ ହୋଇଥିଲେ । ନିଜର ଚାକିରି ଜୀବନରେ ମଧ୍ୟ ସେ ବହୁତ ପ୍ରତିଷ୍ଠିତ ହୋଇଥିଲେ ଏବଂ ଅନେକ ପୁରସ୍କାର ଏବଂ ମାନପତ୍ର ଦ୍ୱାରା ସମ୍ମାନର ଅଧିକାରୀ ହୋଇଥିଲେ । ଶିକ୍ଷକତା କାର୍ଯ୍ୟରୁ ଅବସର ନେବାପରେ ସେ ସଂପୂର୍ଣ୍ଣ ସମୟ ଈଶ୍ୱରଙ୍କ ସେବାରେ ଅତିବାହିତ କରୁଥିଲେ । ତାଙ୍କ ସମୟରେ ଖଣ୍ଡିତର ଶ୍ରୀମଦନମୋହନ ମଠରେ ପ୍ରତି ମାସ ପୂର୍ଣ୍ଣିମାରେ ଗୀତା ପାରାୟଣର ଆୟୋଜନ, ଝୁଲଣଯାତ୍ରା, ହୋଲି ଉତ୍ସବ, ଗଣେଶ ପୂଜା, ସରସ୍ୱତୀ ପୂଜା,



Digitized by PPRACHIN, SOA

ଦୁର୍ଗାପୂଜା ଇତ୍ୟାଦି ପାଳିତ ହେଉଥିଲା । ମଠର ପରିସରରେ ଥିବା କୋଠରିଗୁଡ଼ିକର ପୁନରୁଦ୍ଧାର, ମଦନମୋହନଙ୍କ ମନ୍ଦିରର କାରୁକାର୍ଯ୍ୟ, ଆଗନ୍ତୁକମାନଙ୍କ ନିମନ୍ତେ ନୀତିବାଣୀ ଏବଂ ଶ୍ରୀକୃଷ୍ଣ, ଅର୍ଜୁନଙ୍କୁ ରଣଭୂମିରେ ଉପଦେଶ ଦେଉଥିବାର ଚିତ୍ରପଟ୍ଟ ଆଦି ସଜ୍ଜିତ କରି ଏକ କକ୍ଷ ନିର୍ମାଣ ଆଦି ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟ ସେ କରିଯାଇଛନ୍ତି । ଯାହାକି ଭବିଷ୍ୟତରେ ମଠକୁ ପ୍ରବେଶ କରୁଥିବା ଭକ୍ତମାନଙ୍କୁ ଆଧ୍ୟାତ୍ମିକ ପରିବେଶରେ ଲୀନ ରହିବାରେ ସହାୟକ ହେବ । ଗ୍ରାମର ତଥା ଅନ୍ୟାନ୍ୟ ଗ୍ରାମର ଅନେକ ଲୋକ ତାଙ୍କ ନିକଟକୁ ସମସ୍ୟାର ସମାଧାନ ନିମନ୍ତେ ଆସନ୍ତି । ସେ ମଧ୍ୟ ନିଜର ହସହସ ଆନନ୍ଦଭରା ମୁଖରେ ଦେଉଥିବା ଉପଦେଶ ଦ୍ୱାରା ବହୁ ଲୋକଙ୍କୁ ଶ୍ରୀମଦ୍ ଭଗବତ୍ ଗୀତା ଅଧ୍ୟୟନ କରିବାକୁ ଉତ୍ସାହିତ କରୁଥିଲେ ।

ସେ ସର୍ବଦା ଇଚ୍ଛାପ୍ରକାଶ କରନ୍ତି ଯେ, ମଠରେ ବହୁତ ପୂଜା ପାର୍ବଣ ହେଉ ଏବଂ ଅନେକ ଲୋକ ଆସି ଏଠାରେ ଉପସ୍ଥିତ ରୁହନ୍ତୁ । ଆନନ୍ଦରେ ଭଜନକୀର୍ତ୍ତନ କରି ପ୍ରସାଦ ସେବନ କରନ୍ତୁ । ସେଥିରେ ସେ ଅପାର ଆନନ୍ଦଲାଭ କରନ୍ତି । ମଠରେ ଅନୁଷ୍ଠିତ ହେଉଥିବା ପର୍ବଗୁଡ଼ିକ ମଧ୍ୟରୁ ଝୁଲଣ ଯାତ୍ରା ପର୍ବ ଅନ୍ୟତମ । ଏହି ପର୍ବ ସବୁଠାରୁ ନିଆରା । କାରଣ ଏହି ପର୍ବରେ ଶ୍ରୀ ଶ୍ରୀ ମଦନମୋହନ ଜୀଉ ବିଭିନ୍ନ ବେଶରେ ସୁସଜ୍ଜିତ ଦୋଳିରେ ଭକ୍ତମାନଙ୍କୁ ଦର୍ଶନ ଦିଅନ୍ତି । ଭଜନ, କୀର୍ତ୍ତନ ହୁଏ । ଏହା ପାଂଚଦିନ ଧରି ପାଳନ ହୋଇଥାଏ ଏବଂ ରାକ୍ଷୀପୂର୍ଣ୍ଣିମା ଦିନ ଶେଷ ହୋଇଥାଏ । ପ୍ରତ୍ୟେକ ବର୍ଷ ଖୁବ୍ ଆନନ୍ଦ ଏବଂ କୋଳାହଳମୟ ପରିବେଶରେ ଉକ୍ତ ପର୍ବଟି ପାଳିତ ହୁଏ । ମାତ୍ର ୨୦୨୨ ମସିହା ଝୁଲଣ ଯାତ୍ରାରେ ଆନନ୍ଦ ଉଲ୍ଲାସ ବଦଳରେ ଦୁଃଖର ଛାୟା ଘୋଟିଗଲା । କାରଣ ଏହି ଝୁଲଣ ପୂର୍ଣ୍ଣିମା ସଂଧ୍ୟା ୬ ଘଟିକା ସମୟରେ ମୋ' ବାପା ଶ୍ରୀ ଶିଶିର କୁମାର ଭାରତୀ ଗୋସ୍ୱାମୀ ହୃଦ୍‌ଘାତରେ ପୀଡ଼ିତ ହୋଇ ହଠାତ୍ ଆମକୁ ଶୋକ ସାଗରରେ ଭସାଇ ବ୍ରହ୍ମଲୀନ ହୋଇଗଲେ । ତାଙ୍କର ବହୁତ ଇଚ୍ଛା ଥିଲା ଯେ ସେ ଝୁଲଣ ପୂର୍ଣ୍ଣିମାରେ ମୃତ୍ୟୁବରଣ କରିବେ ଏବଂ ତାଙ୍କର ଏହି ଇଚ୍ଛାକୁ ଭଗବାନ ପୂରଣ କରିଦେଲେ । କିନ୍ତୁ ଆମମାନଙ୍କ ମନରେ ଗଭୀର ଦୁଃଖ ଦେଇ ଚାଲିଗଲେ ।

ଆଜି ପର୍ଯ୍ୟନ୍ତ ମୋର ବିଶ୍ୱାସ ହେଉ ନାହିଁ ଯେ ସେ ଆମ ଗହଣରେ ନାହାଁନ୍ତି ବୋଲି । ଏପରି ଅନୁଭୂତି ହୁଏ ଯେମିତି ସେ ଆମ ପାଖେ ପାଖେ ଅଛନ୍ତି



Digitized by PPRACHIN, SOA

ଏବଂ ଆମ ଚାରିପଟେ ବୁଲୁଛନ୍ତି। ସେ ଆମ ଭଲ, ମନ୍ଦ, ସୁଖଦୁଃଖ ସବୁ ଜାଣୁଛନ୍ତି। ତାଙ୍କର ମୃତ୍ୟୁର ବହୁତ ନିକଟରୁ ମୁଁ ତାଙ୍କୁ ଦେଖିଛି। ଆଜି ସେହି ଦିନ କଥା ମନେ ପଡ଼ିଗଲା ବେଳକୁ ମୋର ଛାତିର କୋହ ଏବଂ ଆଖିର ଲୁହକୁ ମୁଁ ସମ୍ଭାଳି ପାରୁନାହିଁ। ଯେଉଁ ଦିନ ସେ ମୃତ୍ୟୁବରଣ କଲେ ସେହିଦିନ ମୁଁ, ମୋର ସ୍ୱାମୀ ପ୍ରଭାତ ସାବତ, ପୁତ୍ର ପ୍ରିୟାଂଶୁ ପ୍ରିୟଦର୍ଶୀ ସାବତ (ପ୍ରିନ୍‌ସ) ତାଙ୍କ ନିକଟକୁ ଡାକ୍ତରଖାନାକୁ ଯାଇଥିଲୁ। ମୁଁ ଯେମିତି ସେଠାରେ ପହଂଚିଲି ଦେଖିଲି ବାବାଙ୍କ ଦେହ ବହୁତ ଖରାପ ହୋଇଯାଇଥିଲା ଏବଂ ସେ ଯନ୍ତ୍ରଣା ପାଉଥିଲେ। କିନ୍ତୁ ଯନ୍ତ୍ରଣା ଯେପରି ତାଙ୍କ ନିକଟରେ ହାର୍ ମାନୁଥାଏ ଏହିପରି ଲାଗୁଥିଲା। କାରଣ ଠାକୁରେ ତାଙ୍କୁ କିଛି କଷ୍ଟ ଭୋଗ କରିବାକୁ ଦେଉନଥିଲେ। ତାଙ୍କ ଶରୀର ପୂରା ଫୁଲି ଯାଇଥିଲା। ଗୋଡ଼ ଘା' ହୋଇଥିବାରୁ ବ୍ୟାଣ୍ଡେଜ ହୋଇଥିଲା। ସେ ଉଠି ପାରୁନଥିଲେ। ତାଙ୍କୁ ଧରି ଧରି ବହୁ କଷ୍ଟରେ ଉଠାଯାଉଥିଲା। ମୁଁ ସେହି ଦିନସାରା ତାଙ୍କ ଚରଣ ତଳେ ରହି ତାଙ୍କ ପଦସେବା କଲି ଏବଂ ତାଙ୍କ ମଥାକୁ ଆଉଁଶି ଦେଉଥିଲି। ମୋ' ପୁଅ ମଧ୍ୟ ତାହା କରୁଥିଲା। ସେ ସେହିଠାରେ ଶୋଇ ମୋ' ପୁଅର ମଥାରେ ହାତ ରଖି ଆଶୀର୍ବାଦ କରିଥିଲେ। କଥା ସିନା କହିପାରୁନଥିଲେ କିନ୍ତୁ ଆମ ପ୍ରତି ଥିବା ତାଙ୍କ ଭଲପାଇବା ସ୍ପଷ୍ଟ ଅନୁଭୂତ ହେଉଥିଲା। ଏହାପରେ ମୁଁ ତାଙ୍କୁ ରୁଟି, କ୍ଷୀର ଚାମଚରେ ଖୁଆଇ ଦେଲି ଏବଂ ପାଣି ପିଆଇ ଦେଲି। ଏହା ମୋର ଶେଷ ଖୁଆଇବା ଥିଲା ବୋଲି ମୁଁ ଜାଣିନଥିଲି। ସେ କଥା ଭାବିଲେ ଚକ୍ଷୁ ଲୋତକପୂର୍ଣ୍ଣ ହୋଇଯାଏ। ତା'ପରେ ହଠାତ୍ ଡାକ୍ତର ଆସି ଦେଖିଲେ ଏବଂ କହିଲେ ଡାଇଲିସିସ୍ ପାଇଁ ତାଙ୍କୁ ଅନ୍ୟତ୍ର ନିଆଯିବ। ତା'ପରେ ଆମେ ବାବାଙ୍କୁ ଟେକି ଟେକି ଆମ୍ବୁଲାନ୍ସକୁ ଆଣିଲୁ। ଆମ୍ବୁଲାନ୍ସ ଭିତରେ ପୂରାଇ ଦେଲୁ। ତା'ପରେ ମୁଁ ଏବଂ ଅନ୍ୟମାନେ ତାଙ୍କ ପାଖରେ ବସିଥିଲୁ। ଭିତରେ ସେ ସମସ୍ତଙ୍କୁ ଚାହୁଁଥିଲେ। ଏପରି ଲାଗୁଥିଲା ସେ ଯେମିତି ସମସ୍ତଙ୍କୁ ଶେଷଥର ପାଇଁ ମନ ପୂରାଇ ଦେଖୁଛନ୍ତି। ସେହି ସମୟରେ ସେ ମୋତେ ଠାରିକି ପଚାରିଲେ, "ଆମେ କୁଆଡ଼େ ଯାଉଛନ୍ତି ?" ଏଇଟା କେଉଁ ଜାଗା। ମୁଁ କୋହଭରା କଣ୍ଠରେ କହିଲି ବାବା ଆମେ ଆଉ ଏକ ଚିକିତ୍ସାଳୟକୁ ଯାଉଛନ୍ତି। ତୁମର ଉତ୍ତମ ଚିକିତ୍ସା ପାଇଁ। ତା'ପରେ ସେ ପୁଣି ଚାରିଆଡ଼କୁ ଚାହିଁଲେ। ଆଜି ବି ତାଙ୍କ ଶେଷ ମୁଖ ମୋ' ଆଖିରେ ନାଚି ଉଠୁଛି। ତା'ପରେ ତାଙ୍କୁ ଟେକି ନେଇ ବେଡ୍ ଉପରେ ଶୁଆଇଲେ। ସେ ସମୟରେ ମଧ୍ୟ



Digitized by PPRACHIN, SOA

ତାଙ୍କୁ ଟିକେ ବି କଷ୍ଟ ଅନୁଭବ ହେଉନଥାଏ। ସେ ଖାଲି ଚାରିଆଡ଼କୁ ଚାହୁଁଥିଲେ। ହଠାତ୍ ତାଙ୍କର ବ୍ଲଡ଼୍‌ପ୍ରେସର୍ ବଢ଼ିଗଲା ଏବଂ ତାଙ୍କୁ ଆଇ.ସି.ୟୁ ମଧ୍ୟକୁ ନିଆଗଲା। ସେହି ଆଇ.ସି.ୟୁରେ ସେ ହୃଦ୍‌ଘାତରେ ଶେଷ ନିଃଶ୍ୱାସ ତ୍ୟାଗ କଲେ। ଏହା ହିଁ ଥିଲା ତାଙ୍କ ସହ ମୋର ଶେଷ ସାକ୍ଷାତ୍।

ସେଦିନର ଏସବୁ ଘଟଣା ଭାବିଲାବେଳକୁ ମୋର ଛାତି ଥରି ଉଠୁଛି ଏବଂ ମୁଁ ଦୁଃଖରେ ମର୍ମାହତ। ମୁଁ ସାନ ଝିଅ ବୋଲି ସେ ମୋତେ ବହୁତ ଭଲପାଆନ୍ତି। ହୁଏତ ତାଙ୍କ ଭଳି ବାବା ମୁଁ ଆଉ କେଉଁ ଜନ୍ମରେ ପାଇବି ନାହିଁ। ତାଙ୍କ ପରି ସତ୍‌ପୁରୁଷ ଆଉ ଏହି ଧରାପୃଷ୍ଠରେ ଜନ୍ମ ହେବେ କି ନାହିଁ। ଶେଷରେ ଠାକୁରଙ୍କ ନିକଟରେ ମୋର ଏତିକି ପ୍ରାର୍ଥନା, ସେ ଯେଉଁଠି ବି ଥାଆନ୍ତୁ ଆମକୁ ଆଶୀର୍ବାଦ କରୁଥାଆନ୍ତୁ ଏବଂ ତାଙ୍କ ଆତ୍ମାର ସଦ୍‌ଗତି ଲାଭ ହେଉ। ଏହିଠାରୁ ତାଙ୍କୁ ମୋର କୋଟିକୋଟି ପ୍ରଣାମ।

*ସାନଝିଅ*
*ସୁକିନ୍ଦା*







Digitized by PPRACHIN, SOA

# ବାବା ତୁମେ କେତେ ମହାନ



ଶୁଭଶ୍ରୀ ଭାରତୀ

ବାବା ତୁମ ପାଇଁ କହୁଚି ଆଜି ମୁଁ ହୃଦୟର କିଛି କଥା। ହାତ ଯୋଡ଼ି କରୁଛି ମୁଁ ପ୍ରଣାମ। ତୁମରି ତ୍ୟାଗର ତୁମ ବଳିଦାନର ଯେପରି ମୁଁ ରଖିପାରେ ମାନ। ବାବା ତୁମେ ମୋ' ହୃଦୟ ମନ୍ଦିରର ଚଳନ୍ତି ଦେବତା। ଏମିତି ଦିନଟିଏ ଆସିବ ବାବା ଆମକୁ ଛାଡ଼ି ଚାଲିଯିବେ ଆଉ କେବେ ଫେରିବେ ନାହିଁ, ଏ କଥା ଭାବିଲା ବେଳକୁ ଆଖିର ଲୁହକୁ ଅଟକାଇ ହେଉନି। ଯାହା ଦିନେ ସତ ଥିଲା ତାହା ଆଜି 'ସ୍ମୃତି' ଭଳି ଲାଗୁଛି। ବାବାଙ୍କ ଭଳି ସ୍ନେହୀ ପରୋପକାରୀ ଦରଦୀ ମଣିଷଟିକୁ କାହିଁକି ଯେ ଈଶ୍ୱର ତାଙ୍କ ପାଖକୁ ନେଇଗଲେ। ଯେତେ ଭୁଲିବାକୁ ଚାହିଁଲେ ବି ସବୁବେଳେ ମନେପଡୁଛି। ତାଙ୍କର ଭଲପାଇବା, ଉପଦେଶ ଦେବା, ଶାସନ କରିବାର କଥା ସବୁ। ସେ ଥିଲେ ଜଣେ ଆଦର୍ଶ ଶିକ୍ଷକ। ପ୍ରତି କ୍ଷେତ୍ରରେ ଆମକୁ ବୁଝାଉଥିଲେ ଶିକ୍ଷାର ମହତ୍ୱ। ବିଦ୍ୟା ହିଁ ଅମୂଲ୍ୟ ସଂପଦ ବୋଲି ଅନେକ ଉପଦେଶ ଦେଉଥିଲେ। ସାରା ଜୀବନ ଈଶ୍ୱରଙ୍କ ପାଦ ତଳେ ନିଜକୁ ସମର୍ପିତ କରି ମଠ ମନ୍ଦିର ପାଇଁ ଅନେକ ମହାନ କର୍ମ କରିଯାଇଛନ୍ତି। ଦୁଃଖୀ ଦରିଦ୍ର ଅସହାୟମାନଙ୍କ ପାଇଁ ତାଙ୍କର ଦାନ ଅତୁଳନୀୟ।

କ୍ଷଣଭଙ୍ଗୁର ସଂସାରରେ କେହି ରହି ନାହିଁ କି ରହିବ ନାହିଁ, ତୁମ ଆଶିଷ ଥିବା ଯାଏ କେବେ ନଇଁବନି ମୋର ମଥା। ତୁମ ପରିଚୟ ପାଇଁ ଆଜି ମୁଁ ସବୁଠି ବିଜୟ। "ତୁମେ ସେହି ରାସ୍ତାରେ ଚାଲ ଯେଉଁ ରାସ୍ତାରେ କଷ୍ଟ ଆଉ ପଛେ ଥାଏ କିନ୍ତୁ ନ୍ୟାୟ ଆଉ ନ୍ୟାୟ।" ତୁମେ ଥିଲାବେଳେ ପାଦ କେବେ ହୋଇ ନ ଥିଲା ଟଳମଳ। ତୁମେ ଥିଲା ବେଳେ ମିଳିଥିଲା ମୋତେ ହଜାର ହସ୍ତୀର ବଳ। ବାବା ତୁମେ ପରା ସେହି ମଣିଷ, ଆମର ଟିକିଏ ସୁଖ ପାଇଁ ଭୁଲିଯାଅ ଭୋକ ଆଉ ଶୋଷ। କେମିତି ଭୁଲିଯିବି ତୁମର ସେହି ପରିଶ୍ରମ, ଆମରି ଖୁସି ପାଇଁ କର ତମେ କେତେ କଠୋର କାମ। ତୁମେ ଆମକୁ କେତେ ଭଲପାଅ କେବେ ଜାଣିବାକୁ ଦିଅନି କିନ୍ତୁ ଆମ ବିନା ଗୋଟେ ମୁହୂର୍ତ୍ତ ରହିପାରନି। ବାବା ସତରେ ତୁମେ କେତେ ମହାନ। ତୁମର ସ୍ମୃତି ଚିର ଅମଳିନ। ବାବା ଆମମାନଙ୍କ ହୃଦୟରୁ କେବେ ବି ଲିଭି ଯିବେନି। ଚିର ଅପାସୋରା ମଣିଷଟିଏ ସେ। ତାଙ୍କର ସ୍ନେହ ଆଶୀର୍ବାଦ ଆମ ଚଲାପଥର ପାଥେୟ।



ଝିଅ (ଶୁବି)



Digitized by PPRACHIN, SOA

# ସେହି ସ୍ମୃତିରୁ ପଦେ



**ଜୟନ୍ତୀ ଆରଣ**

ଠିକ୍ ଆଜକୁ ୧ ବର୍ଷ ବା ୩୬୫ ଦିନ ହୋଇଗଲା । ସେଦିନ ଥିଲା ରାକ୍ଷୀ ପୂର୍ଣ୍ଣିମା, ଯାହାକି ଭଉଣୀମାନେ ଭାଇମାନଙ୍କର ଦୀର୍ଘାୟୁ କାମନା କରି ଭାଇ ହାତରେ ରାକ୍ଷୀ ବାନ୍ଧି ଦିଅନ୍ତି । ସେଦିନ କିନ୍ତୁ ସେ ଦିନଟି ମୋ' ପାଇଁ ଏକ ଦୁଃଖର ଦିନ ଥିଲା । ଆଜି ସେ ଦିନର କଥା ମନେପଡ଼ିଲେ ଆଖିରେ ଆଖିଏ ଲୁହ ଭରିଯାଏ । ଠିକ୍ ସେହିଦିନ ସକାଳେ ମୁଁ ମୋର ଜଣେ ପଡ଼ୋଶୀ ଯାଆଙ୍କ ପାଖରୁ ଶୁଣିଲି ଯେ ଭାଇଙ୍କ ଦେହ ଅତ୍ୟନ୍ତ ଅସୁସ୍ଥ ହେବାରୁ କଟକ ବଡ଼ ମେଡ଼ିକାଲ ଯାଇଛନ୍ତି । ଶୁଣିକି ମୁଁ ସ୍ଥିର ହୋଇ ରହିପାରିଲି ନାହିଁ । ନାନୀଙ୍କ ପାଖକୁ ଫୋନ୍ କଲି । ଭାଇ ମେଡ଼ିକାଲ ଗଲେ ମୋତେ କାଇଁ ଜଣାଇଲୁ ନାହିଁ । ସେ ଉତ୍ତର ଦେଲା- ହଠାତ୍ ତାଙ୍କ ଦେହ ଖରାପ ହୋଇଗଲା । ମୁଁ କହିଲି, ମୁଁ ବର୍ତ୍ତମାନ ଯାଉଛି । କିନ୍ତୁ ନାନୀ ମୋତେ ମନା କଲା । ସେ କହିଲା- ସେ ମେଡ଼ିକାଲରୁ ଘରକୁ ଆସନ୍ତୁ ତୁ ଆସିବୁ । କିନ୍ତୁ ସେ ଯିବାଟା ତାଙ୍କର ଅଣଲେଉଟା ଥିଲା ବୋଲି ମୁଁ ଜାଣିପାରିଲି ନାହିଁ । ରାତି ୭ଟାରେ ଯେତେବେଳେ ଖବର ପାଇଲି ଶିଶିର ଭାଇ ଆଉ ନାହାଁନ୍ତି ଠିକ୍ କି ଭୁଲ ମୁଁ ଭାବି ପାରିଲି ନାହିଁ । ତାଙ୍କ ଘରକୁ ଫୋନ୍ କରି ପାରିଲି ନାହିଁ । ଅନ୍ୟାନ୍ୟ ସଂପର୍କୀୟଙ୍କୁ ଫୋନ୍ କରି ଠିକ୍ କଥା ମଧ୍ୟ ପାଇଲି ନାହିଁ । ସମସ୍ତେ ଆଶ୍ଚର୍ଯ୍ୟ ହୋଇ କହିଲେ ନା ଏଟା ଭୁଲ୍ । ଯାହା ହେଉ ସଠିକ୍ ଖବର କିଛି ସମୟ ପରେ ପାଇଲୁ । ଏତେ ମର୍ମାହତ ହୋଇ ପଡ଼ିଲି ଯେ, ଶେଷ ଦର୍ଶନ ତାଙ୍କର ମୁଁ କରିପାରିଲି ନାହିଁ କି ତାଙ୍କ ସହ କଥା ପଦେ ମଧ୍ୟ ହୋଇପାରିଲି ନାହିଁ ।

ମୋର ନିଜର ଭାଇ ନଥିଲେ ମଧ୍ୟ ସେ ମୋତେ ଭାଇର ଅନୁପସ୍ଥିତି ଅନୁଭବ କରାଇ ଦେଇନଥିଲେ । ନିଜର ସାନ ଭଉଣୀ ପରି ଦେଖନ୍ତି । ପ୍ରତ୍ୟେକ ବାର, ବ୍ରତ, ପୂନେଇଁ ପରବରେ ମୁଁ ତାଙ୍କ ପାଖରେ ଥାଏ । ସେ ମୋ' ପୁଅକୁ



Digitized by PPRACHIN, SOA

ଖୁବ୍ ଭଲ ପାଆନ୍ତି। କେଉଁ ଧାରାରେ ପଢ଼ିବ, କେଉଁ କଲେଜରେ ପଢ଼ିବ, କେଉଁ ହଷ୍ଟେଲରେ ରହିବ ମତେ ସେ ପରାମର୍ଶ ଦେଉଥିଲେ। ମୋ' ପୁଅ ଯେତେବେଳେ ଚାକିରି କଲା ପ୍ରଥମ ଖୁସି ହୋଇଥିଲେ ସେ। ମୋ' ପୁଅର ବାହାଘର ଠିକ୍ ହେଲାପରେ ମୁଁ ତାଙ୍କ ପାଖକୁ ଫଟୋ ପଠାଇଥିଲି। ସେ ମୋତେ ଖୁସି ହୋଇ କହିଥିଲେ, ଟିକିନା ମୋର ଦେହ ଭଲ ରହୁନି। ଯାହା ହେଉ ତୋ' ପୁଅ ବାହା ଘରକୁ ଆମ ସମସ୍ତ ପରିବାରଙ୍କୁ ଧରି ତୋ' ଘରେ ମୁଁ ଯାଇ ପହଞ୍ଚିବି। ପୁଅ ବୋହୂଙ୍କୁ ଆଶୀର୍ବାଦ କରି ଆସିବି। କିନ୍ତୁ ତାଙ୍କ ଆଶା ଆଶାରେ ରହିଗଲା। ପୁଅ ବାହାଘର ପୂର୍ବରୁ ସେ ଚାଲିଗଲେ। ସେହିପରି ଜଣେ ସୁ-ମଣିଷ ଓ ପରାମର୍ଶଦାତାଙ୍କୁ ମୁଁ ହରାଇଲି। ତାଙ୍କ ଆଶୀର୍ବାଦରେ ମୁଁ ଭଲରେ ଅଛି। କିନ୍ତୁ ତାଙ୍କର ସେହି କେଇ ପଦ କଥା ସ୍ମରଣିକାରେ ସ୍ଥାନ ପାଉ। ସେପରି ଦେବତୁଲ୍ୟ ଲୋକଙ୍କୁ ଈଶ୍ୱର ତାଙ୍କ ପାଖକୁ ନେଇ ଯାଆନ୍ତି, ତାଙ୍କୁ ମଧ୍ୟ ନେଇଗଲେ। ଈଶ୍ୱରଙ୍କ ପାଖରେ ତାଙ୍କ ଆତ୍ମାର ସଦ୍‌ଗତି କାମନା କରୁଛି।

*ଖଡ଼ିମାହାରା*







Digitized by PPRACHIN, SOA

# କିଛି ସ୍ମୃତି କିଛି ଅନୁଭୂତି

ଆରତୀ ପ୍ରଭା ଭାରତୀ

ସେ ଥିଲେ ଖୁବ୍ ସରଳ, ଶାନ୍ତ, ଧୀର, ନମ୍ର ସାଧୁ ପ୍ରକୃତିର ବ୍ୟକ୍ତି । ସେ ସମସ୍ତଙ୍କୁ ଶ୍ରଦ୍ଧା, ସ୍ନେହ ଓ ସମ୍ମାନ କରୁଥିଲେ । ତାଙ୍କ ବ୍ୟବହାର, ଚଳଣି, ଆତ୍ମୀୟତା କଥାବାର୍ତ୍ତାରେ ଗ୍ରାମ ତଥା ଏ ଅଂଚଳର ଲୋକମାନେ, ତାଙ୍କୁ ବହୁତ ଭଲପାଉଥିଲେ । ତାଙ୍କର ଜନ୍ମ ୧୦.୦୫.୧୯୫୨ ତାରିଖ ଦିନ ଖଣ୍ଡିତର ଗ୍ରାମରେ । ୧୯୮୨ ମସିହାରେ ମୋର ବିବାହ ହୋଇଥିଲା, ବଡ଼ ଭାଇଙ୍କର ସାନ ଭାଇଙ୍କ ସହିତ । ମୁଁ ତାଙ୍କ ଘରକୁ ଆସିଲା ପରେ, ଦେଖେ ବଡ଼ ଭାଇ ସାଇକେଲ ନେଇ କୋଳଥଳ ଯାଉଛନ୍ତି ହାଇସ୍କୁଲକୁ । ବୋଧହୁଏ ୧୯୭୭ ମସିହାରେ କୋଳଥଳ ହାଇସ୍କୁଲରେ ଥିଲେ । ଶାଶୁ, ଶଶୁର ବଡ଼ଭାଇ ମୋର ଯା' ବାସନ୍ତି ଭାରତୀ ଏହି ହେଲା ଆମର ସଂସାର । ବଡ଼ଭାଇଙ୍କର ସାନ ଭାଇ ଭୁବନେଶ୍ୱର କମ୍ପାନୀରେ ରହୁଥିଲେ । ସକାଳର ନିତ୍ୟକର୍ମ ପରେ ରୋଷେଇ କରି ତରତର ହୋଇ ବଡ଼ଭାଇଙ୍କୁ ଖାଇବାକୁ ଦେଉଥିଲି । ଭାଇ ତାହା ଆନନ୍ଦରେ ଗ୍ରହଣ କରି ସ୍କୁଲକୁ ଯାଉଥିଲେ । ୪ଟାରେ ସ୍କୁଲରୁ ଆସି ସ୍କୁଲ କଥା କହି ହସି ହସି ବେଦମ । ଏହି ହେଲା ବଡ଼ ଭାଇଙ୍କର ନିତିଦିନିଆ କାର୍ଯ୍ୟ । ମୁଁ ଆମ ଘରକୁ ଗଲେ ବଡ଼ଭାଇ କହିବେ ବେଶି ଦିନ ରହିବ ନାହିଁ, ଘର ଭର ଲାଗିବ ନାହିଁ । ଏହିପରି ଭାବରେ ମୋର ବଡ଼ ଭାଇଙ୍କ ସହିତ ଆତ୍ମୀୟତା ରହିଥିଲା । କେବଳ ବଡ଼ଭାଇ କୌଣସି କଥାରେ ଦୁଃଖ ଦେଇ ନାହାଁନ୍ତି । ଆମ ଦୁଇ ଯାଆଙ୍କୁ ନେଇ ଲକ୍ଷ୍ମୀ ନାରାୟଣ ଯାତ୍ରା ବୁଲାଇ ଆଣନ୍ତି । ଆଜି ମୋର ସବୁ ମନେପଡ଼ିଯାଉଛି ।

ପୁଅ ଭୁବନେଶ୍ୱରରେ ଜନ୍ମ ହୋଇଥିଲା ସେତେବେଳେ ଫୋନ୍ ନଥିଲା । ଚିଠି ପଠାଇ ଗାଁ'ରେ ଏକୋଇଶିଆ କରିବେ ବୋଲି ନିଷ୍ପତ୍ତି ନେଇଥିଲେ । ତେଣୁ ଗାଁ'ରେ ସବୁ କାର୍ଯ୍ୟକ୍ରମ ହେଲା । ସେହିଦିନଠାରୁ ପୁଅ ତାଙ୍କର । ପୁଅର ଖାଇବା, ପିଇବା, ଶୋଇବା, ଖେଳିବା ସବୁ ସେ ବୁଝନ୍ତି । ତା'ପରେ ଦୁଇ ଝିଅ ଜନ୍ମ



Digitized by PPRACHIN, SOA

ହୋଇଥିଲେ। ପିଲାମାନଙ୍କର ଦେଖାଶୁଣା ଅଳିଅର୍ଦ୍ଦଳି ସବୁ ତାଙ୍କ ପାଖରେ। ସବୁ ସ୍ନେହ, ଶ୍ରଦ୍ଧା ଅଜାଡ଼ି ଦେଇଥିଲେ। ଆଜି ଏ ଦିନରେ ପିଲାମାନେ ଝୁରୁଛନ୍ତି ବାବାଙ୍କୁ। ୧୯୯୧ ମସିହାରେ ମଠବାପା ଚାଲିଗଲା ପରେ, ମହନ୍ତ ଗାଦିରେ ଶିରିପା ଗ୍ରହଣ କଲେ ଆମ ବଡ଼ଭାଇ। ଯିଏ କି ମହନ୍ତ ଘରର ପରମ୍ପରା ଅନୁଯାୟୀ, ବଡ଼ପୁଅ ଯିଏ ଥିବ ମହନ୍ତ ହେବ। ତେଣୁ ମୋ' ଶଶୁର ଶ୍ରୀ ନିତ୍ୟାନନ୍ଦ ଭାରତୀଙ୍କର ବଡ଼ ପୁଅ ହୋଇଥିବାରୁ ମହନ୍ତ ହେଲେ। ଏହା ଭିତରେ ୨୦୦୪ ମସିହା ଖଣ୍ଡିତର ହାଇସ୍କୁଲକୁ ପ୍ରଧାନଶିକ୍ଷକ ହୋଇ ଆସିଲେ। ତା' ପୂର୍ବରୁ ପୁଅର ଏବଂ ପୁତୁରାର ବ୍ରତଘର ମଠରେ ନିର୍ବାହ କରିଥିଲେ। ଖଣ୍ଡିତର ହାଇସ୍କୁଲରେ ରହଣି କାଳ ଭିତରେ ମଠରେ ଆରମ୍ଭ କଲେ ଉନ୍ନତି। ଜରାଜୀର୍ଣ୍ଣ ଅବସ୍ଥାରେ ମଠ ଥିଲା। ବଡ଼ଭାଇ ସମୟ ଦେଇ ନିଜର ଦରମା ଟଂକା ଏବଂ ମଠର ଆୟ ଯାହା ହୁଏ, ତାହା ସବୁ ଠାକୁରଙ୍କ ଘରର ଓ ଠାକୁରଙ୍କର କାର୍ଯ୍ୟକ୍ରମ ପାଇଁ ଖର୍ଚ୍ଚ କଲେ। ଗ୍ରାମର ଲୋକମାନେ ତାଙ୍କୁ କହନ୍ତି, ଯାହା ହେଉ ଶିଶିର କୁମାର ଭାରତୀ ମହନ୍ତ ହେଲେ ଏଥର ମଠ ଉନ୍ନତି ହେବ। ମୋ' ଦେଖିବାରେ ମଠର ବହୁତ ଉନ୍ନତିମୂଳକ କାର୍ଯ୍ୟ ସଂପାଦନ କରିଛନ୍ତି। ସମସ୍ତଙ୍କ ମୁଖରେ ତାଙ୍କର ପ୍ରଶଂସା। ଏବେ କି ଆମ ମନ ବୁଝୁନି ସେ ନାହାଁନ୍ତି ବୋଲି।

ଭାଇ ମଦନମୋହନଙ୍କ ସେବାରେ ଥିଲେ ମଧ୍ୟ ଘର ସହିତ ଜଡ଼ିତ ଥିଲେ। ସବୁଦିନ ଆସୁଥିଲେ ଭଲମନ୍ଦ ଖବର ବୁଝୁଥିଲେ। ଏମିତି ନାହିଁ କେଉଁ ଦିନ ବନ୍ଦ କରିନଥିଲେ। ତାଙ୍କ ବାପା, ମା'ଙ୍କର ଖବର, ଶୁଦ୍ଧିକ୍ରିୟା ସବୁ ବୁଝୁଥିଲେ ଆମେ କିଛି ଜାଣିନଥିଲୁ। ପିଲାମାନଙ୍କର ବାହାଘର ଏମିତି କେତେ କ'ଣ ଅସରନ୍ତି। ବଡ଼ ଭାଇ ଥିଲେ ଆମର ବାପା, ଭାଇ, ମା' ସବୁକିଛି। ଲେଖନୀ ଧରିଛି ଓ ଅନ୍ତରଟା ଆଜି କାନ୍ଦୁଛି ତାଙ୍କର ଅନୁପସ୍ଥିତିରେ। ମୋର ମନେ ପଡ଼ିଯାଉଛି ଗୋଟିଏ କଥା। ୨୦୧୯ରେ ମୁଁ କଟକ ଗଲି ଷ୍ଟୋନ ଅପରେସନ ପାଇଁ। ଘରୁ ବାହାରି ଯାଇଥିଲି ଦେଖା କରିବା ପାଇଁ। ପ୍ରଣାମ କରି ଉଠିଲାବେଳକୁ ଦେଖିଲି ବଡ଼ଭାଇ କାନ୍ଦି ପକାଇଲେ ଏବଂ ମୋତେ କହିଲେ, ତମେ ଯାଅ ମଦନମୋହନ ଭଲରେ ଘରକୁ ଫେରାନ୍ତୁ। ଅପରେସନ୍ ଦିନ ମଦନମୋହନଙ୍କ ପାଖରେ ନାମ ଜପ କରୁଥିଲେ। ଫୋନ୍ କରି ସବୁ ବୁଝୁଥିଲେ। ଭଗବାନ ଆମ ସମସ୍ତଙ୍କ ପାଖରୁ ବଡ଼ଭାଇଙ୍କୁ ଛଡ଼ାଇ ନେଲେ।



Digitized by PPRACHIN, SOA

ତାଙ୍କର ଧର୍ମ କାର୍ଯ୍ୟ ଥିଲା ପେଷା । ୨୦୧୦ ମସିହାରେ ଅବସର ସ୍କୁଲରୁ ନେଇ ବହୁତ କାର୍ଯ୍ୟ କଲେ ତାଙ୍କ ରହଣି ଭିତରେ । ମଠର ଗୀତା ଯଜ୍ଞ, ବିଷ୍ଣୁ ସହସ୍ରନାମ, ଚନ୍ଦନ ଯାତ୍ରା, ରାସ ପୂର୍ଣ୍ଣିମା, ମେଲଣ, ଝୁଲଣ ଯାତ୍ରା । ବହୁତ ଆନନ୍ଦ ସହକାରେ ତୁଲାଉ ଥିଲେ ଏବଂ ଭକ୍ତମାନଙ୍କୁ ଡାକୁଥିଲେ । ସେମାନଙ୍କ ସହିତ ଆନନ୍ଦ ଉପଭୋଗ କରୁଥିଲେ । ମନେ ପଡ଼ିଯାଉଛି ମୋର ଝୁଲଣ ଯାତ୍ରାରେ ପ୍ରଥମ ଦିବସରେ ମଦନମୋହନ କୁଞ୍ଜକୁ ଗଲେ ବଡ଼ଭାଇ ଗୀତା ପଢ଼ନ୍ତି ଏବଂ ଭଜନ ବୋଲନ୍ତି । (ଝୁଲରେ ଝୁଲଣ ବୋଲି ମଦନମୋହନ ଆଜି ଝୁଲୁଛନ୍ତି ଦୋଳି) ଏମିତି କେତେ କ'ଣ । ଆମେ ଜାଣି କୁଞ୍ଜେ ବଡ଼ ଭାଇ ମଦନମୋହନଙ୍କ ପାଖରେ ବସିଛନ୍ତି । ତା'ପରେ ଆମେ ସବୁ ଯାଇ ମଠରେ ଝୁଲଣ ଯାତ୍ରା ଦେଖୁ । ଯିଏ ନଯାଇ ଥିବେ, ପଚାରନ୍ତି କୁଆଡ଼େ ଗଲେ ତାଙ୍କୁ ଡାକ । ସେ ସମସ୍ତଙ୍କ ଉପସ୍ଥିତିକୁ ଆନନ୍ଦ ଉପଭୋଗ କରୁଥିଲେ । ଆଉ ଗୋଟିଏ କଥା ଲେଖିବି, ବଡ଼ଭାଇ କହୁଥିଲେ ମୋ' ବାପା କହିଛନ୍ତି । ଶିବ ମନ୍ଦିର ପୁନଉଦ୍ଧାର କରିବାପାଇଁ । ତେଣୁ ବାପାଙ୍କ କଥାକୁ ବଡ଼ଭାଇ ପୂରଣ କରିଛନ୍ତି । ଶିବ ମନ୍ଦିର ମଠର ପୁନଃଉଦ୍ଧାର କରିପାରିଛନ୍ତି । ତାଙ୍କର ଜୀବନ କାଳ ଭିତରେ ମଂଗଳାଙ୍କର କେତେକ କାର୍ଯ୍ୟ ଲୋକମାନଙ୍କ ସହଯୋଗରେ ନିର୍ବାହ କରୁଥିଲେ । ଏମିତି କହିବା ପାଇଁ ଗଲେ ଧର୍ମ କାର୍ଯ୍ୟରେ ସେ ଥିଲେ ଧାର୍ମିକ । ତାଙ୍କର ଧର୍ମ କାର୍ଯ୍ୟରେ ମଦନମୋହନ ତାଙ୍କ ଝୁଲଣ ଯାତ୍ରାରେ ନେଇଗଲେ ତାଙ୍କ ପାଖକୁ । ୭୦ ବର୍ଷ ବୟସରେ ବଡ଼ ଭାଇ ଆମମାନଙ୍କୁ ଛାଡ଼ି ମଦନମୋହନଙ୍କ ପାଦରେ ଦୀପଟିଏ ହୋଇ ରହିଗଲେ । ତାଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ ମୁଁ ମଦନମୋହନଙ୍କ ଶ୍ରୀଚରଣରେ ପ୍ରଣାମ ଜଣାଉଛି ।

***ଖଣ୍ଡିତର***





Digitized by PPRACHIN, SOA

# ବଡ଼ ବାପାଙ୍କ ସ୍ମୃତିରେ

ମଧୁସ୍ମିତା ଭାରତୀ



ଜୀବନ ଜିଇଁବା ନିମନ୍ତେ ଖଣ୍ଡିଉଡ଼ା ଦେଉଥିବା ପକ୍ଷୀଟିଏ ପରି ମୁଁ ଖଣ୍ଡିତର ଗ୍ରାମରେ ଆଶ୍ରୟ ନେଇଥିଲି। ସେଦିନ ଥିଲା ୨୦୧୬ ମସିହା ଏପ୍ରିଲ ମାସ ୨୭ ତାରିଖ। ସେହି ଦିନ ମୁଁ ଖଣ୍ଡିତର ଗ୍ରାମର ମହନ୍ତ ପରିବାରର ବଡ଼ବୋହୂ ହେବାର ସୌଭାଗ୍ୟ ଅର୍ଜନ କଲି। ଏହି ପରିବାରର ବଡ଼ ପୁଅମାନେ ମହନ୍ତଙ୍କ କାର୍ଯ୍ୟଭାର ଗ୍ରହଣ କରି ସେବା କରି ଆସୁଛନ୍ତି। ପରିବାରର ଅନ୍ୟାନ୍ୟ ସଦସ୍ୟ ମଧ୍ୟ ଶ୍ରୀ ଶ୍ରୀ ମଦନମୋହନ ଜୀଉଙ୍କ ସେବାକାର୍ଯ୍ୟରେ ସର୍ବଦା ନିଜକୁ ନିୟୋଜିତ କରନ୍ତି। ଦୀର୍ଘ ୩୦୦ ବର୍ଷ ଧରି ଏହି ସେବାକାର୍ଯ୍ୟ ହୋଇ ଆସୁଛି। ତେଣୁ ଏହି ପରିବାର 'ମହନ୍ତ ପରିବାର' ନାମରେ ଗ୍ରାମରେ ନାମିତ। ୧୦ମ ମହନ୍ତ ମହାରାଜ ଥିଲେ ଶ୍ରୀ ଶିଶିର କୁମାର ଭାରତୀ ଗୋସ୍ୱାମୀ। ମହନ୍ତଙ୍କ କର୍ତ୍ତବ୍ୟ ସଂପାଦନ କରିବା ସଂଗେ ସଂଗେ ସେ ନିଜର ସାନ ଭାଇ, ତାଙ୍କର ପୁତ୍ର, ପୁତ୍ରବଧୂ, କନ୍ୟା ଆଦିଙ୍କ ସୁଖଦୁଃଖ, ଭଲମନ୍ଦ ବୁଝିବାରେ ହେଳା କରନ୍ତି ନାହିଁ। ପରିବାରର ମୁଖ୍ୟ ରୂପେ ସେ ସମସ୍ତ କର୍ତ୍ତବ୍ୟ ସଂପାଦନ କରି ଆସିଛନ୍ତି।

ଶ୍ରୀ ଜ୍ଞାନରଂଜନ ଭାରତୀଙ୍କର ହସ୍ତ ଧରି ମୁଁ ପ୍ରଥମ ଥର ଉକ୍ତ ପରିବାରକୁ ଆସିଲି। ଶ୍ରଦ୍ଧାରେ ଆମେ ତାଙ୍କୁ 'ବଡ଼ବାପା' ବୋଲି ସମ୍ବୋଧନ କରୁ। ବଡ଼ବୋହୂ ରୂପେ ପ୍ରଥମେ ମୁଁ ତାଙ୍କୁ ଯେତେବେଳେ ପ୍ରଣାମ କଲି ସେ ମୋର ମୁଣ୍ଡରେ ହାତ ରଖି ମୋତେ ଆଶୀର୍ବାଦ କଲେ ଏବଂ ସହାସ୍ୟ ବଦନରେ କହିଲେ, "ଆୟୁଷ୍ମତୀ



Digitized by PPRACHIN, SOA

ଭବ" । ଅନ୍ୟମାନଙ୍କ ନିମନ୍ତେ ଏହା ସାଧାରଣ ହୋଇପାରେ, ମାତ୍ର ମୁଁ ଅନ୍ୟମାନଙ୍କ ନିମନ୍ତେ ଏହା ସାଧାରଣ ହୋଇପାରେ, ମାତ୍ର ମୁଁ ମୋ' ନିଜ ପରିବାର ପରିଜନଙ୍କୁ ଛାଡ଼ି ଯେତେବେଳେ ଏହି ପରିବାରକୁ ଆସିଲି ଦୁଃଖରେ ମ୍ରିୟମାଣ ହୋଇପଡ଼ିଥିଲି, ମାତ୍ର ତାଙ୍କର ସାନ୍ନିଧ ଲାଭ କରି ମୁଁ ମୋର ପିତାଙ୍କ ଅନୁପସ୍ଥିତିର କଷ୍ଟ ସେହି ଦିନ ଭୁଲିଯାଇଥିଲି । ପ୍ରତିବର୍ଷ ଝୁଲଣ ପୂର୍ଣ୍ଣିମା ଏବଂ ପ୍ରତି ମାସରେ ହେଉଥିବା ଗୀତା ଯଜ୍ଞରେ ସେ ସମସ୍ତଙ୍କୁ ବହୁତ ଆନନ୍ଦର ସହ ନିମନ୍ତ୍ରଣ କରିଥାନ୍ତି ମଠକୁ ଯିବାକୁ ଏବଂ ଠାକୁରଙ୍କ କାର୍ଯ୍ୟରେ ନିଜକୁ ନିୟୋଜିତ କରିବାକୁ । ଖୁବ୍ ଲୋକପ୍ରିୟ ମଣିଷ ସେ । ସମସ୍ତଙ୍କୁ ବହୁତ ଭଲ ପାଉଥିଲେ । ଆଜି ବି ମନେ ପଡ଼ିଯାଏ ଆମେ ଯେତେବେଳେ ମଠକୁ ଯାଉ ସେ ଖୁବ୍ ଆନନ୍ଦର ସହ କୁହନ୍ତି, "ଆସିଗଲ ସମସ୍ତେ" । ଆସ ଠାକୁରଙ୍କ ଆଶୀର୍ବାଦ ନିଅ । ମୋର ପୁତ୍ରକୁ ଦେଖିଲେ ସତେ ଯେମିତି ଆନନ୍ଦରେ ତାଙ୍କର ସମସ୍ତ ଦୁଃଖ ଦୂର ହୋଇଯାଏ । କୁନି କୁନି ପିଲାଙ୍କୁ ସେ ଖୁବ୍ ଆଦର କରନ୍ତି । ବଡ଼ ବାପା ଆଜି ଆମ ଗହଣରେ ନାହାଁନ୍ତି, ମାତ୍ର ତାଙ୍କର ଅମୂଲ୍ୟ ଉପଦେଶ, ଆମ୍ଭମାନଙ୍କ ପ୍ରତି ଥିବା ଭଲପାଇବା ଉଜ୍ଜୀବିତ ହୋଇ ରହିଛି । ତାଙ୍କ ଆଶୀର୍ବାଦ କ୍ରମେ ଆମ ଭବିଷ୍ୟତ ସୁପୁଷ୍ପିତ ଏବଂ ଉଜ୍ଜ୍ୱଳ ହୋଇଛି । ତାଙ୍କର ସ୍ନେହ, ଆଦର, ଭଲପାଇବା, ଆଶୀର୍ବାଦ ବିଛାଇ ଦେଇଛି ଆମ ଓଠରେ ହସ ଏବଂ ଏକ ଉଜ୍ଜ୍ୱଳ ଭବିଷ୍ୟତ ।

ଶେଷରେ ସେହି ମହାନ ଆତ୍ମାଙ୍କ ନିକଟରେ ମୋର କୋଟି କୋଟି ପ୍ରଣାମ । ସେ ଆଜି ଆମ ସହ ସ୍ଥୂଳ ରୂପରେ ନାହାଁନ୍ତି । ମାତ୍ର ତାଙ୍କର ଉପଦେଶାବଳୀ ଜୀବନ ସାରା ଆମ ସହ ସୂକ୍ଷ୍ମ ରୂପରେ ଅମର ହୋଇ ରହିବ । ଈଶ୍ୱରଙ୍କ ନିକଟରେ ଏତିକି ପ୍ରାର୍ଥନା ଆମକୁ ଏପରି ସତ୍‌ପଥ ଦେଖାନ୍ତୁ ଯାହା ଦ୍ୱାରା ଆମ୍ଭେମାନେ ଉଚିତ୍ କାର୍ଯ୍ୟ କରି ଦେଶଜାତିର ମାନ ରକ୍ଷା କରିବୁ ଏବଂ ବଡ଼ବାପାଙ୍କୁ ଗର୍ବିତ କରାଇବୁ । ସେ ବ୍ରହ୍ମଲୀନ ହୋଇ ସ୍ୱର୍ଗୀୟ ଶାନ୍ତି ଲାଭ କରିବେ ।

*ବଡ଼ ପୁତ୍ରବଧୂ*
*ଖଣ୍ଡିତର ମଠ*





Digitized by PPRACHIN, SOA

# ମୋ' ଜୀବନରେ 'ବାବା'

ଶ୍ରୀମତୀ ଜୟଶ୍ରୀ ଭାରତୀ



ସମାଜରେ ମୁଖ୍ୟତଃ ଦୁଇବର୍ଗର ବ୍ୟକ୍ତି ଦେଖାଯାଇଥାନ୍ତି । ପ୍ରଥମ ବର୍ଗରେ ଯେଉଁମାନେ ନିଜର ବ୍ୟକ୍ତିଗତ ଜୀବନ ବିଷୟରେ ସର୍ବଦା ଚିନ୍ତା କରି ସଂଗ୍ରହ, ସଂଚୟ, ପରିବାରର ଉନ୍ନତିରେ ଲିପ୍ତ ଥାଆନ୍ତି । ଦ୍ୱିତୀୟ ବର୍ଗର ବ୍ୟକ୍ତିମାନେ ସମାଜର ତତ୍କାଳୀନ ଆହ୍ୱାନରେ ନିଜକୁ ସଂପୃକ୍ତ କରି ସମାଜ ସେବାରେ ଲିପ୍ତ ରହି ମାନବ ଜାତିର ଉନ୍ନତି ନିମନ୍ତେ ଚିନ୍ତା କରନ୍ତି । ମାତ୍ର ଖଣ୍ଡିତର ଗ୍ରାମରେ ଅବସ୍ଥିତ ଶ୍ରୀ ଶ୍ରୀ ମଦନମୋହନ ଜୀଉ ମଠର ମହନ୍ତ ଶ୍ରୀ ଶିଶିର କୁମାର ଭାରତୀ ଗୋସ୍ୱାମୀ ଉକ୍ତ ଦୁଇ ବର୍ଗର ବ୍ୟକ୍ତିଙ୍କଠୁ ଉର୍ଦ୍ଧ୍ୱରେ ଥିଲେ । ସେ ମାନସପୁତ୍ର ହୋଇ ମଠାଧୀଶ ରୂପେ ସମାଜରେ ଆଧ୍ୟାତ୍ମିକ ଚେତନା ଲୋକମାନଙ୍କ ମଧ୍ୟରେ ଦୃଢ଼ୀଭୂତ କରିବା ସଂଗେ ସଂଗେ ଜନ୍ମିତ ପିତାମାତା ତଥା ପରିବାରର ସମସ୍ୟା ସମାଧାନରେ ଦୃଢ଼ ପଦକ୍ଷେପ ନେଇପାରୁଥିଲେ । ଏତତ୍‌ବ୍ୟତୀତ ଶିକ୍ଷକତା କାର୍ଯ୍ୟ କରି ଶିକ୍ଷାର ପ୍ରସାର କରିବା ସଂଗେ ସଂଗେ ବିଭିନ୍ନ ସାଂଗଠନିକ କାର୍ଯ୍ୟରେ ଯୋଗଦାନ କରି ସମାଜର ଉନ୍ନତିମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରିବାରେ ସକ୍ଷମ ଥିଲେ । ଏକାଧାରରେ ସେ ଦେବସେବା, ସମାଜସେବା, ଆଧ୍ୟାତ୍ମିକତାର ପ୍ରସାର ପ୍ରଚାର, ଶିକ୍ଷାର ପ୍ରସାର, ପରିବାର ଓ ବନ୍ଧୁ ପରିଜନଙ୍କ ସେବା ଏବଂ ଦଶନାମୀ ସାଧୁ ସଂପ୍ରଦାୟର ସଂସ୍କାରପ୍ରଥା ଆଦି କାର୍ଯ୍ୟରେ ସଫଳ ରୂପେ ନିଜକୁ ପ୍ରତିପାଦିତ କରିପାରିଥିଲେ ।

ଖଣ୍ଡିତରରେ 'ମହନ୍ତଘର' କହିଲେ ଆମ ପରିବାରକୁ ବୁଝାଏ । ପୁରୁଷାନୁକ୍ରମେ ଏହି ପରିବାରର ବଂଶଜମାନେ ମଠାଧୀଶ ହୋଇ ଶ୍ରୀ ମଦନମୋହନଙ୍କ ସେବାରେ ନିଜକୁ ସମର୍ପିତ କରିଆସୁଛନ୍ତି । ଉକ୍ତ ମଠଟି ଦଶନାମୀ ସାଧୁ ସଂପ୍ରଦାୟର ପୂଜ୍ୟ ସନ୍ଥ ମହନ୍ତ ଶ୍ରୀ ସଦାଶିବ ଭାରତୀ ଗୋସ୍ୱାମୀଙ୍କ ଦ୍ୱାରା ପ୍ରଥମେ ସ୍ଥାପିତ ହୋଇଥିଲା । ନବମ ମହନ୍ତ ଶ୍ରୀ ନବକିଶୋର ଭାରତୀ ଗୋସ୍ୱାମୀଙ୍କର ଭ୍ରାତା ଥିଲେ ଶ୍ରୀ ଶ୍ୟାମଘନ ଭାରତୀ, ଶ୍ରୀ ନିତ୍ୟାନନ୍ଦ ଭାରତୀ



Digitized by PPRACHIN, SOA

ଏବଂ ଶ୍ରୀ ଭବତାରଣ ଭାରତୀ। ମୋର ଜେଜେ ୰ଶ୍ରୀ ନିତ୍ୟାନନ୍ଦ ଭାରତୀଙ୍କ ଜ୍ୟେଷ୍ଠ ପୁତ୍ର ଶ୍ରୀ ଶିଶିର କୁମାର ଭାରତୀଙ୍କୁ ମହନ୍ତ ନବକିଶୋର ଭାରତୀ ଗୋସ୍ୱାମୀ ନିଜର ମାନସ ପୁତ୍ର ରୂପରେ ଗ୍ରହଣ କରିଥିଲେ। ନବମ ମହନ୍ତ ମହାରାଜଙ୍କ ବ୍ରହ୍ମଲୀନ ତା-୨୦/୦୨/୧୯୯୧ ମସିହାରେ ହୋଇଥିଲା। ଏହାପରେ ତା-୦୮/୦୩/୯୧ ରିଖରେ ଶ୍ରୀଯୁକ୍ତ ଶିଶିର କୁମାର ଭାରତୀ ମହୋଦୟ ମଠରେ ମହନ୍ତ ରୂପେ ନିଜକୁ ସମର୍ପିତ କରି କାର୍ଯ୍ୟଭାର ଗ୍ରହଣ କରିଥିଲେ। ଆମେ ତାଙ୍କୁ ଶ୍ରଦ୍ଧାରେ 'ବାବା' ଡାକୁ। କାରଣ ସେ ସନ୍ନ୍ୟାସୀ ହୋଇ ଈଶ୍ୱରଙ୍କ ସେବାରେ ନିଜକୁ ନିୟୋଜିତ କରିବା ସଂଗେ ସଂଗେ ପିତୃତୁଲ୍ୟ ସମସ୍ତ ସଂସ୍କାର ମୋତେ ପ୍ରଦାନ କରିଛନ୍ତି। ୧୯୯୬ ମସିହାରେ ବାପା (ଶ୍ରୀ ବସନ୍ତ ଭାରତୀ)ଙ୍କ ସହ ମୁଁ, ମୋର ଭାଇ ଓ ଭଉଣୀ ମାଆ ସହ ସ୍ଥାୟୀ ରୂପେ ଜଳସରପୁର ଗ୍ରାମକୁ ଆସିଥିଲୁ। ସେହି ସମୟରେ ମୁଁ ୨ୟ ଶ୍ରେଣୀରେ ଜଳସରପୁର ରାଧାଗୋବିନ୍ଦ ଉ.ପ୍ରା. ବିଦ୍ୟାଳୟରେ ନାମ ଲେଖାଇଲି। ବାପା ଭୁବନେଶ୍ୱରରେ ଚାକିରି କରିଥିବାରୁ ସେଠାରେ ରୁହନ୍ତି ଏବଂ ସପ୍ତାହରେ ଥରେ ଆସନ୍ତି। ମାତ୍ର ଗାଁ'ରେ ଆମେ ଅଧିକାଂଶ ସମୟ 'ବାବା'ଙ୍କ ସହ ବିତାଇ ଆସିଛୁ। କେବଳ ଆମକୁ ନୁହେଁ ସେ ସବୁ ପିଲାମାନଙ୍କୁ ବହୁତ ଆଦର, ସ୍ନେହ କରନ୍ତି। ମଠକୁ ଯିବା ରାସ୍ତାରେ ଆମେ ପହଞ୍ଚିବା ମାତ୍ରେ ବାବା ଦୁଆରେ ବସି ଜାଣିପାରନ୍ତି ଓ ଖୁସିରେ ବିଭୋର ହୋଇ କୁହନ୍ତି ଆସିଲୁ। ତାଙ୍କର ସେ ହସ ହସ ମୁହଁ ଆଉ ସ୍ନେହଭରା ଡାକ ଜୀବନସାରା ଆମେ ଭୁଲିପାରିବୁ ନାହିଁ।

କେବଳ ଆମ ପରିବାରର ନୁହେଁ ଗ୍ରାମର ଅନ୍ୟାନ୍ୟ ଛୋଟ ଛୋଟ ପିଲାମାନଙ୍କୁ ବାବା ବହୁତ ଭଲପାଉଥିଲେ। ବାଲ୍ୟାବସ୍ଥାରୁ ଶିଶୁମାନଙ୍କ ହୃଦୟରେ ଆଧ୍ୟାତ୍ମିକ ଚେତନାର ମୂଳଦୁଆ ପକାଇବାରେ ଚେଷ୍ଟିତ ଥିଲେ। ଯାହାକି ଆଜି ମୁଁ ଅନୁଭବ କରୁଛି। ସାଂପ୍ରତିକ ସମାଜରେ ପିଲାମାନେ ଆଧ୍ୟାତ୍ମିକ ପରିବେଶରୁ ବହୁତ ଦୂରେଇ ଯାଉଛନ୍ତି। ମାତ୍ର ସେ ସମୟରେ ବୋଧହୁଏ ମୁଁ ୩ୟ/୪ର୍ଥ ଶ୍ରେଣୀରେ ପଢୁଥିଲି। ଶିକ୍ଷକତା କାର୍ଯ୍ୟ, ମଠର ଦାୟିତ୍ୱ ବହନ କରିବା ସଂଗେ ସଂଗେ ପ୍ରତି ସପ୍ତାହର ରବିବାର ଦିନ ବାବା ମଠରେ ଏକ 'ବାଳବିକାଶ' କାର୍ଯ୍ୟକ୍ରମ କରୁଥିଲେ। ଆମ ପରିବାରର ୬ ଭାଇଭଉଣୀ ଏବଂ ଗ୍ରାମର ଅନ୍ୟ କେତେକ ପରିବାରର ଛୋଟ ଛୋଟ ପିଲାମାନେ ଏକାଠି ହୋଇ ମଠକୁ ଯାଉ।



Digitized by PPRACHIN, SOA

ସେଠାରେ ବାବା ରାମାୟଣ, ମହାଭାରତ, ଶ୍ରୀମଦ୍ ଭଗବତ ଗୀତା ଆଦି ପୁରାଣର କିଛି କିଛି ଅଂଶ ଗପ ମାଧ୍ୟମରେ ଆମକୁ କୁହନ୍ତି। ଅନ୍ୟାନ୍ୟ ନୀତିବାଣୀ ସମ୍ବନ୍ଧୀୟ ଗଳ୍ପ ଅଭିନୟ ମାଧ୍ୟମରେ ଶିଖାନ୍ତି। ଅନେକ ସଂସ୍କୃତ ଶ୍ଳୋକ ଆମେ ତାଙ୍କଠାରୁ ଶିଖି ଅଭ୍ୟାସ କରୁ ଏବଂ ଏହାର ଅର୍ଥ ମଧ୍ୟ ବୁଝାନ୍ତି। ଗୀତା, ଧ୍ୟାନ ଅଭ୍ୟାସ କରାନ୍ତି। ପଦ୍ମାସନରେ ବସି ଓଁକାର ଜପ ଦ୍ୱାରା ନିଜର ଏକାଗ୍ରତା କିପରି କରାଯାଇପାରିବ ତାହା ମଧ୍ୟ ଅଭ୍ୟାସ କରାନ୍ତି। ଶେଷରେ ଭୋଗ/ ଚକ୍‌ଲେଟ ଦିଅନ୍ତି ଏବଂ ସବୁ ପିଲାମାନେ ମନ ଖୁସିରେ ଖାଇ ଘରକୁ ଫେରୁ। ହୁଏତ ମୁଁ ବହୁତ ଛୋଟ ଥିଲି ସେହି ସମୟରେ। ମାତ୍ର ପଦ୍ମାସନରେ ୧ ଘଣ୍ଟା ସମୟ ପର୍ଯ୍ୟନ୍ତ ବସି ଧ୍ୟାନାଭ୍ୟାସ, ଓଁକାର ଉଚ୍ଚାରଣ, ନାମ ଜପ ଏସବୁ କାର୍ଯ୍ୟ ମୁଁ ବାଲ୍ୟାବସ୍ଥାରୁ ତାଙ୍କ ଦ୍ୱାରା ହିଁ ଅଭ୍ୟାସ କରିଥିଲି। ଯାହାକି ଜୀବନରେ ବହୁତ ସମସ୍ୟାର ସମାଧାନରେ ସହାୟକ ହୋଇପାରିଛି। ବାବା ଏକ ରୁଦ୍ରାକ୍ଷମାଳ ସବୁବେଳେ ଗଳାରେ ପକାନ୍ତି। ପ୍ରତ୍ୟହ ପ୍ରାତଃ ୪ଟାରୁ ଉଠି ଗୀତା ଧ୍ୟାନ କରନ୍ତି। ମୁଁ ଛୋଟବେଳେ ସେହି ମାଳିକୁ ବେଳେବେଳେ ଛୁଇଁବାକୁ ଇଚ୍ଛା କରେ ଏବଂ ତାଙ୍କ ପରି ଧରି ଜପ କରିବାକୁ ପ୍ରୟାସ କରେ। ଗଙ୍ଗଶିଉଳି ପୁଷ୍ପକୁ ତୋଳି ନାମ ଜପ କରି କରି ପୁଷ୍ପମାଲ୍ୟ ପ୍ରସ୍ତୁତ କରିବା କାର୍ଯ୍ୟ ମଧ୍ୟ ଖୁବ୍ ଶ୍ରଦ୍ଧାରେ ସେ ଆମକୁ ଶିଖାନ୍ତି। ଆମେ ମଧ୍ୟ ବହୁତ ଖୁସି ହୋଇ ଏସବୁ କାର୍ଯ୍ୟ କରୁ। ଇତିମଧ୍ୟରେ ଠାକୁରଙ୍କ ନାମ ଜପ କାର୍ଯ୍ୟଟି ମଧ୍ୟ ସମାପନ ହୁଏ ତାହା ଆମେ ଜାଣିପାରୁନା। ଏହିପରି ବାଲ୍ୟକାଳରୁ ଏକ ଆଧ୍ୟାତ୍ମିକ ପରିବେଶ ସେ ଆମକୁ ଯୋଗାଇ ଦେଇଥିଲେ, ଯାହାକି ଆମର ନୈତିକତା, ଆଧ୍ୟାତ୍ମିକତା ଏବଂ ସହନଶୀଳତା ବୃଦ୍ଧିରେ ସହାୟକ ହୋଇପାରିଛି। ମଠରେ ପାଳନ କରାଯାଉଥିବା ମୁଖ୍ୟ ପର୍ବ ଝୁଲଣ ଯାତ୍ରା, ମେଲଣ, ଗଣେଶ ପୂଜା, ସରସ୍ୱତୀ ପୂଜା, ଦୀପାବଳୀ ଆଦି ପର୍ବ ଆମେ ଭାଇଭଉଣୀ ଆଗ୍ରହର ସହ ଯାଇ ପାଳନ କରୁ। ପର୍ବପର୍ବାଣିର ପ୍ରାୟ ୧ ମାସ ପୂର୍ବରୁ ବାବା ଲୋକମାନଙ୍କୁ ମଠକୁ ଆସିବାକୁ ନିମନ୍ତ୍ରଣ କରନ୍ତି। ମଠରେ ଗ୍ରାମବାସୀଙ୍କଠାରୁ ଆରମ୍ଭ କରି ଅନ୍ୟ କେହି ଜଣେ ଆଗନ୍ତୁକ ପହଞ୍ଚିଗଲେ ସେ ବହୁତ ଖୁସି ହୋଇ ଚର୍ଚ୍ଚା କରନ୍ତି। ପ୍ରତିବର୍ଷ ଦୀପାବଳୀରେ ଠାକୁରଙ୍କ ନିକଟରେ ଦୀପ ଜାଳି ସଜାଉ। ଆମର ବାଣ ଫୁଟାଇବା ଦେଖି ସତେ ଯେମିତି ତାଙ୍କ ହୃଦୟ ଖୁସିରେ ନାଚିଉଠେ। ବହୁତ ଖୁସି ହୁଅନ୍ତି ସେ ଆମ ସମସ୍ତଙ୍କୁ ମଠରେ ଏକାଠି ଦେଖି। ବାହାଘର ପରେ ମଧ୍ୟ ପ୍ରତିବର୍ଷ ଦୀପାବଳୀରେ ବାବା ଫୋନ୍ କରି କଥା ହୁଅନ୍ତି ଆଉ ମନେପକାନ୍ତି।



Digitized by PPRACHIN, SOA

ମଠରେ ମଦନମୋହନଙ୍କ ସେବା କରିବା ସଂଗେ ସଂଗେ ସେ ଜଣେ ଆଦର୍ଶ ଶିକ୍ଷକ ରୂପେ ଅନେକ ଶିକ୍ଷାର୍ଥୀଙ୍କ ଭବିଷ୍ୟତ ଉଜ୍ଜ୍ୱଳ କରିଛନ୍ତି। ମଧୁବନ ଉଚ୍ଚ ବିଦ୍ୟାଳୟରେ ସେ ଶିକ୍ଷକତା ଜୀବନ ଆରମ୍ଭ କରିଥିଲେ। ଏହାପରେ କ୍ଷେତ୍ରପାଳ ଉଚ୍ଚ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଏବଂ ଶେଷରେ ୨୦୦୪ ମସିହାରେ ଖଣ୍ଡିତର ଉଚ୍ଚ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ ନିର୍ବାହ କରି ୨୦୧୦ ମସିହାରେ ଅବସର ଗ୍ରହଣ କରିଥିଲେ। ସେ ଖଣ୍ଡିତର ଉଚ୍ଚବିଦ୍ୟାଳୟରେ କାର୍ଯ୍ୟରତ ଥିବା ସମୟରେ ମୁଁ ଓ ମୋର ଦୁଇ ଭଉଣୀ ସେହି ବିଦ୍ୟାଳୟର ଶିକ୍ଷାର୍ଥୀ ଥିଲୁ। ଅନେକ ଦାୟିତ୍ୱ ବହନ କରିବା ସତ୍ତ୍ୱେ ସେ ଏକ ପିତାର କର୍ତ୍ତବ୍ୟ ଏବଂ ସ୍ନେହ ଆଦର କରିବାରେ କେବେ ହେଳା କରନ୍ତି ନାହିଁ। ମୋର ୧୦ମ ଶ୍ରେଣୀ ପରୀକ୍ଷା ପୂର୍ବରୁ ସନ୍ଧ୍ୟାବେଳେ କିଛି ସମୟ ବାହାର କରି ମୋତେ ପଢ଼ାନ୍ତି। ସର୍ବଦା ସାହସ ପ୍ରଦାନ କରନ୍ତି ଯେ, "ଜୀବନରେ ଆଗକୁ ବଢ଼ିବାକୁ ହେଲେ ବହୁତ ପରିଶ୍ରମ ଓ ସଂଘର୍ଷ କରିବାକୁ ହୁଏ। ତୁ ବହୁତ ପରିଶ୍ରମ କର। ନିଜ ଭାଗ୍ୟ ନିଜେ ଲେଖେ।" ପାଠପଢ଼ି ମୁଁ ତାଙ୍କ ପରି ଏକ ଶିକ୍ଷୟିତ୍ରୀ ହୁଏ ତାହା ତାଙ୍କର ଆନ୍ତରିକ ସ୍ୱପ୍ନ ଥିଲା ମୋତେ ନେଇ। ଯାହାକି ମୁଁ ପୂରଣ କରିପାରିଛି। ୨୦୧୦ ମସିହାରେ ବାବା ଶିକ୍ଷକତାରୁ ଅବସର ନେଲେ ଏବଂ ୨୦୧୧ ମସିହାରେ ସରକାରଙ୍କ ନିଯୁକ୍ତ କ୍ରମେ ମୁଁ ଶିକ୍ଷକତା କାର୍ଯ୍ୟରେ ଯୋଗଦାନ କଲି। ସେଦିନ ବାବା ବହୁତ ଖୁସି ହୋଇଯାଇଥିଲେ। ପ୍ରଥମ ସ୍କୁଲରେ ଯୋଗଦାନ କରିବା ପାଇଁ ସେ ମୋତେ ସାଂଗରେ ନେଇଯାଇଥିଲେ ଏବଂ ଉପଦେଶ ଦେଇଥିଲେ, "ଆରେ ମା' ସରକାରୀ ଚାକିରି କରିବା ପାଇଁ ବହୁତ ଧୈର୍ଯ୍ୟ ଏବଂ ସହନଶୀଳତା ଆବଶ୍ୟକ। ତୁ ସମସ୍ତଙ୍କ କଥା ମାନି ଚଳିବୁ।" ମୁଁ ମଧ ତାହା ଆଜି ପର୍ଯ୍ୟନ୍ତ ମାନି ଚଳିଆସୁଛି।

ଶିକ୍ଷକତା ବ୍ୟତୀତ ବିଭିନ୍ନ ସାଂଗଠନିକ କାର୍ଯ୍ୟ, ଦଶନାମୀ ସନ୍ନ୍ୟାସୀଙ୍କ ବ୍ରତୋପନୟନ ସମୟରେ ନାମମନ୍ତ୍ର ଦେବା କାର୍ଯ୍ୟ, ରଥଯାତ୍ରାରେ ଠାକୁରଙ୍କ ରଥର ଛେରାପହଁରା କାର୍ଯ୍ୟ, ମା' ମଂଗଳା ମନ୍ଦିରରେ ଅନୁଷ୍ଠିତ ଯଜ୍ଞରେ ମୁଖ୍ୟ ପୁରୋଧା କାର୍ଯ୍ୟରେ ମଧ୍ୟ ସେ ନିଜକୁ ସମର୍ପିତ କରିଥିଲେ। ଗ୍ରାମରେ ଆଧ୍ୟାତ୍ମିକତାର ବୃଦ୍ଧି ନିମନ୍ତେ ସେ ୨୦୧୦ ମସିହାରେ ପ୍ରଥମେ ମଦନମୋହନ ମଠରେ ଗୀତାଯଜ୍ଞର ଆୟୋଜନ କରିଥିଲେ। ଅଧ୍ୟାପକ ଶ୍ରୀଯୁକ୍ତ ସୁଶାନ୍ତ କୁମାର ପଣ୍ଡାଙ୍କ



Digitized by PPRACHIN, SOA

ତତ୍ତ୍ୱାବଧାନରେ କେତେକ ସୁବେଦୀ ବ୍ରାହ୍ମଣମାନଙ୍କୁ ନେଇ ଏହା ଅନୁଷ୍ଠିତ ହୋଇଥିଲା। ଖୁବ୍ ଜନସମାଗମ ହୋଇଥିଲା। ସମସ୍ତ ଗ୍ରାମବାସୀ ଯଜ୍ଞ କାର୍ଯ୍ୟରେ ଆସି ଯୋଗଦାନ କରିଥିଲେ। ମୋର ସେତେବେଳେ ସି.ଟି. ପରୀକ୍ଷା ସରି ଯାଇଥାଏ। ବାବା ଡାକି କହିଲେ, "ଆଜିଯାଏ ଠାକୁରଙ୍କ ସେବା କରୁଥିଲ। ଆଉ ଏକ ସେବା ଦାୟିତ୍ୱ ଦେଲି। ଯଜ୍ଞରେ ଅନେକ ସାଧୁ ସନ୍ନ୍ୟାସୀ, ବ୍ରାହ୍ମଣ ଆସିବେ। ତାଙ୍କର ପଦଧୌତ ଏବଂ ଆତିଥ୍ୟ କାର୍ଯ୍ୟ ବହନ କରିବୁ ଭଉଣୀମାନଙ୍କୁ ସାଂଗରେ ଧରି।" ସଂପୂର୍ଣ୍ଣ ରୂପେ ନ ହେଉ ପଛେ କିଛିକାଂଶରେ ଏସବୁ କାର୍ଯ୍ୟ ସମାପନ କରିବାରେ ସକ୍ଷମ ହୋଇଥିଲୁ। ସେତେବେଳେ ମୋର ଏତେ ଦାୟିତ୍ୱଜ୍ଞାନ ନଥିଲା। ତଥାପି କାହିଁକି କେଜାଣି ବାବାଙ୍କର ପ୍ରଗାଢ଼ ବିଶ୍ୱାସ ଦେଖି ମୋତେ ଲାଗେ ହଁ, ମୁଁ ଏହି କାର୍ଯ୍ୟଟି କରିପାରିବି। ସେ ଆମକୁ ଦାୟିତ୍ୱ ଦେଉଥିଲେ ଆମର କାର୍ଯ୍ୟଦକ୍ଷତା ବୃଦ୍ଧି କରାଇବା ପାଇଁ, ଯାହାକି ମୁଁ ଆଜି ହୃଦୟଙ୍ଗମ କରୁଛି।

ଇତି ମଧ୍ୟରେ ତାଙ୍କ ସଂସ୍କାରର ଛାୟା ତଳେ ରହି ମୁଁ ଛୋଟରୁ କେତେବେଳେ ବଡ଼ ହୋଇଗଲି ଜାଣି ହିଁ ପାରିଲିନି। କିନ୍ତୁ ତାଙ୍କ ପାଖରେ ବସିଲେ ଅନୁଭବ କରେ ମୁଁ ତାଙ୍କର ସେହି ଛୋଟ ଝିଅ। ୨୦୧୪ ମସିହାରେ ସେ ତାଙ୍କ ପିତାଙ୍କୁ ଦେଇଥିବା ବଚନକ୍ରମେ ମୋତେ କନ୍ୟାଦାନ କରିଥିଲେ। ବାହାଘର ଦିନ ମୁଁ ବାବାଙ୍କୁ ପ୍ରଥମ ଥର ପାଇଁ ଧୈର୍ଯ୍ୟହରା ହୋଇ କାନ୍ଦିବାର ଦେଖିଥିଲି। ଜୀବନରେ ଯେତେ ସମସ୍ୟା ଆସିଲେ ମଧ୍ୟ ସେ ଧୈର୍ଯ୍ୟ ସହ ତାକୁ ସାମ୍ନା କରିବାର ମୁଁ ଦେଖି ଆସିଛି ଏବଂ ନିଜର ଦୁଃଖକୁ ପ୍ରକାଶ ହେବା ପାଇଁ ଦିଅନ୍ତି ନାହିଁ। କାରଣ ତାଙ୍କର ଭାବଧାରା ସାଂସାରିକ ଭାବଧାରାଠାରୁ ଊର୍ଦ୍ଧ୍ୱରେ ରହି ଭକ୍ତିବାଦ ଚିନ୍ତନରେ ପୂର୍ଣ୍ଣ ଥିଲା। ଜୀବନର ଏକ ନୂତନ ଅଧ୍ୟାୟ ଆରମ୍ଭ କରିବା ପୂର୍ବରୁ ସେ ମୋତେ ଉପଦେଶ ଦେଇଥିଲେ ଯେ, "ତୋ'ର ଶାଶୁମା', ଶ୍ୱଶୁର ହେଲେ ତୋ' ପାଇଁ ଠାକୁର। ତାଙ୍କୁ ସର୍ବଦାବେଳେ ପୂଜିବୁ। ସ୍ୱାମୀ ତୋ'ର ଦେବଅଂଶୀ। ବହୁତ ଭଲ ମଣିଷ। ତାଙ୍କର ସବୁବେଳେ ଯତ୍ନ ନେବୁ।" ସାଂପ୍ରତିକ ସମାଜରେ ବହୁତ କମ ଝିଅଙ୍କ ପିତା ଏହିପରି ଉପଦେଶ ଦେଇ କନ୍ୟାକୁ ବିଦାୟ ଦେଉଛନ୍ତି। ମୁଁ ବହୁତ ଭାଗ୍ୟବାନ ଯେ, ସେଭଳି ଜଣେ ଦେବତୁଲ୍ୟ ବ୍ୟକ୍ତି ମୋତେ କନ୍ୟାଦାନ କରିଛନ୍ତି। ବାଲ୍ୟାବସ୍ଥାରୁ ଆରମ୍ଭ କରି ବିବାହ ପର୍ଯ୍ୟନ୍ତ ପ୍ରତିଟି କ୍ଷେତ୍ରରେ ବାବା ମୋତେ ସାହସ, ସତ୍‌ମାର୍ଗ ଏବଂ ଉପଦେଶ ଦେଇ



Digitized by PPRACHIN, SOA

ଗଢ଼ିତୋଳିଲେ ଏବଂ ଏକ ମନ୍ଦିର ସ୍ୱରୂପ ପରିବାରରେ ଦେଇ ମୋର ଭବିଷ୍ୟତକୁ ଉଜ୍ଜ୍ୱଳ କରାଇଲେ। ମୋର ପୁତ୍ର ଶିବାଂଶ ପଣ୍ଡା ୨୦୧୭ ମସିହାରେ ଜନ୍ମ ହେଲା ପରେ ତାଙ୍କର ଖୁସିର ଠିକଣା ରହିଲା ନାହିଁ। ଶ୍ରଦ୍ଧାରେ ସେ ତାକୁ 'ପଣ୍ଡା ବାବୁ' ବୋଲି ଡାକନ୍ତି। ପୁତ୍ରର ଅନ୍ନପ୍ରାସନ ବିଧି ମୁଁ ଶ୍ରୀ ଶ୍ରୀ ମଦନମୋହନ ମଠରେ କରାଇଥିଲି ଏବଂ ତାଙ୍କର ଆଶୀର୍ବାଦ ଲାଭ କରିଥିଲୁ। ପୁତ୍ରର ବ୍ରତୋପନୟନ କାର୍ଯ୍ୟ ଦେଖିବାକୁ ତାଙ୍କର ବହୁତ ଇଚ୍ଛା ଥିଲା। ସବୁବେଳେ ମୋତେ କହିବେ, "ମୁଁ ବଂଚିପାରିବି ତ ଏତେ ବର୍ଷ।" ମୁଁ ଏକଥା ଶୁଣି ହସିଦିଏ ଏବଂ ତାଙ୍କୁ କୁହେ, "ବାବା ତୁମର କିଛି ବି ହବନି। ଏମିତି କାହିଁକି ଭାବୁଛ। ଆହୁରି ବହୁତ ବର୍ଷ ତୁମେ ଆମ ସହ ରହିବ।" କିନ୍ତୁ କେବେ ସ୍ୱପ୍ନରେ ବି ଭାବି ନଥିଲି ଯେ ତାଙ୍କ କଥା ସତ ହେବ ଆଉ ସେ ଆମକୁ ଏତେ ଶୀଘ୍ର ଛାଡ଼ି ଚାଲିଯିବେ। ମଠକୁ ଗଲେ ପାଖରେ ଡାକି ବସାନ୍ତି ଏବଂ ମୋର ଅଭିଜ୍ଞତା ନ ଥିଲେ ସେ ମଠ କାର୍ଯ୍ୟଠାରୁ ଆରମ୍ଭ କରି ସ୍କୁଲ ଜୀବନ, ପାରିବାରିକ ଜୀବନ, ବିଭିନ୍ନ ସାଂଗଠନିକ କାର୍ଯ୍ୟ ବିଷୟରେ ଆଲୋଚନା କରନ୍ତି। ବୁଝିପାରେନା ବାବା ଏସବୁ କାହିଁକି ସାଂଗଠନିକ କାର୍ଯ୍ୟ ବିଷୟରେ ଆଲୋଚନା କରନ୍ତି। ବୁଝିପାରେନା ବାବା ଏସବୁ କାହିଁକି କହୁଛନ୍ତି। ଆଜି ବୁଝୁଛି ହୁଏତ ସେ ଜାଣିପାରୁଥିଲେ ଯେ, ତାଙ୍କ ପାଖରେ ଖୁବ୍ କମ୍ ସମୟ ଅଛି ଅନ୍ୟମାନଙ୍କ ସହ ଜୀବନ ବିତାଇବା ପାଇଁ।

୨୦୨୨ ମସିହା ମେ ମାସ ଖରାଦିନ ଛୁଟିରେ ମୁଁ ଓ ମୋର ସାନ ଭଉଣୀ ଖଣ୍ଡିତର ଯାଇଥାଉ। ମୋର ଓ ସାନ ଭଉଣୀର ପୁଅକୁ ଧରି ମୁଁ ଅଗଣାରେ ସନ୍ଧ୍ୟା ସମୟରେ ପାଠ ପଢ଼ାଉଥାଏ। ବାବା ଆସି ପହଞ୍ଚିଲେ ଓ ଆମ ପାଖରେ ବସିଲେ। ଛୋଟପିଲାଙ୍କୁ ଦେଖି ସେ ସବୁ ଦୁଃଖ କଷ୍ଟ ଭୁଲିଯାଆନ୍ତି। ପାଠ ପଚାରିଲେ। ଦୁହିଁଙ୍କୁ ଓଡ଼ିଆରେ ନାମ ଲେଖିବାକୁ କହିଲେ। ଦୁହେଁ ଲେଖିପାରିଲେ ନାହିଁ। ବାବା କହିଲେ, "ତୁ ପିଲାଙ୍କୁ ନାମ ଲେଖିବା ଶିଖା ଆଗେ। ଆଜି ତୁମ 'ପଣ୍ଡା ବାବୁ' ନାମ ଲେଖିବା ଶିଖିଗଲାଣି ହେଲେ ଦେଖିବାକୁ ତୁମେ ଆଉ ନାହଁ ବାବା। ସେଦିନ ସେ ଦୁହେଁ ତାଙ୍କ ଗାମୁଛା ଧରି ବହୁତ ଖେଳିଲେ। ବାବା ବହୁତ ଖୁସି ହୋଇ ହସିଲେ ଓ ତା'ପରେ ପ୍ରାୟ ୧୫ ମିନିଟ୍ ଭଳି ପୂରା ନିରବ ହୋଇ ବସିଲେ। କ'ଣ ଭାବୁଥିଲେ ଆଉ କିଛି କହିଲେ ନାହିଁ। ତାହା ଥିଲା ବାବାଙ୍କ ସହ ମୋର ଶେଷ ସାକ୍ଷାତ୍। ଝୁଲଣରେ ଯାଇ ଦେଖା କରିବି ବୋଲି ଆଶା ଥିଲା।



Digitized by PPRACHIN, SOA

ମାତ୍ର ଈଶ୍ୱରଙ୍କ ଇଚ୍ଛା ନଥିଲା। ୧ମ ଝୁଲଣ ଦିନ ସେ ଠାକୁରଙ୍କ ନିକଟରେ ଅଳ୍ପ ସମୟ ବସିଲେ ଏବଂ ଅସୁସ୍ଥ ହୋଇପଡ଼ିଲେ। ୨ୟ ଦିନ ସେ ଏକ ଘରୋଇ ଚିକିତ୍ସାଳୟରେ ଚିକିତ୍ସିତ ହେଲେ। ଶେଷ ଝୁଲଣ ଦିନ ଖବର ଆସିଲା ଯେ, ତାଙ୍କ ଅବସ୍ଥା ଗୁରୁତର। ଆମେ ଚିକିତ୍ସାଳୟକୁ ଗଲୁ। ମାତ୍ର ପହଞ୍ଚିଲାବେଳକୁ ବାବା ଆଉ ନାହାଁନ୍ତି। ଶେଷଥର ପାଇଁ ତାଙ୍କ ଓଠରୁ ଦୁଇ ପଦ କଥା ଶୁଣିବାର ସୁଯୋଗ ମୁଁ ହରାଇଲି। ତାଙ୍କ ଦର୍ଶନ ପାଇପାରିଲି ନାହିଁ। ତାହା ହିଁ ମୋ' ଜୀବନର ସବୁଠାରୁ ବଡ଼ ଦୁଃଖ ଏବଂ ଜୀବନ ସାରା ଏ ଦୁଃଖ ରହିବ। ସମସ୍ତ ଗ୍ରାମବାସୀ ଶେଷ ଝୁଲଣ ଦିନ ବ୍ୟାକୁଳ ହୋଇ ଅପେକ୍ଷା କରିଥାନ୍ତି ଯେ, ମହନ୍ତ ମହାରାଜ ଆସିବେ ଏବଂ ବିଦାୟ ସଂଗୀତ ହାରମୋନିୟମ ବଜାଇ ଗାଇବେ। ମାତ୍ର ଈଶ୍ୱରଙ୍କ ଇଚ୍ଛା ଥିଲା ଅଲଗା। ୨୦୨୨ ମସିହା ଅଗଷ୍ଟ ୧୨ ତାରିଖର ଝୁଲଣ ପୂର୍ଣ୍ଣିମାରେ ସନ୍ଧ୍ୟା ୬ଟା ସମୟରେ ଶ୍ରୀ ମଦନମୋହନ ଦୋଳିକୁ ବିଜେ କଲେ ଏବଂ ସେହି ସମୟରେ ବାବାଙ୍କ ଆତ୍ମା ବହ୍ମଲୀନ ହୋଇଗଲା। ଶେଷରେ ଆସିଲା ତାଙ୍କ ମରଶରୀର। ସମସ୍ତ ଜନତା ତଟସ୍ଥ। ମଠର ଝୁଲଣ ଉତ୍ସବକୁ ସେ ବହୁତ ଭଲପାଆନ୍ତି ଏବଂ ସେହି ଉତ୍ସବରେ ଠାକୁରେ ତାଙ୍କୁ ମୁକ୍ତି ପ୍ରଦାନ କଲେ।

ମୋ' ଜୀବନର ପ୍ରଥମ ଉପଦେଷ୍ଟା ରୂପେ ବାବାଙ୍କ ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ। ଆଜି ମୁଁ ଯାହା ବି ହୋଇପାରିଛି ଏବଂ ଯେଉଁ ସ୍ଥିତିରେ ଅଛି ସବୁ ତାଙ୍କର ପ୍ରୟାସ ଏବଂ ଆଶୀର୍ବାଦର ଫଳସ୍ୱରୂପ। ମୋର ଦୁର୍ଭାଗ୍ୟ ବାବାଙ୍କୁ ମୁଁ ଏତେ ଶୀଘ୍ର ହରାଇଲି। ଶେଷଥର ପାଇଁ କଥା ପଦେ ହୋଇପାରିଲି ନାହିଁ, ଏ ଦୁଃଖ ମୋ'ପାଇଁ ଅସହ୍ୟ। ଆଜି ମଧ୍ୟ ମଠକୁ ଗଲେ ଆଖି ବାରମ୍ବାର ଖୋଜେ ବାବାଙ୍କର ଚଉକି ଉପରେ ବସି ହସି ହସି କଥା କହୁଥିବାର ସେ ରୂପ। ହେଲେ ପାଏ ନାହିଁ। ଶ୍ରୀ ଶ୍ରୀ ମନମୋହନଙ୍କ ନିକଟରେ ଏତିକି ପ୍ରାର୍ଥନା ଯେ, ଯେତିକି ଦୁଃଖ, କଷ୍ଟ, ଯନ୍ତ୍ରଣା ସେ ଏହି ମର୍ତ୍ତ୍ୟଧାମରେ ଭୋଗ କରିଛନ୍ତି ଏବଂ ଦେବ ସେବାରେ ନିଜକୁ ନିୟୋଜିତ କରିଛନ୍ତି ତାହାର ଫଳସ୍ୱରୂପ ଭକ୍ତ ଓ ଭଗବାନ ଏକାକାର ହେଲାଭଳି ତାଙ୍କୁ ନିଜ ସହ ଲୀନ କରି ପରମାନନ୍ଦ ପ୍ରଦାନ କରନ୍ତୁ। ସେହି ପୁଣ୍ୟାତ୍ମାଙ୍କୁ ମୋର କୋଟି କୋଟି ପ୍ରଣାମ। ଜୀବନରେ କରିଥିବା ଦୋଷ ତ୍ରୁଟିକୁ ସଗୁଣେ କ୍ଷମା କରିବେ।

*ଜୟଶ୍ରୀ ଭରତୀ (ବଡ଼ ଝିଅ)*
*ବାରବାଟୀ*





Digitized by PPRACHIN, SOA

# ମୋ' ଅନ୍ତରର କଥା



ଶ୍ରୀତମ୍ ପଣ୍ଡା (ମିତନ)

୨୦୧୭ ମସିହାରେ ମୁଁ ଖଣ୍ଡିତର ମଠରେ ମଦନମୋହନଙ୍କ ସେବାରେ ଆସି ରହିଲି। ଆମ ଘର କୋରେଇ ବ୍ଲକ୍‌ର ରାଉତରାପୁରରେ। ଘରେ ବାପା, ମା', ଭାଇମାନଙ୍କୁ ଛାଡ଼ି ମୁଁ ଖଣ୍ଡିତରରେ ରହିଲି। ମଠରେ ମହନ୍ତ ଯିଏ ଥିଲେ ଶ୍ରୀଯୁକ୍ତ ଶିଶିର କୁମାର ଭାରତୀ ଗୋସ୍ୱାମୀ। ସେ ମୋତେ ବହୁତ ସ୍ନେହ ଆଦର କରନ୍ତି। ବାପା, ମା'ର ସ୍ନେହ ମୋତେ ଦିଅନ୍ତି। ସେତେବେଳେ ମୋର ବୟସ ୧୭/୧୮ ବର୍ଷ, ପିଲା ବୁଦ୍ଧି ମୁଁ ଛାଡ଼ି ପାରିନଥିଲି। ମୁଁ ନିତ୍ୟକର୍ମ ସାରି ମଦନମୋହନଙ୍କ ପୂଜା ସାରି ମୁଁ ବାବାଙ୍କୁ ଖାଇବା ପାଇଁ ଯୋଗାଡ଼ କରିଥାଏ। ତା' ସହିତ ଅନ୍ୟ ସେବା ସାରି ନୀତି ବସାଏ ଠାକୁରଙ୍କ ପାଇଁ। ଏହି ହେଲା ମୋର ନିତିଦିନିଆ କାର୍ଯ୍ୟ। ମଠ ଭିତରେ ବାବା ବସି ନାମ ଜପ କରନ୍ତି। ସବୁ ମାସ ଏକ ତାରିଖରେ ବାବା ଗୀତା ପଢ଼ି ନାମ ଜପି ସାରିଲାବେଳକୁ ଦିନ ୧ଟା ବାଜିଯାଏ। ମୁଁ ତରତରରେ ବାବାଙ୍କ ପାଇଁ ପଣା କରି ପିଇବାକୁ ଦିଏ। ସବୁବେଳ ପାଇଁ ମୋତେ ଡାକୁଥିବେ ପାଖକୁ। ତାଙ୍କର ଯାହା ଦରକାର ହେବ ମୋତେ ପଠାଇ ଆଣନ୍ତି। ମନରେ କିଛି ବି ଭାବନ୍ତି ନାହିଁ। ମୋତେ ସେ ପୁତ୍ରର ସ୍ନେହ ଦିଅନ୍ତି। ମୁଁ ମୋ' ବାପା, ମା'କୁ ବି ଭୁଲିଯାଏ ତାଙ୍କର ମିଠା ଏବଂ ମଧୁର ବଚନରେ। ମୁଁ ଭାବେ ଆର ଜନ୍ମରେ ମୋର ବାପା ଥିଲେ। ତେଣୁ ମୁଁ ବି ବାବାଙ୍କୁ ବହୁତ ଭଲପାଏ, ମୋ' ବାପାଙ୍କ ପରି। ମୁଁ ବହୁତ ସମ୍ମାନ କରେ। ତାଙ୍କର ଖାଇବା, ପିଇବା, ଶୋଇବା ସବୁକିଛି ମୁଁ ବୁଝିଥାଏ। ମୁଁ ଭାବେ ଠାକୁରଙ୍କର ସେବା କରିବା ଯାହା ବାବାଙ୍କ ସେବା କରିବା ଏକାକଥା।

ମଠରେ ପ୍ରତି ମାସ ପୂନେଇଁର ଗୀତାପାରାୟଣ ହୁଏ। ଜନ୍ମାଷ୍ଟମୀ, ଗଣେଶ ପୂଜା, ସରସ୍ୱତୀ ପୂଜା, ଦୁର୍ଗାପୂଜା, ମେଳଣ, କାର୍ତ୍ତିକ ମାସର ହବିଷ, ଝୁଲଣଯାତ୍ରା ୫ ଦିନ କାଳ। ମଦନମୋହନ ରାତିରେ ଦୋଳିକି ଆସିବେ। ଏମିତି ସବୁ ପୂଜା ପାର୍ବଣ। ଏହି ସବୁ ପୂଜାପର୍ବ ବାବା ସବୁ ତୁଲାଉ ଥିଲେ। ମୁଁ ସହଯୋଗ କରି ପୂଜା କରୁଥିଲି। ପୂଜା ପାର୍ବଣ ହେଲେ ବାବା ଖିଆପିଆ ସବୁ



Digitized by PPRACHIN, SOA

କିଛି ଭୁଲିଯାଉଥିଲେ। ଯାହା ମୁଁ ଅଂଗେ ଲିଭାଇଛି। ଆଜି ବାବା ନାହାଁନ୍ତି, ତାଙ୍କ ସ୍ଥାନ ଶୂନ୍ୟ ପଡ଼ିଛି। ଆଜି ମୋ' ଅନ୍ତରଟା ମାନୁ ନାହିଁ ସେ ନାହାଁନ୍ତି ବୋଲି। ସକାଳୁ ରାତ୍ରି ଯାଏ ମୋତେ ଡାକନ୍ତି- ମଦନ! କୁଆଡ଼େ ଗଲୁ। ଏହି ଡାକ ମୋତେ ବାରମ୍ବାର ଶୁଭିଯାଉଛି। ମଦନମୋହନଙ୍କୁ ପୂଜା କଲାବେଳେ ବାବାଙ୍କ ସମାଧିକୁ ମୁଁ ଅନେକ ସମୟ ଚାହିଁ ରହିଛି ଏବଂ ପାଖକୁ ଯାଇ ପଚାରୁଛି କୁଆଡ଼େ ଗଲ ବାବା। ଦୀର୍ଘ ୧୭ ମସିହାରୁ ୨୨ ମସିହା ଯାଏ ମୁଁ ତାଙ୍କ ସହିତ ଜଡ଼ିତ ଥିଲି। ବ୍ରତଘର ନାମ ଦେବା ପାଇଁ ଯୁଆଡ଼େ ଯିବେ, ସାଂଗରେ ବାରିକ, ବ୍ରାହ୍ମଣ ଏବଂ ତାଙ୍କ ସହିତ ମୋତେ ନେଇ କି ଯିବେ। ମୁଁ ନ ଗଲେ ତାଙ୍କୁ ଭଲ ଲାଗିବ ନାହିଁ। ଏହି ନାମକରଣରେ ମୁଁ ଅନେକ ଜାଗା ଯାଇଛି। ବନ୍ଧୁ ବାନ୍ଧବ ଘର ମଧ୍ୟ ଯାଇଛି। ସବୁ ବନ୍ଧୁ ବାନ୍ଧବ ମୋତେ ବହୁତ ଭଲପାଆନ୍ତି ଏବଂ ସ୍ନେହ ଆଦର କରନ୍ତି। ଏମିତି ଆନନ୍ଦର ସହିତ ମୁଁ ରହିଥିଲି।

ଏମିତି କେତେ ଥର ବାବାଙ୍କର ଦେହ ଖରାପ ହୋଇଛି ଏବଂ ସେ ଭଲ ହୋଇଯାଇଛନ୍ତି। କିନ୍ତୁ ଏଥର ତାଙ୍କର ଶେଷଦିନ ଆସିବ ବୋଲି ମୁଁ କେବେ ଭାବି ନଥିଲି। କେତେ ଆନନ୍ଦର ସହିତ ଝୁଲଣ ପୂର୍ଣ୍ଣିମା ୫ ଦିନ ହେବ ବୋଲି ଆୟୋଜନ କରିଥିଲେ। ଆମେ ସବୁ ପପୁଭାଇ, ବାବୁଭାଇ ସମସ୍ତେ ମିଶି ସହଯୋଗ କରୁଥିଲୁ। ଝୁଲଣ ଆରମ୍ଭ ହେଲା ତା'ପରେ ବାବାଙ୍କୁ ଜରହୋଇ ଗୋଡ଼ ଫୁଲିଗଲା। ତା'ପରେ ତାଂକୁ କଟକ ନେଇଗଲୁ। ସାଂଗରେ କଟକରେ ମୁଁ ରହିଲି ଏବଂ ବାବାଙ୍କ ସାନଭାଇ ରହିଲେ। ଝୁଲଣ ଦାୟିତ୍ୱରେ ଥିଲେ ପପୁଭାଇ ଏବଂ ବାବୁଭାଇ। ମଦନମୋହନଙ୍କର ଏହି ମହୋତ୍ସବ ଚାଲିଛି, ଆମେ କଟକରେ ବାବାଙ୍କୁ ଆଡ୍‌ମିସନ କରି ରହିଲୁ। କିନ୍ତୁ ମଦନମୋହନ ତାଙ୍କ ପର୍ବରେ ବାବାଙ୍କୁ ତାଙ୍କ ପାଖକୁ ନେବେ ବୋଲି ବାବାଙ୍କର ହାର୍ଟଚୋକ୍ ହୋଇଗଲା ପୂର୍ଣ୍ଣିମା ଦିନ। ୭୦ ବର୍ଷ ବୟସରେ ସନ୍ଧ୍ୟା ୬ଟା ୩୦ ମିନିଟ୍‌ରେ। ଆକାଶରୁ ଛିଡ଼ି ପଡ଼ିଲା ପରି ମୋର ମନେ ହେଲା। ମୁଁ ମଦନମୋହନଙ୍କୁ ପ୍ରାର୍ଥନା କଲି ପ୍ରଭୁ ଆପଣ କ'ଣ ଏହି ଦୟା କଲେ! ବାବା ଆଉ ମଠକୁ ଆପଣଙ୍କ ଉତ୍ସବରେ ଯୋଗ ଦେଇ ପାରିଲେ ନାହିଁ। ଏତେ ଦୟାଳୁ ଠାକୁର, ତାଙ୍କରି ଉତ୍ସବରେ ବାବାଙ୍କୁ ତାଙ୍କ ପାଖକୁ ନେଇଗଲେ। ତାଙ୍କର ଅମର ଆତ୍ମାର ସଦ୍‌ଗତି ପାଇଁ ମୁଁ ମଦନମୋହନଙ୍କୁ ପ୍ରାର୍ଥନା ଜଣାଉଛି।

*ଖଣ୍ଡିତର ମଠ*

●●●





Digitized by PPRACHIN, SOA

# The great teacher in my life

Pragyan Goswami



By virtue of divine force of god we born, live, grow and die when life is in danger a super natural force come forward and save us. Time comes and time past but the memory touches our mind and heart. During my early childhood I come contact with an identical spiritual man like god who guide me the path of true, Successful life and motivated me to go through a spiritual way of living. Now I would like to describe few words about his remarkable achievements in social educational and spiritual fields in society. This spiritual man named late Mahant Maharaj Sisir kumar Bharati Go-swami well known as Mahant of village Khanditar which is



Digitized by PPRACHIN, SOA

situated on the bank of river Kharasrota in Jajpur district. He dedicated his life as a teacher at khanditar High School since last long. He was well known as on educationist, Social worker and spiritual leader in society. Everyone loved to him for his dedication towards teaching social words, spiritual advices and so many. On ethic of divine of duty principles he inspired everyone to be dutiful and punctual at any cost. We should always realize what to do and what not do? He always engaged himself and motivated others to develop the heritage of Sanyasi Matha. All arrangements were made to look after the beautiful Sanysi Matha at Khaditar village consisted large areas. Last year (2022) he had been pleased to give me GURU-MANTRA the moral value of life for a real, brightness and glorious future on occasion of my thread ceremony. On the eve of his first death anniversary I pray to god for his happiest immortal soul.

**DAV Public School**
**Gurugram, Haryana**





Digitized by PPRACHIN, SOA

# ମରି ବି ତୁମେ ଅମର

ଶ୍ରୀ ବୈରାଗୀ ଚରଣ ଘଡ଼େଇ

ଖରସ୍ରୋତା କୂଳେ ଖଣ୍ଡିତର ଗ୍ରାମେ
ଜନମି ଥିଲ ଶିଶିର,
ପିତା ନିତ୍ୟାନନ୍ଦ ଜନନୀ ମାଧବୀ
ତୁମେ ସନ୍ତାନ ତାଙ୍କର।
ବାଲ୍ୟକାଳୁ ଥିଲ ଅତୀବ ନିରୀହ
ଅଧ୍ୟୟନେ ସଦା ମନ,
ରହିଥିଲା ତୁମ ଅନ୍ତରର ମଧ୍ୟରେ
ମଦନ ମୋହନ ନାମ।
ଶିକ୍ଷା ସମାପନ ପରେ ଆଦରିଲ
ଶିକ୍ଷକତା ମଧୁବନେ,
ଛାତ୍ରଛାତ୍ରୀଙ୍କର ଉନ୍ନତି କାମନା
ରହିଥିଲା ତୁମ ମନେ।
ଉଣେଇଶ ଶହ ସତସ୍ତରୀ ସାଲେ
ବିବାହ ତୁମର ହେଲା,
ବାସନ୍ତୀ ତୁମର ଅର୍ଦ୍ଧାଙ୍ଗିନୀ ହେଲେ
ଚାରି ଦଶନ୍ଧି ବିତିଲା।
ସେ ବର୍ଷ ତୁମେ କୋଳଥଳ ଠାରେ
ହେଲ ପ୍ରଧାନଶିକ୍ଷକ,
ତିନି ଦଶନ୍ଧିରୁ ଅଧିକ ସମୟ
ରଖି ଶିକ୍ଷାର ମହକ।



Digitized by PPRACHIN, SOA

ଛାତ୍ରବତ୍ସଳ ଯେ ଥିଲା ତୁମ ମନ

ଛାତ୍ରଙ୍କ ଉନ୍ନତି ପାଇଁ,

ସାଧନାରେ ତୁମେ ନୀରବ ସାଧକ

ରହିଛ ଅମର ହୋଇ ।

ମଦନ ମୋହନ ତୁମର ଆରାଧ୍ୟ

ମଠର ଉନ୍ନତି ପାଇଁ,

କରିଅଛ କର୍ମ ସଦା ସରବଦା

ତାଙ୍କ ପାଦେ ମନ ଦେଇ ।

ବିଧିର ବିଧାନ କେ କରିବ ଆନ

ଭାଗ୍ୟେ ଯାହା ଲେଖାଅଛି,

ଚାଲିଗଲ ତୁମେ ବିଗତ ବର୍ଷରେ

କାଲି ପରି ଲାଗୁଅଛି ।

ସେ ପୁରରେ ତୁମେ ରୁହହେ ଶାନ୍ତିରେ

ଏତିକି ମିନତି ମୋର,

କାଳଜୟୀ ତୁମେ ଶ୍ରଦ୍ଧେୟ ଶିଶର

ମରିବି ତୁମେ ଅମର ॥

*ଅବସରପ୍ରାପ୍ତ ପ୍ରଧାନଶିକ୍ଷକ*

*ମୋ- ୯୪୩୭୮୬୭୦୪୩*





Digitized by PPRACHIN, SOA

ସ୍ୱର୍ଗତ ଶିଶିର କୁମାର ଭାରତୀ ଗୋସ୍ୱାମୀ (ମଦନ ମୋହନ

ଖଣ୍ଡିତର ମଠ)ଙ୍କ ପ୍ରଥମ ପୁଣ୍ୟତିଥି ଉପଲକ୍ଷେ

# ଅଭୁଲା ମଣିଷ

ବୀରେନ ଆରଣ



ଆକାଶେ ଧ୍ରୁବତାରା ସମ ଆବିର୍ଭାବ ହେଲ ଖଣ୍ଡିତର ଗ୍ରାମେ
ଉଜ୍ଜ୍ୱଳ ଆଲୋକ ବିକିରଣେ ଆଲୋକିତ କଲ ମମତା ପ୍ରେମେ।
ବିଶ୍ୱ ଗୁରୁ ଶଙ୍କରାଚାର୍ଯ୍ୟ ସଂପ୍ରଦାୟ ଭାରତୀ ଉପାଧିଧାରୀ
ନିଜର ବଂଶ କରି ଉଜ୍ଜ୍ୱଳ କୀର୍ତ୍ତି ରଖିଲେ ଯୁଗ ଯୁଗ ଧରି।
ଉଚ୍ଚଶିକ୍ଷା ଲାଭ କରି ସମାଜେ ବିଦ୍ୟା ଦାନକୁ ପାଥେୟ କଲ
ପ୍ରଧାନଶିକ୍ଷକ ନିଯୁକ୍ତି ପାଇ ଶିକ୍ଷା ଦାନରେ ରତ ରହିଲ।
ସହକର୍ମୀ, ଛାତ୍ରଙ୍କୁ ମମତା ବନ୍ଧନେ କରିଥିଲ ଆପଣାର
କେତେ ଯେ ପ୍ରଶଂସା ପତ୍ର ସାଉଁଟି ଥିଲ ହିସାବ ନାହିଁ ତାହାର।
ଗଲ ଅଫେରା ରାଇଜେ ଧରାପୃଷ୍ଠେ ନ ମିଳେ ଦର୍ଶନ ତୁମର
ଝୁରୁଛନ୍ତି ଛାତ୍ରକୁଳ, ସହକର୍ମୀବୃନ୍ଦ ଝୁରୁଛି ଏ ଅଂଚଳ।
ମଦନ ମୋହନଙ୍କ କୃପାକୁ 'ମଠ ମହନ୍ତ' ବହି ଦେଲ ପ୍ରାପ୍ତ
ଅସୀମ ଧୈର୍ଯ୍ୟ, ସହିଷ୍ଣୁତା ଗୁଣେ କରିଗଲ ମଠ ବିକଶିତ।
ମଠ ଓ ମନ୍ଦିର ପୁନଃ ଉଦ୍ଧାର କାର୍ଯ୍ୟରେ କର୍ମବୀର ସାଜିଲ
ଶ୍ରୀ ମଦନ ମୋହନ ଝଟକୁଛନ୍ତି ବିଦ୍ୟୁତ ସମ ଝଲମଲ।
ଦର୍ଶନାଭିଳାଷି ମନ୍ଦିର ଆସିଲେ ମହନ୍ତଙ୍କୁ ମନେପକାନ୍ତି
ଯୁଗ ଯୁଗ ବିତି ଯିବ ସରବେ ତୁମ କୀର୍ତ୍ତିକୁ ଭାବୁଛନ୍ତି।
କଳ୍ପିତ ମନର ବାସନା ପୂରଣାର୍ଥେ କର୍ମ ତତ୍ପର ହୋଇଲ
ରଂଗ ତୂଳିରେ କ୍ରମିକ ବିଶ୍ୱଗୁରୁ ନାମ ଗୃହ କାନ୍ଥେ ଲେଖାଇଲ।
ଯେତେ ଦିନ ମହାଭାରତରେ ଚିତ୍ରକଳା ଅଂକିତ ରହିଥିବ
ଦର୍ଶକଙ୍କର ଚକ୍ଷୁର ପଲକ ଦୃଷ୍ଟି ସଦା ଲାଖି ରହିଥିବ।



Digitized by PPRACHIN, SOA

ଜନ୍ମ ପରେ ମୃତ୍ୟୁ, ମୃତ୍ୟୁ ପରେ ଜନ୍ମ ଏହା ତ ଗୀତାର ପ୍ରମାଣ
ଏହା ସତ୍ୟ ଧରାରେ ଜନ୍ମ ନେଇଛ ଆମକୁ ଅଜଣା ସେ ସ୍ଥାନ।
ଦିନ, ମାସ ଓ ବରଷ ବଦଳେ, ଅତୀତ ବଦଳେ ଚିରନ୍ତନ
ବଦଳେ ନାହିଁ ସେହି ପୁରୁଣା ସଂପର୍କ ଏହା ହିଁ ଦୃଢ଼ ବଚନ।
ଶିକ୍ଷାଦାତା ଗୁରୁ, ଦୀକ୍ଷା ଦାତା ଗୁରୁ ସମାଜେ ହେଲ ପରିଚିତ
ଜନମ ସ୍ଥାନକୁ ମନ୍ଦିର ମାଳିନୀ ଗ୍ରାମରେ କଲ ପରିଣତ।
ସମାଜକୁ ଶିକ୍ଷା ଦେଇଛ ମାଧ୍ୟମରେ ଉଚ୍ଚାରଣ, ଆଚରଣ
ସଦାସ୍ମିତ ହାସେ ମଧୁର କୋମଳ ବାଣୀ ନଶୁଣିବ ଏ କର୍ଣ୍ଣ।
ଚାହୁଁ ଚାହୁଁ ବରଷେ ବିତିଲା ଆସିଛି ବାର୍ଷିକ ଶ୍ରାଦ୍ଧ ଦିବସ
ନିମନ୍ତ୍ରିତ ବଂଧୁବର୍ଗ ଯୋଗ ଦିଅନ୍ତି ମନେ ଭରି ଅବସୋସ।
ମୁଁ ଥାଉ ଥାଉ ମୋ' ଆଗରୁ ଧରାପୃଷ୍ଠୁ ତୁମକୁ ନେଲା ଦଇବ
ତୁମରି ସ୍ମରଣିକା ଗୀତିକା ଲେଖୁଛି, ମୋ' ପାଇଁ କିଏ ଲେଖିବ।
ଶ୍ରୀ ମଦନମୋହନ ସଦ୍‌ଗତି ଦିଅନ୍ତୁ ଏହା ତାଙ୍କୁ ପ୍ରାର୍ଥନା
ଯେଉଁଠାରେ ଅଛ ସୁଶାନ୍ତିରେ ଥାଅ ଏହା ମୋ' ମନର କାମନା ॥

ଶ୍ୱଶୁର
ଖଡ଼ିମାହାରା







Digitized by PPRACHIN, SOA

# ଅଭୁଲା ଅତୀତ

ଅନାଦି ଚରଣ ସାହୁ

ସମୟ ବୁଝେନା ଦିନ ଅବା ରାତି
କାଳ ବୁଝେ ନାହିଁ ବେଳ,
ଜୀବନଟା ଏଠି ପାଣି ଫଟୋକାଟେ
ସବୁ ସେ ପ୍ରଭୁଙ୍କ ଖେଳ।
ଜୀବନଟା ଗୋଟେ ରଂଗମଂଚ ଏଠି
ଆମେ ସବୁ କଳାକାର,
ଅଭିନୟ ସାରି ବାହୁଡ଼ିବା ପୁଣି
ଧୀରେ ଧୀରେ ଆରପୁର।
ଅଫେରା ବାଟର ବାଟୋଇ ସାଜି କି
ଚାଲିଗଲ ସାର୍ ତୁମେ,
ଝୁରୁଛି ତୁମକୁ ଏ ଗାଁ'ର ମାଟି
ମନେପଡ଼େ ସବୁ ଦିନେ।
ଝୁରୁଛି ତୁମକୁ ଖଣ୍ଡିତର ଗାଆଁ
ଝୁରୁଅଛି ବିଦ୍ୟାଳୟ,
ତୁମ ବିରହରେ ସଭିଏଁ ନିରବ
ଚାରିଆଡ଼େ ମରୁମୟ।
ତୁମେ ଗଲାପରେ ଏମିତି ଲାଗୁଛି
ପିତୃହରା ମୋର ଗାଆଁ,
ଏ ଗାଁ'ର ମାଟି ସଲିଳ ପବନେ
ଲେଖା ତୁମ ଦିବ୍ୟ ନାଆଁ।



Digitized by PPRACHIN, SOA

ଶିଶିର ପରାୟ ଶାନ୍ତ ଗୁଣ ଯୋଗୁ
ନାମ ତୁମର ଶିଶିର,
ଧନୀକ ହେଉ କି ଗରିବ ସେ ହେଉ
ସଭିଙ୍କୁ ତୁମ ଆଦର।
ଏତେ ସ୍ନେହ ଶ୍ରଦ୍ଧା ଦେଇଛ ତୁମେ ଯେ
ପାରୁ ନାହିଁ କେହି ଭୁଲି,
କାହିଁକି ଯେ ତୁମେ ହାତ ଛାଡ଼ି ଦେଇ
ଅଧାବାଟେ ଗଲ ଚାଲି।
ଖଣ୍ଡିତର ସ୍କୁଲକୁ ସ୍ୱତନ୍ତ୍ର ସ୍ଥାନ
ଦେଇଛ ତୁମେ ଯେ ଆଣି,
ତୁମ ପାଇଁ ଆଜି ସଭିଏଁ ଗର୍ବିତ
ତୁମେ ତ ମଉଡ଼ମଣି।
ତୁମ ଯଶକୀର୍ତ୍ତି ଯେତେ ଗାଇଲେ ବି
କେବେ ବି ସରିବ ନାହିଁ,
ତୁମେ ତ ଗଢ଼ିଛ ଗାଆଁକୁ ଆମର
ନିଜ ଲହୁ ଲୁହ ଦେଇ।
ତୁମ ବିନା ଏଠି ରଥ ଗଡ଼େ ନାହିଁ
ବିନା ଛେରା ପହଁରାରେ,
ଆଜି ବି ଗାଆଁର ପ୍ରତିଟି ମଣିଷ
ତୁମକୁ ନିଇତି ଝୁରେ ॥

*କ୍ରୀଡ଼ା ଶିକ୍ଷକ*
*ଖଣ୍ଡିତର ସରକାରୀ ଉଚ୍ଚ ବିଦ୍ୟାଳୟ*





Digitized by PPRACHIN, SOA

# ଖରସ୍ରୋତା ତୀରେ ମଦନମୋହନ ମଠ



## (ଚଉତିଶା ନ୍ୟାୟ)

ପଣ୍ଡିତ ବିଭୂତି ଭୂଷଣ ପଣ୍ଡା

କଳକଳ ନାଦେ ପୂତ ଖରସ୍ରୋତା ଗତି କରଇ ସାଗରେ
ଘାଟେଘାଟେ ନାବମାନ ରହିଅଛି ଚରନ୍ତି ଗାବ ପଠାରେ।
ଛଳଛଳ ଜଳେ ଜଳ ଜୀବରାଶି ଝସ ଅଶେଷ ପ୍ରକାର
ଅପାର କୃଷକେ ଟେକା ମାଟି ସଂଗେ ଠିକ କ୍ଷେତରେ ନକିର।
ଡରଭୟ ତେଜି ଡମକୁ ବରଜି ଅକ୍ଷୟ ପ୍ରତ୍ୟୟ ଧରି
ତର୍ପଣ ଅର୍ପଣ ଥାପି ନଜ ହୃଦେ ଦୃଢ଼େ ବିଭୁଙ୍କୁ ସୁମରି।
ଧାରଣା ସାଧନା ସିଦ୍ଧ ଯୋଗୀକୁଳ ନ ଧରନ୍ତି ଅର୍ଥ ବିତ୍ତ
ପର ଆପଣାର ଫରମାସି ତାଂକ ଆନେ ଆନ ନୋହେ ଚିତ୍ତ।
ବଷୟ ବାସନା ତେଜି ଭଜୁଥାନ୍ତି ନତ୍ୟ ପରମଇଶ୍ୱର
ମରଣର ଭୟ ଜୟ କରିଛନ୍ତି ଧରି ସେ ରଂଗାପୟର।
ରକ୍ଷଣେ ଆପଣେ ସ୍ମରଣ ଶରଣ ଲୟ ମଦନମୋହନ
ବଂଧନ ମୁକତ କାରଣେ ଶରୀର ମାତ୍ର ସାଧନ ଭଜନ।
ଷଡ଼ଙ୍ଗ ଅଭ୍ୟାସୀ ସଂଜମ ସରଣୀ ଦୃଢ଼ ଚିନ୍ତି ମୂଳାଧାର
ହବ୍ୟ ବାହନରେ ଆହୁତି ପ୍ରଦାନୀ କ୍ଷେତ୍ରଙ୍କେ ଜଗଦାଧାର ॥

*ଓଡ଼ିଶୋ*





Digitized by PPRACHIN, SOA

# ପିତା

## ଜ୍ଞାନରଂଜନ ଭାରତୀ



ପାରାବାରୁ ଗଭୀର ସେ ତ ଗଗନ ଠୁ ଉଚ୍ଚ
ନାହିଁ ତାଙ୍କ ସ୍ନେହର ଆଦି ପୁଣି ନାହିଁ ଅନ୍ତ ।୧ ।
ଝୁଣ୍ଟି ପଡୁ ପଡୁ ନିଅନ୍ତି ସେ ହାତଧରି
ଜୀବନର ଚଲାପଥେ ସାଜନ୍ତି ସେ ପ୍ରହରୀ ।୨ ।
ଦିଅନ୍ତି ପ୍ରତି ମୁହୂର୍ତ୍ତେ ସେ ନିର୍ଭୟର ପ୍ରତିଶ୍ରୁତି
ମୁଣ୍ଡଟେକି ଠିଆ ହେବାର ସାହସ ଶକତି ।୩ ।
ସମସ୍ତ ଅଡୁଆ ସୂତାକୁ ପାରନ୍ତି ସଜାଡ଼ି
ସମସ୍ୟାର ବହୁ ସମାଧାନ ଦିଅନ୍ତି ସେ ଅଜାଡ଼ି ।୪ ।
ସପନ ଦେଖାନ୍ତି ଶାସନ କରନ୍ତି ବୁଝନ୍ତି ସେ ସବୁ ଅଳି
ସବୁ ଲୁହ ପିଇ ହସିବା ଶିଖାନ୍ତି କଷଣେ ନ ପଡ଼ି ଢଳି ।୫ ।
ପାଏ ନାହିଁ ଯହିଁ କାତ କି ଆହୁଲା
ସେଠି ପିତା ହିଁ ନାଉରୀ ପିତା ହିଁ ନଉକା ।୬ ।
କେବେ ଦଣ୍ଡେ ଜୀଇଁ, ପୁଣି ଢୋକେ ପିଇ
ଅନାୟାସରେ ଯାଇ ନଇଁ, ଖୁସିର ମିଠା ବାଣ୍ଟୁ ଥାଇ ।୭ ।
ଭଲପାଇବାରେ କେବେ କରନ୍ତିନି ପ୍ରଦର୍ଶନ
ପ୍ରତିକ୍ଷଣେ ସଜାଅନ୍ତି ସ୍ନେହର ସୁମନ ।୮ ।
ସନ୍ତାନ ଜୀବନ ରାସ୍ତାର ବିଶ୍ୱସ୍ତ ମିତ୍ର
ପ୍ରଗତିର ପଥେ ସେ ପ୍ରେରଣାର ସ୍ରୋତ ।୯ ।
ଏତିକି ପ୍ରାର୍ଥନା ମୋର ବିଭୁଙ୍କ ପୟରେ
ସବୁ ସୁଖ ଅଜାଡ଼ନ୍ତୁ ମୋ ବାବାଙ୍କୁ ମୁକ୍ତିଧାମରେ ।୧୦ ।

ବଡ଼ପୁତ୍ର
ଖଣ୍ଡିତର

●●●



Digitized by PPRACHIN, SOA

# ଲୋତକାଞ୍ଜଳି

ଆନନ୍ଦ ଚନ୍ଦ୍ର ନାୟକ

ସତ୍ୟନିଷ୍ଠ ବ୍ୟକ୍ତିତ୍ୱର ଅଧିକାରୀ ସତ୍ୟନିଷ୍ଠ ଥାଇ
ସ୍ୱର୍ଗ ଆହରଣର ବାର୍ଷିକ ଉପଲକ୍ଷେ ସ୍ମରୁ ଥାଇ।
ଶ୍ରଦ୍ଧାଞ୍ଜଳି ଅଶ୍ରୁପୂତ ନୟନେ ଭାବନେ
ଅଛନ୍ତି ସ୍ରଷ୍ଟାର ଶୃଙ୍ଖଳା ଜୀବନେ।
ପ୍ରଣିପାତ ଆବେଗ ଯେ ବହେ ନିରନ୍ତର
ପୁଣ୍ୟ ଆତ୍ମା ପୁଣ୍ୟ ମନ ପୁଣ୍ୟ ସେ ବିଚାର।
ନିଷ୍କପଟ ନିର୍ମଳ ସାଧନା ଜୀବନେ
କର୍ମବୀର କର୍ମରେ ଯେ ରହିଲେ ପ୍ରବୀଣ।
ଭକ୍ତି ଭରା ସତ୍ୟ ବାକ୍ୟ ସତ୍ୟର ସମ୍ଭାର
ଭବ ସାଗର ମହାସିନ୍ଧୁ ହୋଇଲ ଉତ୍ତୀର୍ଣ୍ଣ।
କରିଲ ତ୍ୟାଗ ଜୀବନ ଜଞ୍ଜାଳ ପ୍ରିୟ ପରିଜନ
ସୁମଧୁର ସୁରମ୍ୟ ବାକ୍ୟ ସଦା ଆଦର ସତ୍କାର।
ନ ହେବି ହେବ କେବେ ସତ୍ୟ ବ୍ୟକ୍ତିଙ୍କର
ପରୋପକାର ସଦାଚାରେ ଥିଲା ଯେ ବିଶ୍ୱାସ
ସାନ୍ତ୍ୱନା ସରଳ ଉପାୟ ଆଉ ନାହିଁ ପଟାନ୍ତର
ସଦ୍‌ଗୁରୁ ସଦ୍‌ପୁରୁଷ ଆଗରେ ବିଚାର।
ସତ୍ୟକୁ ମଣିଲ ସଦା ଜୀବନେ ସମ୍ଭାର
ପୁଣ୍ୟ ସେ ଜଗତେ ପୁଣ୍ୟ ଆହରଣ।
ସଂସାର ସ୍ୱରରେ ପୁଣ୍ୟ ଅବତାରଣ
ଭକ୍ତିଭରା ଜୀବନ ଉତ୍ସର୍ଗ ସାଇ ପୟରରେ।
ସାଇ ଭକ୍ତି ସଦା ସଦ୍‌ଗୁରୁରେ ସେବା
ମୁକ୍ତିଲାଭ କରୁ ଆତ୍ମା ଏତିକି ପ୍ରାର୍ଥନା।



Digitized by PPRACHIN, SOA

ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ପୟରେ ଏତିକି ମିନତି
ଶିଶିର ଭାଇଙ୍କ ମୁକ୍ତିର ବିନତି ।
ତୁମେ ବାରମ୍ବାର କରୁଥାଅ ଧରାବତରଣ
ଝରିପଡୁ ଆମ ମଥାପରେ ଆଶିଷ ତବ
ଶ୍ରଦ୍ଧାଞ୍ଜଳି ଶରଧା ସୁମନ ତବ ପାଦେ ଯେ ଅର୍ପିତ ॥

*ଶ୍ରୀ ସତ୍ୟସାଇ ଭଜନ ମଣ୍ଡଳୀ*
*ବରଜପୁର*
*ମୋ. ୯୯୩୭୦୪୭୦୮୮*





Digitized by PPRACHIN, SOA



# ମାମୁ

ସଂଗୀତା ଗିରି

ଛୋଟବେଳେ ମାଆ କୋଳେ, ଯେବେ ମୁହିଁ ଶୋଇଯାଏ
କେତେ ଗପ କହି ମାଆ, ମୁଣ୍ଡଟି ଆଉଁଶି ଦିଏ ।
ରାଜାରାଣୀ ଗପ ସାଥେ, ବାଘ ମାମୁଁ ଗପଥାଏ
ଜହ୍ନ ମାମୁଁ ରାଇଜକୁ, ଗପରେ ବୁଲାଇ ନିଏ ।
ସବୁଠୁ ନିଆରା ଲାଗେ, ମୋ' ମାମୁଁଙ୍କ ଗପ କହେ
ମାମୁଁ ଘର ଯିବା ପାଇଁ, ମନ ଯେ ଉଛନ୍ନ ଥାଏ ।
ମାମୁଁ ଘର ଡାକଟି ଯେ, କେତେ ଆହା ମଧୁର
ସୃଷ୍ଟିକର୍ତ୍ତା ଗଢ଼ିଛନ୍ତି, କେତେ କରି ସୁନ୍ଦର ।
ମାମୁଁଙ୍କର ଶ୍ରଦ୍ଧା ଡାକ, କାନେ ଯେବେ ପଡ଼ିଯାଏ
ଭୟ ଭକ୍ତିରେ ମନ, କେତେ କ'ଣ ଭାବିଯାଏ ।
ଦୟାଦାନ ଶ୍ରଦ୍ଧାରେ ଯେ, ଗଢ଼ା ତାଙ୍କ ଶରୀର
ଦୂରରୁ ଦେଖିଲେ ଲାଗେ, ସତେ ଅବା ଠାକୁର ।
କର୍ତ୍ତବ୍ୟରେ ବନ୍ଧା ସିଏ, କର୍ମ ତାଙ୍କର ଜୀବନ
ସତ୍ୟ ପଥେ ରହି ସଦା, କରୁଥାନ୍ତି ସର୍ବ କର୍ମ ।
ମାମୁଁଙ୍କର ଶ୍ରଦ୍ଧା ଡାକ, ଶୁଭୁନି ଯେ କାନରେ
ସତେ କିବା ରାଗିଗଲେ, ରହିଗଲେ ଦୂରରେ ।
ଖୋଜିଲି ବୁଝିଲି ପୁଣି, ଡାକିଲି ଯେ ଆତୁରେ
ଶେଷରେ ମୁଁ ଜାଣିଲି, ସେ ଜହ୍ନମାମୁଁ ପାଖରେ ।
ଆକାଶରେ ଦେଖିଲି, ମୁଁ ଦୂର ମାମୁଁ ସାଂଗରେ
ଆଣ୍ଠେଇ ପ୍ରଣାମ କରି କହିଲି ଯେ ଆତୁରେ
କେଣେ ଯିବେ ନାହିଁ, ଆଉ ରହିଥିବେ ସେଠାରେ ।

*ଭାଣିଜୀ*





Digitized by PPRACHIN, SOA

# ବାବାଙ୍କ ସ୍ମୃତିରେ



ରଶ୍ମିରଂଜନ ଭାରତୀ

ଅତି ଆପଣାର ଡାକଟିଏ
ସେ ଡାକ ଅଟଇ ବଡ଼ ବାପା,
କେବେ ଲାଗେ ସିଏ ଅଦିନିଆ ବର୍ଷା
କେବେ ପୁଣି ଦେବୀ କୃପା ।
ଲୁହ କୋହ ସବୁ ଛାତିରେ ଚାପି ସେ
ଲୁହ ଯେ ଝରାନ୍ତି ନାହିଁ,
ତାଙ୍କଠୁ ଶିଖିଛି ଲୁହକୁ ପିଇବା
ଜୀବନେ ସଂଘର୍ଷ ପାଇଁ ।
ସବୁ ଦୁଃଖ କଷ୍ଟ ସହି ଯାଆନ୍ତି ସେ
ନକରି କାହା ଆଗରେ ପ୍ରକାଶ,
ହୃଦେ ଥାଉ ପଛେ ଦୁଃଖ ଯନ୍ତ୍ରଣା
ପିଲାଙ୍କ ଓଠରେ ଫୁଟାନ୍ତି ହସ ।
ଆସିଥିଲେ ସେ କେଉଁ ଶୁଭ ପଥେ
ଛାଡ଼ି ଚାଲିଗଲେ ଦୂରେ,
ତାଙ୍କ ଗୁଣକୀର୍ତ୍ତିର ସମ୍ମାନ କରି
ତାଙ୍କ ପରିବାର ଆଜି ଝୁରେ ।
ଆସିଥିଲେ ଏଇ ଧରାପଥକୁ ସେ
ସଭିଙ୍କୁ ହସି ହସାଇବା ପାଇଁ
ସଭିଙ୍କ ଆଖିରୁ ଲୁହ ଝରେଇ
ଛାଡ଼ି ଚାଲିଗଲେ ଦୂରେଇ ।



Digitized by PPRACHIN, SOA

ମନେ ପଡ଼ିଯାଏ ଆଜି

ତାଙ୍କ ହସ ହସ ମୁଖ

ତାଙ୍କରି କୋଳେ ଥାଏ

ଅମାପ ଅସୀମ ସୁଖ ।

ଭଗବାନଙ୍କୁ ଆଜି କରୁଛି ମିନତୀ

ତାଙ୍କ ଆତ୍ମାକୁ ମିଳୁ ସଦ୍‌ଗତି ।

ଭୁଲି ପାରେ ନାହିଁ ଚେଇଁ ଉଠେ ପ୍ରାଣ

ଦୃଷ୍ଟିରେ ନାଚନ୍ତି ସଦା

ମୋ' ମନ କାନ୍ଦଇ ଦୁଃଖେ

କାହିଁକି କେଜାଣି ମନ କହୁଥାଏ

ଗୁହନ୍ତୁ ସେ ସବୁବେଳେ ସାଥେ ॥

*ସାନପୁଅ*

•••







Digitized by PPRACHIN, SOA

# ଆଜି କାହିଁ ମନେପଡ଼େ ତୁମ କଥା

ସୁଶିଲ କୁମାର ଗିରି



ଋତୁଚକ୍ର ପଥପ୍ରାନ୍ତେ
ବାର ମାସ ବିତି ଯାଇଥିଲେ ମଧ
ଆଜି କାହିଁ ମନେପଡ଼େ
ସେହି ଶୂନ୍ୟତାର ପ୍ରତିଛବି ।
ଜୀବନର ଚଲାପଥେ
ଚାଲୁ ଚାଲୁ ଝୁଣ୍ଟି ଗଲେ
ମୁଖରୁ ଝରିପଡ଼େ
ମହନ୍ତ ମହାରାଜାଙ୍କ କଥା
ଝୁରୁଅଛି ଖଣ୍ଡିତର ମଠ
ଝୁରୁଛନ୍ତି କେତେ ଗାଁ' ଲୋକ
ଜାଣିହୁଏ ନାହିଁ
ସତରେ ତୁମେ ନାହଁ ବୋଲି
ମନେପଡ଼େ ସେହି
ପୂର୍ବଦିନର କଥା ଆଉ କଥା ।
ହଜିଲା ଦିନର ସ୍ମୃତି ପୁଣି
ଉଜ୍ଜୀବିତ ହୁଏ ଏ ବୁକୁରେ
ଜୀବନର ବନ୍ଧୁର ପଥେ
ହାରୁ ହାରୁ ଜିତିଛି
କେବଳ ତୁମର କେଇପଦ କଥା
ଆଜି ହିଁ ତାକୁ ସାଉଁଟି
ମୋ' ମାନସ ପଟରେ
ରଖିଛି ସାଇତି
ତୁମ ଶିକ୍ଷାଦୀକ୍ଷା
ସତରେ ମହାନ ଆଉ ମହାନ
ଆଜିର ଏହି ଦିବସେ
କରୁଛି ସତକୋଟି ନମନ୍ ।।

*ଯୋଗାଣିଆ, ଗିରିମଠ*
*ଜଗତସିଂହପୁର*





Digitized by PPRACHIN, SOA

# ଘେନ ମୋର ଶ୍ରଦ୍ଧାଞ୍ଜଳି

ପ୍ରଦୀପ କୁମାର ସାମଲ

ଦିବ୍ୟ ଭାସ୍ୱର ଚିର ଅମର
ଗୁରୁକୁଳ କିମ୍ବଦନ୍ତୀ,
କୋମଳ ଶିଷ୍ୟର ହୃଦେ ଗଢ଼ାଇଛ
କୋଣାର୍କର ସୌଧ ସ୍ମୃତି ।
ତୁମ୍ଭେ ହେ ସ୍ରଷ୍ଟା ଗୁରୁକୁଳର
ସୃଜନୀର ଇନ୍ଦ୍ରଧନୁ,
ସ୍ଥୁଳ ହୃଦୟରେ ସୂକ୍ଷ୍ମ ଚିନ୍ତନ
ପାଶୋରି ପାରେ କି ମନୁ ।
ମଣିଷ ପରି ମଣିଷଟିଏ
କରି ଗଢ଼ିଛନ୍ତି ମୋତେ,
ନୁହେଁ ମୁଁ ଏକା ଅନେକ ଛାତ୍ର
ଚରଣ ଚିହ୍ନ ପଥେ ।
ସତ୍ୟ ପଥରେ ଚାଲିବୁ ନିତ୍ୟ
ଦିବ୍ୟ ଚେତନା ଧରି,
ତୁମରି ଚରଣେ ଢାଳିବୁ ନିତ୍ୟ
କୋଟି ପ୍ରଣତିବାରି ।



Digitized by PPRACHIN, SOA

ପାଷାଣ ପରି ଦୃଢ଼ ନିର୍ମାଣ
ଦୁର୍ବାର ପରି ଗଢ଼ିଛ ପ୍ରାଣ,
ପୁଣ୍ୟ ଶ୍ଳୋକ ହେ ଶିଶିରସାର
ତୁମେ ଗୁରୁ ମୋର ସାଗରସମ।
ହେ ପୁଣ୍ୟାତ୍ମା, ଶ୍ରାଦ୍ଧ ବାର୍ଷିକୀରେ
ଘେନ ମୋର ଶ୍ରଦ୍ଧାଞ୍ଜଳି,
ପୟରେ ପ୍ରଣାମ ଜଣାଏ ଭକ୍ତିରେ
ଦିଅ ହେ ଆଶିଷ ଢାଳି ॥

*ଅବସର ପ୍ରାପ୍ତ ପ୍ରଧାନଶିକ୍ଷକ*
*ପାରିକଇଁଚି, ଯାଜପୁର*







Digitized by PPRACHIN, SOA

# ବାବାଙ୍କ ସ୍ମୃତିରେ

ଦେବାଶିଷ ଭାରତୀ (ପପୁ)



ଆଜି ଦିନଟା ଭଲ ଲାଗୁ ନାହିଁ
ଆଖିରୁ ଲୁହ ଝରୁଛି,
ଶ୍ରାବଣ ମାସର ପୂର୍ଣ୍ଣମୀ ଆଜି
ଅଗଷ୍ଟ ତାରିଖ ହୋଇଛି।
ବାବା ତ ଆମର ଶୋଇ ଯାଇଥିଲେ
ଡାକିଲେ ଉଠୁ ନାହାଁନ୍ତି,
କେଉଁ ରାଇଜରେ ରହିଲେ ସେ ଯାଇ
ଖୋଜିଲେ ମିଳୁ ନାହାଁନ୍ତି।
ସନ୍ଧ୍ୟାବେଳକୁ କାନ୍ଦ ବୋବାଳିରେ
ପଡ଼ିଗଲା ହୁରି ପଡ଼ୋଶୀମାନଙ୍କ ମେଳି,
ବନ୍ଧୁ ବାନ୍ଧବ ସ୍ୱକୁଟୁମ୍ବମାନେ
କାନ୍ଦୁଛନ୍ତି ଲୁହ ଢାଳି।
କେତେ ଯେ ଶରଧା କରିଥିଲେ ମୋତେ
କେଉଁଠାରେ ସେ ରହିଲେ,
ବାବା ତ ମୋତେ ମନୁ ଭୁଲିଯାଇ
ଏକାଏକା ଛାଡ଼ିଗଲେ।
ଗ୍ରାମବାସୀମାନେ ଆସନ୍ତି ଦୁଃଖରେ
ଶେଷ ଦରଶନ ପାଇଁ,
ଭଉଣୀ, ଭିଣୋଇ, ଭଣଜା
ପ୍ରୀତି ଜନ ମିଳି ହୋଇ,
୭୦ ବର୍ଷରେ ଛାଡ଼ି ଗଲେ ବାବା
ଆଉ ତ ଫେରିବେ ନାହିଁ।
୧୯୯୧ ମସିହାରେ ମହନ୍ତ ଶିରିପା ଗ୍ରହଣ କଲ
ମଦନ ମୋହନ ସେବା କରି ଧନ୍ୟ ହୋଇଗଲ



Digitized by PPRACHIN, SOA

ସ୍ୱର୍ଗେଧାମ ଗଲ ରହି ।
କଷ୍ଟ ପାଇ ମଦନମୋହନ
ନାମ ଜପ କରୁଥିଲ,
ସଂସାର ବନ୍ଧନୁ ମଦନମୋହନ ପାରିକଲେ
ସ୍ୱର୍ଗଲୋକେ ବାସକଲ ।
କ୍ଷଣକ ମଧ୍ୟରେ ପଡ଼ିଗଲ ହୁରି
ପରିବାର ପରିଜନ ଆସନ୍ତି ମାଡ଼ି
ବାବା ଆମର ନାହାଁନ୍ତି ଆଉ
ପର ପାରିଗଲେ ଛାଡ଼ି ।
ଅଶ୍ରୁ ଢାଳି ସ୍ୱଜନେ ସଂଗତେ
ବାବାଙ୍କୁ ଆଣିଥିଲୁ ସାଥେ
ତୁମର ପୁତ୍ର ଏକା
ମୁଖାଗ୍ନି ଦେଲା ମୁଖରେ ।
ବନ୍ଧୁ ପରିଜନ ସାଥିରେ ତୁମେ
ସମାଧି ଗ୍ରହଣ କଲ,
ଧର୍ମ କରିଥିଲ ଧନ୍ୟ ହୋଇ
ଶ୍ରାବଣ ପୂର୍ଣ୍ଣିମା ଦିନରେ ଗଲ ।
ଆସିଥିଲ ଏକା ଚାଲିଗଲ ଏକା
କାହାକୁ ଡାକିବି ବାବା
ସ୍ମୃତି ଛାଡ଼ି ଦେଇ କେଉଁଆଡ଼େ ଗଲ
ନ ମିଳଇ ତୁମ ଦେଖା ।
ଜୀବ ହୋଇଥିଲ ଶିବ ହୋଇଗଲ
ସ୍ୱର୍ଗେଧାମେ ବାସକଲ
ମଦନ ମୋହନ ଶ୍ରୀଚରଣ ତଳେ
ବ୍ରହ୍ମଲୀନ ହୋଇଗଲ ॥

*ତୁମର ଅଧମ ପୁତ୍ର*
*ଖଣ୍ଡିତର*





Digitized by PPRACHIN, SOA

# ଗୁରୁ

ଶ୍ରୀମତୀ ସୌଦାମିନୀ ପଣ୍ଡା



ଗୁରୁ ଯେ ପରମାନନ୍ଦ
ଅଟନ୍ତି ସଚ୍ଚିଦାନନ୍ଦ
ଗୁରୁବ୍ରହ୍ମା, ଗୁରୁବିଷ୍ଣୁ
ସେ ମହେଶ୍ୱର ।

ଗୁରୁଙ୍କ ଆଶିଷେ ଶିଷ୍ୟ
ପାଇଥାଏ ଦିବ୍ୟାଭାଷ
ଅଜ୍ଞାନ ଅନ୍ଧକାରକୁ
କରନ୍ତି ସେ ଦୂର ।

ଗୁରୁ ଶିଶିର ଭାରତୀ
ବିତରନ୍ତି ଜ୍ଞାନ ଜ୍ୟୋତି
କହି ସଦା ଦିବ୍ୟବାଣୀ
ଦେଲ ଯେ ଅମୃତବାଣୀ ।

ସତ୍ୟପଥେ ଚାଲିବାକୁ
ପ୍ରବର୍ତ୍ତାନ୍ତି ସେ ଆମକୁ
ସୁମାର୍ଗ ଦର୍ଶନ କରାଇ
ଆତ୍ମବିଶ୍ୱାସକୁ ଦିଅନ୍ତି ବଢ଼ାଇ ।

ପର ଉପକାରେ ମନ
ଶିଖାଇଲ ଯେତେ ଜ୍ଞାନ
ନୀତିଶିକ୍ଷା ଦେଇ କଲ
ଜଗତେ ସାର ।

*ଓଡ଼ିଶା*





Digitized by PPRACHIN, SOA

# ବଡ଼ ଭାଇଙ୍କ ସ୍ମରଣେ



ଶ୍ରୀମତୀ ଆରତୀପ୍ରଭା ଭାରତୀ

ଆଜି ଏ ଦିନଟା ମନକଲା ଫିକା
ନେତ୍ରୁ ଲୁହ ଯାଏ ବହି
ହୃଦୟଟା ମୋର ଦୁଃଖ ଭରିଯାଏ
ତୁମ ମୃତ୍ୟୁ ଖବର ପାଇ।
୨୦୨୨ ଅଗଷ୍ଟ ୧୨ ତାରିଖ ଶ୍ରାବଣ ପୂର୍ଣ୍ଣିମା ଦିନ
ମନ ମାରି ଦେଇ ଚାଲିଗଲ ତୁମେ
ତୁମ ପରିବାର କାନ୍ଦୁଛନ୍ତି ଆଜି
ଦୁଃଖରେ ଅଧୀର ମନ
ତୁଟାଇ ବନ୍ଧନ ଭୁଲି ପରିଜନ
ଚାଲିଗଲ ପରପାରି।
ଭୁଲି ନ ପାରୁଛୁ ଆମେ
ମନେ ପକାଉଛୁ ମନେ ଥିବ ସବୁଦିନ
ପ୍ରାଣ ଛୁଆଁ ଭାଷା ହସ ହସ ମୁଖେ
ସୁଖ ଦୁଃଖ ଘର କଥା
କିଏ ଆଉ ଅବା ପଚାରିବ କାହୁଁ
ଭାବି ଝୁରି ହୁଏ ମଥା।
ଡାକରା ଆସିଲା ମନେ ନ ପଡ଼ିଲା
ଛାଡ଼ିଗଲ ମର୍ତ୍ତ୍ୟ ଭୂଇଁ
ବନ୍ଧନ ତୁଟାଇ କାହାକୁ ନ କହି
ଚାଲିଗଲ ଏକା ହୋଇ।
ଅଗଷ୍ଟ ୧୨ ଦୁଇହଜାର ବାଇଶି ଥିଲା
ଶ୍ରାବଣ ପୂର୍ଣ୍ଣିମା ଦିନ
ଶୁକ୍ରବାର ଦିନ ଚାଲିଗଲ ତୁମେ
ନିଜର ଲୋକଙ୍କୁ ଛାଡ଼ି।



Digitized by PPRACHIN, SOA

ସେବା ପୂଜା ନାମକୁ ସୁମରି
ଗଲ ଦିନ ବାଛି ନେଇ
ସେ ବି ଥିଲ ତୁମେ ଶ୍ରୀ ମଦନମୋହନ
ସଂଗେ ନେଲେ ହାତ ଧରି ।
ତୁଟାଇ ବନ୍ଧନ ପ୍ରିୟ ପରିଜନ
ଚାଲିଗଲ ପର ପାରି
ଭୁଲି ନ ପାରୁଛୁ ମନେ ପକାଉଛୁ
ହେ ବଡ଼ ଭାଇ ମନେ ଥିବ ସବୁଦିନ
ଶ୍ରାବଣ ପୂର୍ଣ୍ଣିମା ଦିନ ତୁମ ଶୂନ୍ୟସ୍ଥାନ
କିଏ କରିବ ପୂରଣ ।
ତୁମ ପରିବାର ପୁଅ ଝିଅ ଭାଇ
ଅଶ୍ରୁଜଳ ଢାଳି କାନ୍ଦୁଛନ୍ତି
ଆଜି ଦୁଃଖରେ ଅଧୀର ମନ ।
ସନ୍ଧ୍ୟା ୬ଟା ୩୦ ମିନିଟ୍‌ରେ ସତୁରୀ ବର୍ଷରେ
ସଂସାରକୁ ଭୁଲିଯାଇ
ପୂଜି ମଦନମୋହନ ସଂଗେ
ଗଲ ନାମ ନେଇ ।
ବିଦାୟ ଦେଉଛୁ, ବିଦାୟ ନେଉଛୁ
ଶ୍ରୀ ମଦନ ମୋହନଙ୍କୁ ପ୍ରଣମି ପୟରେ
ଆଜି ପରା ଦିନେ ଶ୍ରଦ୍ଧାଞ୍ଜଳି ଘେନ
ପ୍ରାର୍ଥନା କରୁ ମଦନମୋହନଙ୍କୁ ।
ଶ୍ରାବଣ ପୂର୍ଣ୍ଣିମାଦିନ, ଜୀବନ ହୋଇଲା ଧନ୍ୟ
ଭାଗ୍ୟେ ଥିଲେ ଜୁଟେ କେତେ ଜଣଙ୍କର
ତୁମେ ଏକା ଭାଗ୍ୟବାନ ।
ସ୍ମୃତି ଚାରଣ ଦିନ ଶ୍ରଦ୍ଧାଞ୍ଜଳି ଘେନ
ହେ ମୋହର ବଡ଼ ଭାଇ ॥





Digitized by PPRACHIN, SOA



# ସ୍ତୁତି

ଶ୍ରୀମତୀ ମଂଜୁଲତା ଦାଶ

ମ- ମନର କଳ୍ପିତ ଏ ସାରା ସଂସାର ମରୁ ମରୀଚିକା ବାରି
ମରୁତ ସଲୀଳ ଗଗନ ଧରଣୀ ଅନଳ ସୃଜି ସଂଚରି ।

ଦ- ଦଇତ ଦେବତା ବିହଗ ମାନବ ଚତୁଷ୍ପଦ ବହୁପଦ
ଦୁରିତ ଦୁର୍ଗତି ଖଣ୍ଡନ କାରଣେ ଆତ୍ମା ପରମ ଆସ୍ପଦ ।

ନ- ନମନ୍ତି ପୟରେ ଯୋଗୀ ଋଷି ସିଦ୍ଧ ଚାରଣ ନିତ୍ୟ ବନ୍ଦନ
ନଶ୍ୱର ନିଗଡ଼ ନିଦାରୁଣ ବଂଧ ଫେଡ଼ ମଦନମୋହନ ।

ମୋ- ମୋହିତ ମୋହରେ ମରୁଅଛି ନିତି ଆବିଳ ଅନ୍ତରେ ଧରି
ମୋହନ ମୂରତି ଫେଡ଼ ମୋ' ଆରତି ଖେଦ ଯାଉ ଅପସରି ।

ହ- ହରଣ କରତା ହରି ନିଅ ପ୍ରଭୁ ସକଳ କଳୁଷ ମୋର
ହନ୍ତସନ୍ତ ହୋଇ ହତାଶ ହେଲିଣି ନ ଶୁଣିଲ କର୍ଣ୍ଣେ ଗିର ।

ନ- ନିତ୍ୟ ନିରଂଜନ ସତ୍ୟ ସନାତନ ନିଦାନ ମୂଳ ସବୁରି
ନିକାଶ କରୁଣା ନ କରିବ ଉଣା ହେବି ଭବସିନ୍ଧୁ ପାରି ॥

*ଚାରବାଟୀ*





Digitized by PPRACHIN, SOA

# ସ୍ମୃତି ଏକ ବୈରାଗୀ ମନର

## ବାସନ୍ତୀ ଦେବୀ

ଜହ୍ନ ବୁଡ଼ିଗଲେ ଗହ୍ନା ପୂନେଇରେ ଖୋଜି ଖୋଜି ପାଉ ନାହିଁ
ଅଣ୍ଟାଳି, ଅଣ୍ଟାଳି ସାଉଁଟା ସ୍ମୃତିରୁ କିଛି ପାଇଲଇଁ ମୁହିଁ।
ଏକା ଛାଡ଼ିଗଲ ତୁମେ ମୋତେ ଏଠି କେମିତି ରହିବି ମୁହିଁ
ସେ କଥା ଥରେ ନ ଭାବିଲ ମନେ ଚାଲିଗଲ ଏକା ହୋଇ।
ତୁମ ଭକ୍ତି ଭରା ଉପଦେଶ ସବୁ ପଡୁଛି ମୋ' ମନ ମଧ୍ୟେ
ସେହି କଥା ଭାବି ଦିନ ରାତି ମୁହିଁ ଗୁମୁରି ଗୁମୁରି କାନ୍ଦେ।
କେତେ ସ୍ନେହ ପ୍ରେମ ଦେଉଥିଲ ତୁମେ ପିତା, ମାତାଙ୍କ ପରି
ସେ ସବୁକୁ ଏବେ କାହାଠାରୁ ମୁହିଁ ପାଉ ନାହିଁ ଆଶା କରି।
ଗୀତା, ଭାଗବତ, ପୁରୁଷ ସୂକ୍ତରେ ତୁମ ଦିନ ଯାଏ କଟି
ତୁମ ସଂସ୍ପର୍ଶରେ ଆଧ୍ୟାତ୍ମିକ ଭାବ ମୋର ମନେ ଉଠେ ଫୁଟି।
ବାବୁ, ପପୁ, ରାଜା, ଏତିନି ସର୍ବଦା ଝୁରୁଛନ୍ତି ରାତ୍ରି, ଦିନ
କେମିତି ରହିଲ ଚନ୍ଦ୍ର ରାଇଜରେ ପଡୁନି କି ତୁମ ମନ!
ଟିକି ନାତି କାହ୍ନା, ଖୋଜୁଛି ତୁମକୁ ବୁଝାଇ ପାରୁନି ତାକୁ
ଜଲି, ମାମା କଥା କିସବା ଲେଖିବି କିଛି ନ ଆସେ ମନକୁ।
ନୁଙ୍ଗୁ, ରୁବି, ଚିକି, ଏ ଗେହ୍ଲା ତୁମରି ସଦା ଖୋଜୁଥିଲ ତାଙ୍କୁ
ଏବେ ଛାଡ଼ି ଗଲ ଏକା କରି ତାଙ୍କୁ କିଏ ଖୋଜିବ ତାହାଙ୍କୁ।
ପ୍ରାଣର ଦେବତା ଗଲ ଛାଡ଼ି ଏକା, କେମିତି ରହିବି ମୁହିଁ
ଭାବିଲନି ଥରେ ତୁମ ବିନା ଏକା କେମିତି ପାରିବି ରହି ॥



*ମଦନମୋହନ ମଠ*



Digitized by PPRACHIN, SOA



ନ ଜାୟତେ ମ୍ରିୟତେ ବା କଦାଚି-

ନ୍ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ ।

ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ-

ନ ହନ୍ୟତେ ହନ୍ୟମାନେ ଶରୀରେ ।। ୨୦ ।।

(ଗୀତା-୨/୨୦)





Digitized by PPRACHIN, SOA

